


ଭାରତୀୟ ସାହିତ୍ୟସ୍ରଷ୍ଟା ଗ୍ରନ୍ଥମାଳା

# ଗୋପାଳ ଛୋଟରାୟ

ସଂଘମିତ୍ରା ମିଶ୍ର

*GOPAL CHHOTRAY* : A Monograph on Odia playwright Gopal Chhotray by Sanghamitra Mishra, Sahitya Akademi, 2009, Price : Rs.40.



ISBN: 978-81-260-2722-4

ପ୍ରଥମ ପ୍ରକାଶ: ୨୦୦୯

ସାହିତ୍ୟ ଅକାଦେମି

ରବୀନ୍ଦ୍ର ଭବନ, ୩୫ ଫିରୋଜଶାହ ରୋଡ, ନୂଆଦିଲ୍ଲୀ ୧୧୦୦୦୧

ବିକ୍ରୟ କେନ୍ଦ୍ର: ସ୍ୱାତୀ, ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦୦୦୧

୪.ଡି.ଏଲ୍.ଖାଁ ରୋଡ୍, କୋଲକାତା ୭୦୦୦୨୫

ଗୁଣ କମ୍ପ୍ଲେକ୍ସ, ମେନ୍ ବିଲ୍ଡିଂ,୪୪୩(୩୦୪), ଆନ୍ନା ସୁଲାଇ,

ଟେନାମ୍‌ପେଟ୍, ଚେନ୍ନାଇ ୬୦୦୦୧୮

୧୭୨ ମୁମ୍ବାଇ ମରାଠୀ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବାଇ ୪୦୦୦୧୪

ସେଣ୍ଟ୍ରାଲ୍ କଲେଜ କ୍ୟାମ୍ପସ୍, ୟୁନିଭରସିଟି ଲାଇବ୍ରେରୀ ବିଲ୍ଡିଂ,

ଡ. ଆମ୍ବେଦକର ଭୀଧି, ବାଙ୍ଗାଲୋର ୫୬୦୦୦୧

ମୂଲ୍ୟ: ୪୦ ଟଙ୍କା

ଅକ୍ଷର ବିନ୍ୟାସ:

ସମର୍ ଗ୍ରାଫିକ୍ସ, ସହଦେବଖୁଣ୍ଟା, ବାଲେଶ୍ୱର ୭୫୬୦୦୧

ମୁଦ୍ରଣ:

ଜୟଶ୍ରୀ ପ୍ରେସ୍, ୯୧/୧ବି, ବୈଠକଖାନା ରୋଡ୍, କୋଲକାତା ୭୦୦୦୦୯

# ସ୍ୱଭାଷ

ନାଟ୍ୟକାର ଗୋପାଳ ଛୋଟରାୟଙ୍କ ସମ୍ପର୍କରେ ଭାରତୀୟ ସାହିତ୍ୟ-ନିର୍ମାତା (Makers of Indian literature) ଶୃଙ୍ଖଳାରେ ଏକ ଗ୍ରନ୍ଥ ପ୍ରସ୍ତୁତ କରିବା ପାଇଁ କେନ୍ଦ୍ର ସାହିତ୍ୟ ଅକାଦେମିର କର୍ତ୍ତୃପକ୍ଷ ମୋତେ ଅନୁରୋଧ କରିଥିଲେ । ସେଥିପାଇଁ ଅକାଦେମିର କର୍ତ୍ତୃପକ୍ଷଙ୍କ ନିକଟରେ ମୁଁ କୃତଜ୍ଞ । ଗୋପାଳ ଛୋଟରାୟ ମୋର ଅନ୍ୟତମ ପ୍ରିୟ ନାଟ୍ୟକାର ଯାହାଙ୍କ ସହିତ ମୋର ବ୍ୟକ୍ତିଗତ, ପାରିବାରିକ ତଥା ସାରସ୍ୱତ ସମ୍ପର୍କ ଥିଲା । ସେ ମୋର ଶୁଭଚିନ୍ତକ ତଥା ପ୍ରେରଣାଦାତା ଥିଲେ । ସୌଭାଗ୍ୟବଶତଃ ମୋର ଦିଗ୍‌ଦର୍ଶନରେ ଗବେଷଣା କରି ସ୍ନେହଲତା ମିଶ୍ର 'ବେତାର ନାଟ୍ୟସ୍ରଷ୍ଟା ଗୋପାଳ ଛୋଟରାୟ' ଶୀର୍ଷକ ନିବନ୍ଧ ନିମିତ୍ତ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍‌ଡି ପାଇଥିଲେ । ତେଣୁ ଏ କାର୍ଯ୍ୟଟି କରିବା ପାଇଁ ମୁଁ ସାହସ ବାନ୍ଧିଥିଲି । ସ୍ନେହଲତା ମୋର ପ୍ରିୟ ଛାତ୍ରୀ, ଯିଏ ଗୋପାଳ ଛୋଟରାୟଙ୍କର ଅପ୍ରକାଶିତ ପୁସ୍ତକର କେତେକ ପାଣ୍ଡୁଲିପି ନେଇ ତାଙ୍କର ଗବେଷଣା କରିଥିଲେ । ସେ ମୋତେ ଏ ଗ୍ରନ୍ଥ ରଚନା ଦିଗରେ ସାହାଯ୍ୟ ଓ ସହଯୋଗ କରିଛନ୍ତି । ଗୋପାଳ ଛୋଟରାୟଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀ ଦେବଦାସ ଛୋଟରାୟ, ଆଇ.ଏ.ଏସ୍, ଅଧୁନା କଟକର ରେଭେନ୍ସା ବିଶ୍ୱବିଦ୍ୟାଳୟର କୁଳପତି ଓ କନ୍ୟା ଡଃ କସ୍ତୁରୀ ଛୋଟରାୟ, ରମାଦେବୀ ସ୍ୱୟଂଶାସିତ ମହିଳା ମହାବିଦ୍ୟାଳୟର ଅବସରପ୍ରାପ୍ତ ଅଧକ୍ଷା ଏ ଦିଗରେ ମୋତେ ଯଥେଷ୍ଟ ସହଯୋଗ କରିଛନ୍ତି ଓ ଅନେକ ତଥ୍ୟ ପ୍ରଦାନ କରିଛନ୍ତି । ଉଭୟଙ୍କ ନିକଟରେ ମୁଁ କୃତଜ୍ଞ । ଗୋପାଳ ଛୋଟରାୟ ମହାଶୟଙ୍କ ଭଣଜା ଶ୍ରୀ ବିମଳ ପ୍ରସନ୍ନ ଦାସ ମଧ ମୋର ସହାୟତା କରିଛନ୍ତି । 'ଗ୍ରନ୍ଥମନ୍ଦିର'ର ସୁଯୋଗ୍ୟ ସ୍ୱତ୍ୱାଧିକାରୀ ଶ୍ରୀ ମନୋଜ କୁମାର ମହାପାତ୍ର ଛୋଟରାୟ ମହାଶୟଙ୍କର ଅନେକ ଦୁଷ୍ପ୍ରାପ୍ୟ ପୁସ୍ତକ ମୋତେ ଆଗ୍ରହରେ ପ୍ରଦାନ କରିଛନ୍ତି । ମୁଁ ତାଙ୍କ ନିକଟରେ ଋଣୀ ।

ଗୋପାଳ ଛୋଟରାୟ ଏକ ବହୁମୁଖୀ ପ୍ରତିଭା । ନାଟ୍ୟକାର ଭାବରେ ତାଙ୍କର ସିଦ୍ଧି ଅନତିକ୍ରମ୍ୟ । ତାଙ୍କର ପୁସ୍ତକଗୁଡ଼ିକ ପୁନର୍ବାର ପାଠ କରିବା ଓ ଆଲୋଚନା କରିବା ମୋ' ପାଇଁ ଏକ ଆନନ୍ଦଦାୟକ ତଥା ସନ୍ତୋଷପ୍ରଦ କର୍ମ । ଏଥିପାଇଁ ମୁଁ ସାହିତ୍ୟ ଅକାଦେମି କର୍ତ୍ତୃପକ୍ଷଙ୍କୁ ପୁନର୍ବାର ଧନ୍ୟବାଦ ଦେଉଛି । ମୋର ପରିବାର, ବନ୍ଧୁ, ସହକାରୀ ଓ ଶୁଭଚିନ୍ତକମାନଙ୍କୁ ମୁଁ ଏହି ଅବସରରେ ସ୍ମରଣ କରୁଛି ।

ସଂଘମିତ୍ରା ମିଶ୍ର

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ୧. ଗୋପାଳ ଛୋଟରାୟଙ୍କ ଜୀବନୀ ଓ ପ୍ରତିଭା | ୧ |
| ସମକାଳୀନ ରାଜନୀତିକ ପରିବେଶ | ୪ |
| ସମକାଳୀନ ସାମାଜିକ ପରିବେଶ | ୭ |
| ଛୋଟରାୟଙ୍କର ଅନ୍ୟାନ୍ୟ ଆଗ୍ରହ | ୯ |
| ବିବାହ ଓ ଚାକିରି ଜୀବନ | ୧୧ |
| ଲେଖକ ଜୀବନର ଆଦ୍ୟପାଦ | ୧୩ |
| ତତ୍‌କାଳୀନ ମଞ୍ଚ ପରିବେଶ | ୧୫ |
| ଆକାଶବାଣୀ ପ୍ରତିଷ୍ଠା | ୧୬ |
| ୨. ନାଟ୍ୟସ୍ରଷ୍ଟା ଗୋପାଳ ଛୋଟରାୟ- କୃତିସମୂହ | ୧୮ |
| ନାଟ୍ୟକାର | ୨୦ |
| ପ୍ରାଚୀନ ଗୀତିନାଟ୍ୟର ନାଟ୍ୟରୂପ ପ୍ରସ୍ତୁତି ଓ ଗୀତିନାଟ୍ୟ ରଚନା | ୩୫ |
| ଗଳ୍ପ ଉପନ୍ୟାସର ନାଟ୍ୟରୂପ | ୪୨ |
| ଶିଶୁ ଉପଯୋଗୀ ନାଟ୍ୟସ୍ରଷ୍ଟା | ୪୬ |
| ହାସ୍ୟରସ ନାଟକର ସ୍ରଷ୍ଟା | ୪୭ |
| ଧାରାବାହିକ ନାଟକର ସ୍ରଷ୍ଟା | ୫୨ |
| ଅନ୍ୟ କେତେକ ବେତାର ନାଟକ | ୬୧ |
| ନାରୀ ଚରିତ୍ର ପ୍ରଧାନ ନାଟକ | ୬୫ |
| ଐତିହାସିକ ନାଟକ | ୬୬ |
| ରୂପକ ସ୍ରଷ୍ଟା | ୬୭ |
| ଶ୍ରୁତିମଧୁର ସଂଳାପର ସ୍ରଷ୍ଟା | ୬୮ |
| ୩. ଆତ୍ମଜୀବନୀ ଲେଖକ ଗୋପାଳ ଛୋଟରାୟ | ୭୪ |
| ୪. ଗାଳ୍ପିକ ଗୋପାଳ ଛୋଟରାୟ | ୭୬ |
| ୫. ଓଡ଼ିଆ ସାହିତ୍ୟରେ ଗୋପାଳ ଛୋଟରାୟଙ୍କ ସ୍ଥାନ | ୮୩ |
| ୬. ପରିଶିଷ୍ଟ | |
| (କ) ଗୋପାଳ ଛୋଟରାୟଙ୍କ ସହିତ ସାକ୍ଷାତକାର | ୮୭ |
| (ଖ) ସ୍ମରଣୀୟ ଘଟଣାବଳୀ | ୯୩ |

(ଗ) ମୁଦ୍ରିତ ପୁସ୍ତକର ତାଲିକା ୯୪

(ଘ) ଚଳଚ୍ଚିତ୍ର, ଦୂରଦର୍ଶନ ଓ ଅନୁବାଦ ୯୬

(ଙ) ସମ୍ମାନ ପଦପଦବୀ ଇତ୍ୟାଦି ୯୭

(ଚ) ସାହିତ୍ୟ ଅକାଦେମି ପୁରସ୍କାର ଉତ୍ସବରେ ପ୍ରଦତ୍ତ ଇଂରାଜୀ ଭାଷଣ ୯୯

(ଛ) ଏକବିଂଶତମ ଶାରଳା ପୁରସ୍କାର ଉତ୍ସବରେ ପ୍ରଦତ୍ତ ଭାଷଣ ୧୦୧

# ଗୋପାଳ ଛୋଟରାୟଙ୍କ ଜୀବନୀ ଓ ପ୍ରତିଭା

ଜଣେ ସାହିତ୍ୟସ୍ରଷ୍ଟାର ଜୀବନୀ ଓ କୃତିର ଆକଳନ କରିବା ସମୟରେ ତା'ର ସମୟ, ସମସାମୟିକ ପରିବେଶ, ସାମାଜିକ ତଥା ସାଂସ୍କୃତିକ ପୃଷ୍ଠଭୂମିର ଆଲୋଚନା ପ୍ରାସଙ୍ଗିକ। କାରଣ ସ୍ରଷ୍ଟାଟିଏ ନିଜ ସମୟରେ ବଞ୍ଚୁଥିବା ବେଳେ ତା'ର ଦୃଷ୍ଟି କେବେ ଅତୀତକୁ ତ କେବେ ଭବିଷ୍ୟତକୁ ଦେଖୁଥାଏ। ନିଜ ଦୁଃଖସୁଖ ସହିତ ସେ ସମକାଳର ଅନେକ ସମସ୍ୟାକୁ ଆତ୍ମସ୍ଥ କରିଥାଏ ଓ ନିଜର ସୃଷ୍ଟି ମଧ୍ୟରେ ସେହି ସମସ୍ତ ସମସ୍ୟାକୁ ଆଲୋକିତ କରିବାର ପ୍ରୟାସ କରୁଥାଏ। ଲେଖକଟିଏ ସମାଜ ସଂସ୍କାରକ ନୁହେଁ ବରଂ ସମାଜର ଅସ୍ୱୀକୃତ ବିଧାୟକ। ସେ ଯେଉଁ ଚରିତ୍ରମାନଙ୍କୁ ସୃଷ୍ଟି କରେ ସେମାନଙ୍କୁ ଅନେକ ସମସ୍ୟାକୁ ଅତିକ୍ରମ କରିଯିବା ପାଇଁ ସାମର୍ଥ୍ୟ ପ୍ରଦାନ କରିଥାଏ। ଅନୁରୂପ ଭାବରେ କେବେ ପ୍ରଶ୍ନଟିଏ କେବେ ସମାଧାନର ସୂକ୍ଷ୍ମ ସୂତ୍ରଟିଏ ସେ ପାଠକ ନିକଟରେ ପହଞ୍ଚାଇ ପାଠକକୁ ସମୟ ତଥା ସମସ୍ୟା ସଚେତନ କରିଥାଏ। କୌଣସି ଲେଖକର ସୃଷ୍ଟି ଭିତରୁ ତା'ର ଜୀବନପ୍ରତି ଥିବା ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ।

ନାଟ୍ୟକାର ଗୋପାଳ ଛୋଟରାୟ ଏହିଭଳି ଜଣେ ଯୋଗଜନ୍ମା ବ୍ୟକ୍ତିତ୍ୱ ଯାହାକୁ ଆକଳନ କରିବା ସମୟରେ ପ୍ରଥମେ ଆମେ ତାଙ୍କ ଜୀବନୀ ସମ୍ପର୍କରେ କିଛି ଆଲୋଚନା କରିବା। ଅବିଭକ୍ତ କଟକ ଜିଲ୍ଲାର ଜଗତସିଂହପୁର ନିକଟସ୍ଥ ପୁରୁଣାଗଡ଼ର ଏକ ଜମିଦାର ପରିବାରରେ ୧୯୧୬ ଏପ୍ରିଲ୍ କୋଡ଼ିଏ ତାରିଖରେ ଗୋପାଳ ପ୍ରସାଦ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ହଳଧର ଛୋଟରାୟ ଓ ମାତାଙ୍କ ନାମ ଇନ୍ଦୁମତୀ ଦେବୀ। ଗୋପାଳଙ୍କର ପୂର୍ବପୁରୁଷମାନେ ଖୋରଧାରୁ ଉଠିଆସି ବସତିସ୍ଥାପନ କରିଥିବା ଗାଁ ଦୁଇଟିର ନାମ ଥିଲା ପୁରୁଣାଗଡ଼ ଓ ନୂଆଗଡ଼। ଏହି କ୍ଷତ୍ରିୟ ପରିବାରରେ ସବା ବଡ଼ ପୁଅର ନାମ ଶେଷରେ ସାମନ୍ତସିଂହାର, ତା' ତଳ ଭାଇର ସଂଜ୍ଞା ହୁଏ ରାଉତରାୟ। ତୃତୀୟ ଭାଇର ସଂଜ୍ଞା ଛୋଟରାୟ, ଚତୁର୍ଥ ଭାଇର ସଂଜ୍ଞା ସଜ୍ଜନ ସିଂହ, ପଞ୍ଚମ ଭାଇଟି ସାମନ୍ତରାୟ ଓ ଷଷ୍ଠ ଭାଇର ନାମ ଶେଷରେ ପାଇକରାୟ ସଂଜ୍ଞା ଯୋଗ କରାଯାଏ। କ୍ଷତ୍ରିୟ ଜାତିର ଏହିଭଳି ପରମ୍ପରା ଭାବରେ ଏହା ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନୁସୃତ ହେବାର ଦେଖାଯାଏ।

ଗୋପାଳ ପ୍ରସାଦଙ୍କର ଚାରି ଭଉଣୀ ଥିଲେ। ବାପାଙ୍କ ଜୀବିତାବସ୍ଥାରେ ଦୁଇଟି ଭଉଣୀଙ୍କର ବିବାହ ସରିଥିଲା। ଅନ୍ୟ ଦୁଇ ଭଉଣୀଙ୍କର ଦାୟିତ୍ୱ କିଶୋର ଗୋପାଳଙ୍କୁ ହିଁ ବହନ କରିବାକୁ ପଡ଼ିଥିଲା। ଷଷ୍ଠ ଶ୍ରେଣୀରେ ପାଠ ପଢୁଥିବା ସମୟରେ ତାଙ୍କର ପିତୃବିୟୋଗ ଘଟିଥିଲା। ଦଶମ ଶ୍ରେଣୀରେ ପଢୁଥିବା ବେଳେ ସେ ତାଙ୍କ ଉପର ଭଉଣୀର ବିଭାଘର କରାଇଥିଲେ।

## ପାଠପଢ଼ା

ଗୋପାଳ ଜମିଦାର ପରିବାରର ସନ୍ତାନ ଥିଲେ ମାତ୍ର ରକ୍ଷଣାବେକ୍ଷଣ ଅଭାବରୁ ତାଙ୍କ ଜମିଦାରୀ ନିଲାମରେ ଚାଲିଯାଇଥିଲା। ଗୋପାଳଙ୍କ ଜେଜେ ତାଙ୍କୁ ଭାରି ଶ୍ରଦ୍ଧା କରୁଥିଲେ ଓ

ସେ ପାଠପଢ଼ନ୍ତୁ ବୋଲି ଇଚ୍ଛା କରୁଥିଲେ। ସେତେବେଳେ ଜଗତ୍‌ସିଂହପୁରରେ ଶ୍ରୀକୃଷ୍ଣ ଏକାଡ଼େମୀ ସ୍ଥାପିତ ହୋଇ ନ ଥିଲା। ଗୋପାଳ ପୁରୁଣାଗଡ଼ ସ୍କୁଲରୁ ସପ୍ତମ ଶ୍ରେଣୀରେ ଖୁବ୍ ଭଲନମ୍ବର ରଖି ପାସ୍ କଲେ ଓ ଅଷ୍ଟମ ଶ୍ରେଣୀରେ କଟକ ଆସି ଭକ୍ତ ମଧୁ ବିଦ୍ୟାପୀଠରେ ନାମ ଲେଖାଇଲେ। ଗୋପାଳ ଇଂରାଜୀ, ଓଡ଼ିଆ ଓ ସଂସ୍କୃତରେ ଦକ୍ଷ ଥିଲେ। ଇଂରାଜୀ ଭାଷାପ୍ରତି ତାଙ୍କର ଆଗ୍ରହ ବୃଦ୍ଧିର କାରଣ ହେଉଛି ଯେ ସେ ଅଷ୍ଟମ ଶ୍ରେଣୀରେ ପଢୁଥିବା ସମୟରେ ତାଙ୍କର ଜଣେ ପାଦ୍ରୀଙ୍କ ସହିତ ପରିଚୟ ହୋଇଥିଲା। ସେ ପାଦ୍ରୀ ମହାଶୟ ଓଡ଼ିଆ ଜାଣିଥିଲେ। ଗୋପାଳଙ୍କୁ ସେ ଇଂରାଜୀ ବାଇବେଲ ଅନୁବାଦ କରିବାକୁ ଓ ପ୍ରତିଦିନ Statesman କାଗଜର ସଂପାଦକୀୟ ପଢ଼ି, ତାକୁ ଉତାରିବାକୁ ଉପଦେଶ ଦେଇଥିଲେ। ଏହି କାର୍ଯ୍ୟ ଗୋପାଳଙ୍କର ଇଂରାଜୀ ଦକ୍ଷତା ବଢ଼ାଇଥିଲା। ଏକାଦଶ ଶ୍ରେଣୀରେ ପଢ଼ିବା ସମୟରେ ଘରଦ୍ୱାର ଜମିବାଡ଼ି ରକ୍ଷଣାବେକ୍ଷଣ ଦାୟିତ୍ୱରେ ଘାଣ୍ଟି ହୋଇ ସେ ବର୍ଷକରୁ ତିନିଶହ ଦିନ ଅନୁପସ୍ଥିତ ରହିଥିଲେ। ଫଳରେ ତା'ପର ବର୍ଷ ଅର୍ଥାତ୍ ୧୯୩୪ରେ ସେ ପ୍ୟାରୀମୋହନ ଏକାଡ଼େମୀ କେନ୍ଦ୍ରରୁ ମ୍ୟାଟ୍ରିକ୍ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ। ପ୍ରତ୍ୟହ ଖବରକାଗଜମାନ ପାଠ କରିବା ଓ କ୍ରୀଡ଼ା ବିବରଣୀ ରଖିବା ଥିଲା ତାଙ୍କର ଆଗ୍ରହ। ଅଭାବ ହେତୁ ଗୋପାଳ ଆଉ ଅଧିକ ପାଠ ପଢ଼ିପାରି ନ ଥିଲେ। ନିଜର ସ୍ମୃତିଚାରଣ କରି ଗୋପାଳ ଛୋଟରାୟ କୁହନ୍ତି ଯେ ସେ ପୁରୁଣାଗଡ଼ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ବୃତ୍ତି ପାଇଥିଲେ। ଖବରକାଗଜରେ ବାହାରିଲା ଯେ ଗୋପାଳ ପ୍ରସାଦ ଚାଟାର୍ଜୀ ନାମକ ବାଳକ ବୃତ୍ତି ପାଇଛି। ତାଙ୍କର ଶିକ୍ଷକ କ୍ଷେତ୍ରମୋହନ ରାୟ କଟକ ଗଲେ। ୧୯୨୭ରେ ଏହି ପରୀକ୍ଷା କଟକ ଜିଲ୍ଲାର ଶିକ୍ଷା ଅଫିସ ଦ୍ୱାରା ପରିଚାଳିତ ହେଉଥିଲା। ସେହି ଅଫିସରେ ବଙ୍ଗୀୟ କର୍ମଚାରୀମାନଙ୍କର ସଂଖ୍ୟା ଅଧିକ ଥିଲା। ଶିକ୍ଷକ ଶ୍ରୀଯୁକ୍ତ ରାୟଙ୍କ କଥାକୁ ସେମାନେ ହସରେ ଉଡ଼ାଇଦେଲେ। ସେମାନଙ୍କର ମତ ଥିଲା ଯେ ଏହି ବିଭ୍ରାଟ ସବ୍‌ଇନ୍‌ସପେକ୍ଟର ହିଁ କରିଛନ୍ତି କାରଣ 'ଛୋଟରାୟ' ବୋଲି କୌଣସି ସଂଜ୍ଞା ଥିବା ସେମାନେ ଜାଣି ନାହାନ୍ତି। 'ଛୋଟରାୟ' ସଂଜ୍ଞା ରାଜପରିବାରମାନଙ୍କରେ ପ୍ରଚଳିତ ଥାଏ। ତେଣୁ 'ଚାଟାର୍ଜୀ' ଭୁଲରେ 'ଛୋଟରାୟ' ହୋଇ ଯାଇଛି ବୋଲି ସେମାନେ ଭାବିଥିଲେ। ନଅ ମାସ ପର୍ଯ୍ୟନ୍ତ 'ଚାଟାର୍ଜୀ'ରୁ 'ଛୋଟରାୟ' ହେବା ବ୍ୟାପାର ସବ୍‌ଇନ୍‌ସପେକ୍ଟର ଚାଲୁରଖିଲେ। ଗୋପାଳ ଛୋଟରାୟଙ୍କ ନିଜ ଭାଷାରେ, ''ନ' ମାସ ପରେ ମୁଁ ଚାଟାର୍ଜୀରୁ ଛୋଟରାୟକୁ ଫେରିଲି। ପିଲାଟା ତାଙ୍କ ଗୋଷ୍ଠୀରୁ ଖସିଗଲା ବୋଲି ଡି.ଆଇ ଅଫିସ-କର୍ମଚାରୀଙ୍କ ମନ ନିଶ୍ଚୟ ଦବିଯାଇଥିବ। ମାସକୁ ବୃତ୍ତି ତିନିଟଙ୍କା ହିସାବରେ ନଅ ମାସର ସତେଇଶି ଟଙ୍କା ମୋ' ହାତକୁ ଆସିଲା। ଗୋଟିକିଆ ରୂପା ଟଙ୍କା- କଟକୀ ପାଏ ଓଜନ। ସେତେବେଳେ ତ ଆମ ବୟସର ପିଲାମାନଙ୍କ ପାଇଁ ଜାମାପଟାର ଆୟୋଜନ ହୋଇ ନ ଥିଲା। ଦେହରେ ଖଣ୍ଡିଏ ଚାଦର- ସେଇ ଚାଦର ଗଣ୍ଠି ଖୋଲି ଝନ୍ ଝନ୍ ସତେଇଶି ଟଙ୍କା ମୁଁ ଆମ ଦୁଆର ପିଣ୍ଡାରେ ନେଇ ଅଜାଡ଼ି ଦେଲି। କଟକୀ ପାଏ ଓଜନର ଜିନିଷ, ତିନିମାଇଲ ବାଟ ବୁହାଇ ଆଣିଥାଏ ବୋଲି ମୋ' ଦେହରୁ ଝାଳ ବୋହି ଯାଉଥାଏ।'' (ପଥିକ-ପୃ:୮-୯)

ପି.ଏମ୍. ଏକାଡ଼େମୀରୁ ମ୍ୟାଟ୍ରିକ୍ ପରୀକ୍ଷା ଦେବାବେଳକୁ ସେକେଣ୍ଡାରୀ ବୋର୍ଡ ଗଠିତ ହୋଇ ନ ଥିଲା । ପାଟଣା ବିଶ୍ୱବିଦ୍ୟାଳୟ ଏହି ପରୀକ୍ଷା ପରିଚାଳନା କରୁଥାଆନ୍ତି । ପାଟଣା ବିଶ୍ୱବିଦ୍ୟାଳୟର ଭାଇସ୍‌ଚାନ୍‌ସେଲର ଥାଆନ୍ତି ସାର୍ ସଚ୍ଚିଦାନନ୍ଦ ସିହ୍ନା । ପାଟଣା ବ୍ୟତୀତ କଲିକତାରେ ମଧ୍ୟ ଏକ ବିଶ୍ୱବିଦ୍ୟାଳୟ ଥିଲା ମାତ୍ର କଲିକତା ବିଶ୍ୱବିଦ୍ୟାଳୟରୁ ପାସ୍ କରୁଥିବା ପିଲାଙ୍କଠାରୁ ପାଟଣା ବିଶ୍ୱବିଦ୍ୟାଳୟରୁ ପାସ୍ କରୁଥିବା ପିଲାମାନଙ୍କର ଷ୍ଟାଣ୍ଡାର୍ଡ ଭଲ ଥିଲା । ପାଟଣା ବିଶ୍ୱବିଦ୍ୟାଳୟ ଅଧିନରେ ଗୋପାଳ ଛୋଟରାୟ ୧୯୩୪ ମସିହାରେ ମ୍ୟାଟ୍ରିକ୍ ପାସ୍ କଲେ । ସେ ବର୍ଷ ବିହାରର ବହୁ ଅଞ୍ଚଳରେ ପ୍ରବଳ ଭୂମିକମ୍ପ ହୋଇଥିବାରୁ ପରୀକ୍ଷା ଦୁଇମାସ ଘୁଞ୍ଚାଇ ଦିଆଯାଇଥିଲା । ପରୀକ୍ଷା ଫଳ ବାହାରିବା ଦିନ ପୁନର୍ବାର ଗୋପାଳଙ୍କୁ ଅନ୍ୟ ଏକ ଆଶ୍ଚର୍ଯ୍ୟର ସାମନା କରିବାକୁ ହୋଇଥିଲା । ସମାଜରେ ତାଙ୍କ ନାମ ପାସ୍ ତାଲିକାରେ ବାହାରିଥିଲା । ମାତ୍ର ତାହା ଥିଲା 'ଗୋପାଳ ଛୋଟରାୟ ପ୍ରସାଦ', ସ୍କୁଲରେ ନାମ ଠିକ୍ ଥିଲା ମାତ୍ର ୟୁନିଭରସିଟି ସାର୍ଟିଫିକେଟ୍‌ରେ ରେଜିଷ୍ଟ୍ରାର୍ କମଳା ପ୍ରସାଦଙ୍କ ଦସ୍ତଖତରେ ତାଙ୍କ ନାମ ହୋଇଥିଲା 'ଗୋପାଳ ଛୋଟରାୟ ପ୍ରସାଦ' । ଏ ଘଟଣାରେ ପି.ଏମ୍ ଏକାଡ଼େମୀର ହେଡ୍‌ମାଷ୍ଟର ବସନ୍ତ କୁମାର ଦାସ ବିବ୍ରତ ହୋଇପଡ଼ିଲେ । ସେ ଜଣେ କର୍ମଚାରୀଙ୍କୁ ସବୁ କାଗଜପତ୍ର ଓ ସାର୍ଟିଫିକେଟ୍ ଦେଇ ପାଟଣା ପଠାଇଲେ । ସେମାନେ କହିଲେ ଯେ ସ୍କୁଲରୁ ଭୁଲ ନାଁ ଆସିଥିଲା । ଆମେ ଠିକ୍ କରି ସର୍‌ନେମ୍ ଜାଗାରେ ପ୍ରସାଦ ଲେଖିଦେଇଛୁ । ସ୍କୁଲର କର୍ମଚାରୀ କିଛି ଦିନ ପାଟଣାରେ ରହି ସେମାନଙ୍କୁ କୌଣସି ପ୍ରକାର ବୁଝାଇ ଶୁଦ୍ଧ ସାର୍ଟିଫିକେଟ୍ ଲେଖାଇ, ରେଜିଷ୍ଟ୍ରାର୍ ମହୋଦୟଙ୍କ ଦସ୍ତଖତ କରାଇ ଆଣିଥିଲେ । ଫଳରେ 'ଚାଟାର୍ଜୀ' ସଂଜ୍ଞାରୁ 'ପ୍ରସାଦ' ସଂଜ୍ଞା ନେଇ ଢେର ଦିନ ବିବ୍ରତ ହେବାପରେ ଗୋପାଳ ନିଜର ଛୋଟରାୟ ସଂଜ୍ଞା ଫେରି ପାଇଥିଲେ ।

ମାଇନର ସ୍କୁଲରେ ପଢ଼ିବା ସମୟରେ ମଧୁସୂଦନ ରାଓଙ୍କ ରଚିତ 'ସାହିତ୍ୟକୁସୁମ' ଓ 'ସାହିତ୍ୟପ୍ରସଂଗ' ଭଳି ଉଚ୍ଚକୋଟିର ପୁସ୍ତକ ତାଙ୍କର ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା, ଏହି ପୁସ୍ତକଗୁଡ଼ିକ ତାଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ଓଡ଼ିଆ ଭାଷାର ଗୁରୁତ୍ୱ ପ୍ରତି ସେ ସ୍କୁଲ ଜୀବନରୁ ସଚେତନ ହୋଇଥିଲେ ଓ ସାହିତ୍ୟ ପ୍ରତି ଆକର୍ଷିତ ହୋଇଥିଲେ । ସେହି ବର୍ଷମାନଙ୍କରେ ଜଗତସିଂହପୁର ମଧ୍ୟଇଂରାଜୀ ବିଦ୍ୟାଳୟର ଜଣେ ଛାତ୍ର ମାଇନର ଶେଷ ପରୀକ୍ଷାରେ ଓଡ଼ିଆରେ ଶହେରୁ ଅଶୀ ରଖି ସମଗ୍ର ଓଡ଼ିଶାରେ ପ୍ରଥମସ୍ଥାନ ଅଧିକାର କରିଥିଲେ । ଓଡ଼ିଆ ଭାଷା ପ୍ରତି ଗୋପାଳ ଛୋଟରାୟଙ୍କର ଆକର୍ଷଣର ମୂଳ କାରଣ ଥିଲା ଗୋପବନ୍ଧୁ ଦାସଙ୍କ ପ୍ରତିଷ୍ଠିତ 'ସମାଜ'ର ସରଳ ତଥା ଯାଦୁକରୀ ଭାଷା ।

୧୯୩୦ ମସିହାରେ କଟକ କାଠଯୋଡ଼ି ହଷ୍ଟେଲ୍‌ରେ ରହିବା ସମୟରେ ଗୋପାଳବାବୁ ଆନନ୍ଦଲହରୀ ଉପନ୍ୟାସମାଳା ପଢ଼ିବାର ସୁଯୋଗ ପାଇଥିଲେ । ସେତେବେଳକୁ ମାଇନର ସ୍କୁଲ ଲାଇବ୍ରେରୀରେ 'ତୁ ମୋ ମା' ଓ 'ରୂପାଚୂଡ଼ୀ' ନାମକ ଦୁଇଟି ମାତ୍ର ଉପନ୍ୟାସ ଥିଲା । ଏତଦ୍‌ବ୍ୟତୀତ ଗୋପାଳ ବଂକିମଚନ୍ଦ୍ରଙ୍କର ବଙ୍ଗଳା ଉପନ୍ୟାସ 'ବିଷକନ୍ୟା' ପଢ଼ିଥିଲେ । ଦିନେ

ଟେନିସ୍ ପଡ଼ିଆରେ ନୂଆବହି ବିକ୍ରିପାଇଁ ସଜା ହୋଇଥିବା ଦେଖି ସେ ଆଗ୍ରହୀ ହୋଇପଡ଼ିଥିଲେ। ସେ ବହିଗୁଡ଼ିକ ଥିଲା କାଳିନ୍ଦୀ ଚରଣଙ୍କ 'ମାଟିର ମଣିଷ', ଗୋଦାବରୀଶ ମହାପାତ୍ରଙ୍କର 'ପ୍ରେମପଥେ' ଓ 'ଇଗୁଆ ମା', ସେଠାରେ ସେ ବାଳକୃଷ୍ଣଙ୍କର ଆନନ୍ଦଲହରୀ ଉପନ୍ୟାସମାଳା ଯୋଜନା ଖବର ଶୁଣିଲେ ଓ ବର୍ଷକ ଭିତରେ ବାରଖଣ୍ଡି ଉପନ୍ୟାସ ଲେଖା ହେବାର ସେ ଯୋଜନା କରିଛନ୍ତି ବୋଲି ଜାଣିଲେ। ଆଠ ଅଣା ଦେଇ ସଭ୍ୟ ହେଲେ ବାରଖଣ୍ଡଯାକ ପୁସ୍ତକ ଅଧାଦାମ୍‌ରେ ମିଳିବ ବୋଲି ଯୋଜନା ଥିଲା କିନ୍ତୁ ଗୋପାଳଙ୍କ ପାଖରେ ନିଜ ଖର୍ଚ୍ଚ ବାଦ୍ ଆଠଅଣା ବଳକା ନ ଥିଲା। ତେଣୁ ସେ ଦୁଇଅଣା ପଇସା ଦେଇ 'ମାଟିର ମଣିଷ' ପୁସ୍ତକଟି କିଣିଥିଲେ।

## ସମକାଳୀନ ରାଜନୀତିକ ପରିବେଶ

୧୯୨୮ ମସିହାରେ ଗାନ୍ଧିଜୀଙ୍କର କାଠଯୋଡ଼ି ନଈବାଲିରେ କରିଥିବା ସଭାର ଫଟୋ 'ସମାଜ'ରେ ବାହାରିଥାଏ। ସେ ଫଟୋରେ ଗାନ୍ଧିଜୀ, କସ୍ତୁରବା, ରାଜକୃଷ୍ଣ ବୋଷ ଓ ଉତ୍କଳମଣି ଗୋପବନ୍ଧୁଙ୍କ ଚିତ୍ର ଥିଲା, ଯାହା ଖୁବ୍ ପ୍ରଭାବଶାଳୀ ଥିଲା। ଗୋପବନ୍ଧୁ ଥିଲେ ଓଡ଼ିଶାର ତରୁଣମାନଙ୍କର ସର୍ବମାନ୍ୟ ନେତା। ଜଗତ୍‌ସିଂହପୁରର ଅଳକାଶ୍ରମରେ ଗୋପାଳ ଅନେକ କଂଗ୍ରେସୀ ନେତାଙ୍କୁ ଦେଖିଥିଲେ ମାତ୍ର ଗୋପବନ୍ଧୁଙ୍କୁ ଦେଖିପାରି ନ ଥିଲେ। ତେଣୁ ନୀଳମଣି ପ୍ରଧାନଙ୍କୁ ଦେ ନିଜ ମନକଥା କହି ଉତ୍ତର ପାଇଥିଲେ ଯେ ସେ କଟକ ଗଲେ ଗୋପବନ୍ଧୁଙ୍କ ଦେଖା ପାଇ ପାରିବେ। ନୀଳମଣି ପ୍ରଧାନ ଜଗତସିଂହପୁରର ଗାନ୍ଧୀବାଦୀ ଭଦ୍ରଲୋକ, ଯିଏ ଖଦଡ଼ ପିନ୍ଧନ୍ତି ଓ ପ୍ରତିଦିନ ସୂତା କାଟନ୍ତି। ବାପାଙ୍କ ସାଙ୍ଗରେ ଭଉଣୀ ବାହାଘର ଜିନିଷ କିଣିବାକୁ ଗୋପାଳ କଟକ ଯାଇଥିଲେ ମାତ୍ର ବେଳ ନ ଥିବାରୁ ଗୋପବନ୍ଧୁଙ୍କୁ ଦେଖା କରିପାରି ନ ଥିଲେ। ଅଳ୍ପ ଦିନପରେ ସେ ଗୋପବନ୍ଧୁଙ୍କ ତିରୋଧାନର ମର୍ମନ୍ତୁଦ ଖବର ପାଇ ସ୍ତମ୍ଭୀଭୂତ ହୋଇଥିଲେ।

ପରେ କଟକ ଆସି ପି.ଏମ. ଏକାଡ଼େମୀରେ ପଢ଼ିବା ସମୟରେ ଗୋପାଳ ଭୁବନାନନ୍ଦ ଦାସ, ବିଚିତ୍ରାନନ୍ଦ ଦାସ, ରାଧାକୃଷ୍ଣ ଦାସ, ଗୋପବନ୍ଧୁ ଚୌଧୁରୀ, ବାଳକୃଷ୍ଣ କର, ରାଜକୃଷ୍ଣ ବୋଷ, ଆଚାର୍ଯ୍ୟ ହରିହର ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନୁନ୍‌ଗୋ, ମା' ରମାଦେବୀ, ବୈଦ୍ୟନାଥ ତ୍ରିପାଠୀ, ଗୋଦାବରୀଶ ମହାପାତ୍ର ପ୍ରଭୃତିଙ୍କ ସଂସ୍ପର୍ଶରେ ଆସିଥିଲେ।

୧୯୩୦ ମସିହାରେ ଯେଉଁ ଲବଣ ସତ୍ୟାଗ୍ରହ ହୋଇଥିଲା ସେଥିରେ ଗୋପାଳ ଅଂଶଗ୍ରହଣ କରିଥିଲେ। ଦିନେ ଏକ ଅପରାହ୍ନରେ ଯୁବନେତା ରାଜକୃଷ୍ଣ ବୋଷ ହଷ୍ଟେଲ ପଡ଼ିଆରେ ଯୁବଛାତ୍ରମାନଙ୍କୁ ସମ୍ବୋଧନ କରି ଦେଶ ପାଇଁ ପ୍ରତ୍ୟେକ କିଛି ସ୍ୱାର୍ଥତ୍ୟାଗ କରିବା ଉଚିତ ବୋଲି ଉଦ୍‌ବୋଧନ ଦେଇଥିଲେ। ସେହି ଉଦ୍‌ବୋଧନରେ ପ୍ରତ୍ୟେକ ଛାତ୍ରଙ୍କୁ ହାତକଟା ସୂତାରେ ପ୍ରସ୍ତୁତ ଖଦଡ଼ ଲୁଗା ପିନ୍ଧିବା ପାଇଁ ଆହ୍ୱାନ ଥିଲା। ଗାଁରୁ କଟକ ଆସି ନୂଆ ନୂଆ ଏଭଳି ପରିସ୍ଥିତିର ସମ୍ମୁଖୀନ ହୋଇଥିବା ଗୋପାଳ ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ପ୍ରଥମେ ନିଜର ଅଳ୍ପ କିଛି

ଲୁଗାପଟା ରଖି ସବୁତକ ଲୁଗା ପଡ଼ିଆ ଭିତରକୁ ଫିଙ୍ଗି ଦେଇଥିଲେ । ପଡ଼ିଆ ଭିତରେ ବହୁ ଲୁଗା ଜମା ହୋଇଗଲା । ଗୋଟିଏ ବଳଦ ଲାଗିଥିବା ଗାଡ଼ିରେ ସେ ଲୁଗାପଟା କାଠଯୋଡ଼ି କୂଳକୁ ନିଆଗଲା ଓ ଜଳାଇଦିଆଗଲା । ଛୋଟରାୟ ମହାଶୟଙ୍କ ନିଜ ଭାଷାରେ, ''ଆମରି ଆଖି ସାମ୍ନାରେ ସେ ସବୁ କାଠଯୋଡ଼ି ନଦୀବାଲିରେ ହୁ ହୁ ହେଇ ଜଳି ସତେ ଯେପରି ଆମର ସ୍ୱାଧୀନତା ପ୍ରାପ୍ତି ପଥକୁ ଆଲୋକିତ କରିଦେଲା ।'' (ପଥିକ- ପୃ : ୨୬)

୧୯୩୦ ଏପ୍ରିଲ୍ ଛଅ ତାରିଖରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ପଶ୍ଚିମ ଉପକୂଳରେ ମହାତ୍ମା ଗାନ୍ଧୀଙ୍କର ଦାଣ୍ଡିଯାତ୍ରା ଚାଲିଥାଏ । ପୂର୍ବଉପକୂଳରେ ଓଡ଼ିଶାର କଟକସହର ସ୍ୱରାଜ୍ୟ ଆଶ୍ରମରୁ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଏକ ଲବଣ ସତ୍ୟାଗ୍ରହୀଦଳ ମହାନଦୀର ଖରାଦିନିଆଁ ରାସ୍ତାରେ ପହଞ୍ଚିବା ପରେ ଗୋପବନ୍ଧୁ ଚୌଧୁରୀଙ୍କୁ ଆରେଷ୍ଟ କରିନିଆଗଲା । ଆଚାର୍ଯ୍ୟ ହରିହର ସତ୍ୟାଗ୍ରହୀମାନଙ୍କର ନେତୃତ୍ୱ ନେଲେ । ସକାଳୁଆ ସ୍କୁଲରୁ ଫେରି ଗୋପାଳ ସ୍କୁଲ ହଷ୍ଟେଲ୍ ବାରଣ୍ଡାରେ ଠିଆ ହୋଇଥିବା ସମୟରେ ଗୋପବନ୍ଧୁ ଚୌଧୁରୀ ଗିରଫ ହୋଇଥିବା ସମ୍ବାଦ ପାଇଲେ । ତେଣୁ ଖାଇବାପାଇଁ ଡାଇନିଂହଲକୁ ନ ଯାଇ ସେ କଚେରୀ ହତାକୁ ଧାଇଁଯାଇଥିଲେ । ସେଠାରେ ଚୌଧୁରୀଙ୍କ ଗିରଫର ପ୍ରତିବାଦରେ ଏକ ଶୋଭାଯାତ୍ରାର ଆୟୋଜନ ଚାଲିଥାଏ । ଗୋପାଳ ସେ ଶୋଭାଯାତ୍ରାରେ ଯୋଗ ଦେଇଥିଲେ । ନୟାସଡ଼କର ମାରୁୱାଡ଼ି ପଟିରେ ସେମାନଙ୍କୁ ବରଫ ଦହି ଓ ମିଠା ସର୍ବତ ଦିଆଯାଇଥିଲା ଓ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ ସେମାନଙ୍କ ଉପରେ ଗୋଲାପଜଳ ଛିଞ୍ଚାଯାଇଥିଲା । ଶୋଭାଯାତ୍ରା ଦିନ ୩ଟା ବେଳେ ବକ୍ସିବଜାର ଛକରେ ପହଞ୍ଚି ସେଠାରୁ ତିନି ଭାଗରେ ବିଭକ୍ତ ହୋଇଥିଲା । ଗୋପାଳ ଯେଉଁ ଦଳରେ ଥିଲେ ତାହା ମିଶନ୍ ରୋଡ଼ରେ ପହଞ୍ଚିବା ବେଳକୁ ତତ୍କାଳୀନ ଡି.ଏସ୍.ପି ଦାମୋଦର ରଥଙ୍କ ନେତୃତ୍ୱରେ ପୋଲିସମାନେ ସେମାନଙ୍କୁ ଘେରିଗଲେ । ଖଦଡ଼ ପିନ୍ଧିଥିବା ଦୋଷରୁ ଗୋପାଳ ଗିରଫ ହୋଇ ଅନ୍ୟ ପାଞ୍ଚଜଣ ଖଦଡ଼ପିନ୍ଧା ଲୋକଙ୍କ ସହିତ ଲାଲବାଗ ଥାନା ବାରଣ୍ଡାରେ ବସିଥିଲେ । ଗୋପାଳ ଥିଲେ ସେମାନଙ୍କଠାରୁ ବୟସରେ ସାନ । ତାଙ୍କୁ ପୋଲିସ୍ ସବ୍‌ନିସ୍‌ପେକ୍ଟର ''କ'ଣ ପଢୁଛୁ ? ଏଠି ଫାର୍ଶ କରୁଛୁ କାହିଁକି'' ଇତ୍ୟାଦି ପ୍ରଶ୍ନ ପଚାରି ତାଙ୍କୁ କିଛି ଜଳଖିଆ ଦେଇଥିଲେ । ଜିଦ୍‌ଖୋର ଗୋପାଳ ସେ ଜଳଖିଆ ନ ଖାଇ ବସିରହିଥିଲେ । ପରେ ସବ୍‌ନିସ୍‌ପେକ୍ଟର ତାଙ୍କୁ ଜେଲକୁ ପଠାଇଦିଆଯିବ ବୋଲି ଧମକ ମଧ୍ୟ ଦେଇଥିଲେ । ପରେ ହଷ୍ଟେଲର ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ ବୈଦ୍ୟନାଥ ତ୍ରିପାଠୀଙ୍କ ହସ୍ତକ୍ଷେପ ଫଳରେ ସେ ଥାନାରୁ ଛାଡ଼ ପାଇଥିଲେ ।

ତାଙ୍କର ସହପାଠୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ ଓ ବିନୋଦ କାନୁନ୍‌ଗୋ ନିଜ ନିଜ ଭବିଷ୍ୟତକୁ ଜଳାଞ୍ଜଳି ଦେଇ କଂଗ୍ରେସ୍‌ରେ ଯୋଗଦେଇ ଦେଶସେବକର ଜୀବନକୁ ଆଦରି ନେଇଥିଲେ । ଗୋପାଳ ଛୋଟରାୟ ସେମାନଙ୍କୁ ସମ୍ମାନ କରୁଥିଲେ ଓ ସେମାନଙ୍କ ତ୍ୟାଗ ଦ୍ୱାରା ପ୍ରଭାବିତ ହୋଇଥିଲେ । ମାତ୍ର ସେ ରାସ୍ତାରେ ଯିବାପାଇଁ ସାହସ କରିପାରି ନ ଥିଲେ । ବାର ବର୍ଷର ବାପଛେଉଣ୍ଡ ଗୋପାଳଙ୍କ ପାଇଁ ମୁଖ୍ୟ ସମସ୍ୟା ଥିଲା ବିଧବା ଜନନୀ, ଅବିବାହିତା ଭଗିନୀ ଓ ଏକମାତ୍ର ସାନଭାଇକୁ ଥଇଥାନ କରିବା । ତେଣୁ ସେମାନଙ୍କୁ କିଞ୍ଚିତ୍

ସାହାଯ୍ୟ କରିବା ଓ ସେମାନଙ୍କର ଆତ୍ମବିଶ୍ୱାସ ବୃଦ୍ଧିରେ ସହଯୋଗ କରିବା ଭିତରେ ସେ ସୀମିତ ରହିଥିଲେ। ସୁରେନ୍ଦ୍ର ଦ୍ୱିବେଦୀଙ୍କ ଚିଠିପତ୍ର ଟାଇପ୍ କରିବାପାଇଁ ଗୋପାଳ ନିଜର ଟାଇପ୍ ମେସିନ୍ ଛାଡ଼ି ଦେଇଥିଲେ। ଗୋପାଳ ପ୍ରହରାଜଙ୍କ ଭାଷାକୋଷ ସଂକଳନ କାର୍ଯ୍ୟକୁ ନବମ ଶ୍ରେଣୀର ଛାତ୍ର ଗୋପାଳ ଦେଖି ଉଦ୍‌ବୁଦ୍ଧ ହୋଇଥିଲେ ଓ ବିନୋଦ କାନୁନ୍‌ଗୋଙ୍କର ଓଡ଼ିଆ ବିଶ୍ୱକୋଷ ସଂକଳନ କାର୍ଯ୍ୟ ଦେଖି ତାଙ୍କୁ ଉତ୍ସାହିତ କରିଥିଲେ।

ଗୋପାଳ ଛୋଟରାୟ ସ୍କୁଲରେ ପଢୁଥିବା ସମୟରେ କଂଗ୍ରେସ ଓ ସ୍ୱରାଜ୍ୟାଶ୍ରମ ସହିତ ଜଡ଼ିତ ହୋଇପଡ଼ିଥିଲେ। ବ୍ରିଟିଶ୍ ସରକାର ଆଶ୍ରମଟିକୁ ତାଲା ପକାଇ ଆଶ୍ରମର ଅନ୍ତେବାସୀଙ୍କୁ ବାହାର କରିଦେଇଥାଆନ୍ତି। ସତ୍ୟାଗ୍ରହୀମାନେ ଏ ଆଇନ୍ ନ ମାନି ଆଶ୍ରମ ଦଖଲ କରିବାକୁ ଚାହୁଁଥାଆନ୍ତି। ସ୍କୁଲ ଛୁଟି ପରେ ଗୋପାଳ ହଷ୍ଟେଲର କେତେଜଣ ବନ୍ଧୁଙ୍କୁ ଧରି ରାଧାନାଥ ଟ୍ରେନିଂ କଲେଜର ସାମନା ରାସ୍ତାରେ ଗୁଣ୍ଡ ହେଲେ। ପ୍ରାୟ ପନ୍ଦର ଜଣ ସତ୍ୟାଗ୍ରହୀ କଂଗ୍ରେସ ପତାକା ଧରି ଓ କଂଗ୍ରେସର ଜୟନାଦ କରି ଆଶ୍ରମଦଖଲ ପାଇଁ ଆସିଥିଲେ। ପୋଲିସ ଏସ୍.ପିଙ୍କ ଉପସ୍ଥିତିରେ ସତ୍ୟାଗ୍ରହୀମାନଙ୍କ ଉପରେ ଲାଠିପ୍ରହାର ହୋଇଥିଲା। ଭୟରେ ଗୋପାଳ ଏକ ଗୁଡ଼ିଆ ଦୋକାନ ତାଟି ତଳେ ଲୁଚିରହିଥିଲେ, ପୋଲିସ ସେଠାରେ ମଧ ତାଙ୍କୁ ଲାଠିପ୍ରହାର କରିଥିଲା। ଗୋପାଳଙ୍କ ଡାହାଣ ଗୋଡ଼ ବଳାଗଣ୍ଠିରେ ପୋଲିସର ଲାଠି ବାଜିଥିଲା। ଏହି ସମୟରେ କଲିଜିଏଟ ସ୍କୁଲର ୧୧ଶ ଶ୍ରେଣୀର ଛାତ୍ର ବିଜୁ ପଟ୍ଟନାୟକ ଏସ୍.ପି ସାହେବଙ୍କ ସହିତ କଥା କଟାକଟି କରିଥିଲେ ଓ ଏସ୍.ପିଙ୍କଠାରୁ ମାଡ଼ ଖାଇ ମଧ ନିର୍ବିକାର ଭାବରେ ନିଜ ମତରେ ଅଟଳ ଥିଲେ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ପରେ ନୂତନ ରାଜଧାନୀ ହେବା ପ୍ରସଙ୍ଗ ଆସିଲା। ଡଃ ମହତାବ ନିଜର ବିଚକ୍ଷଣ ବୁଦ୍ଧିରେ ଭୁବନେଶ୍ୱରକୁ ଏଥିପାଇଁ ଉପଯୁକ୍ତ ବୋଲି ଯୁକ୍ତି ଉପସ୍ଥାପନ କଲେ ଓ ତାହା ମଧ ଗୃହୀତ ହେଲା। ପ୍ରଥମ ପ୍ରାଦେଶିକ ନିର୍ବାଚନ କାଳରେ ଗୋପାଳବାବୁ ସରଳା ଦେବୀ, ମହାରାଣୀ ସୁନୀତି ଦେବୀ (ବ୍ରାହ୍ମସମାଜର ପ୍ରତିଷ୍ଠାତା କେଶବ ସେନ୍‌ଙ୍କ କନ୍ୟା ଓ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଦ୍ୱିତୀୟା ପତ୍ନୀ) ଲତିକା ଦେବୀ ପ୍ରଭୃତିଙ୍କୁ ଦେଖିବାର ସୁଯୋଗ ପାଇଥିଲେ। କଟକ ନିର୍ବାଚନ ପ୍ରଚାର ସଭାରେ ସେ ପଣ୍ଡିତ ନେହେରୁ ଓ ସରୋଜିନୀ ନାଇଡୁଙ୍କୁ ମଧ ଦେଖିଥିଲେ। ପଟ୍ଟାଭି ସୀତାରାମାୟା ଓ ଜୟପ୍ରକାଶ ନାରାୟଣ, ରାଜଗୋପାଳାଚାରୀ ପ୍ରଭୃତିଙ୍କୁ ଦେଖିବା ଓ ଭାଷଣ ଶୁଣିବାର ବିରଳ ସୌଭାଗ୍ୟ ତାଙ୍କର ହୋଇଥିଲା। ଏପରି କି ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ରଚନା ଓ ଭାଷଣ ମଧ ତାଙ୍କୁ ପ୍ରଭାବିତ କରିଥିଲା। କିନ୍ତୁ ନିର୍ବାଚନରେ ନେତାମାନଙ୍କର ଆଚରଣର ଯେଉଁ ଦୁର୍ବଳ ଦିଗଟି ତାଙ୍କ ଆଗରେ ଉନ୍ମୋଚିତ ହେଲା ତାହା ତାଙ୍କୁ ବେଶ୍ କଷ୍ଟ ଦେଇଥିଲା।

ଚତୁର୍ଥ ଦଶକରେ ବାଲେଶ୍ୱର ଜିଲ୍ଲା ଦୁର୍ଭିକ୍ଷରେ ପନ୍ଦର ହଜାର ଲୋକଙ୍କର ମୃତ୍ୟୁ ହୋଇଥିଲା। ଓଡ଼ିଶା କ୍ୟାଡ଼ରର ଆଇ.ସି.ଏସ୍ ଶ୍ରୀଯୁକ୍ତ ଅହମ୍ମଦ ଜନଗଣନା ଅଫିସର ଥିଲେ। ଜନଗଣନା ରିପୋର୍ଟରେ ସେ ଉଲ୍ଲେଖ କରିଛନ୍ତି ଯେ ଏହା ଏକ Man-made-famine. 'ସମାଜ'ରେ

ବାହାରିଥିବା ଏହି ରିପୋର୍ଟଟି ଗୋପାଳ ବାବୁଙ୍କୁ ଏଭଳି ପ୍ରଭାବିତ କରିଥିଲା ଯେ ସେ ଏହି ମର୍ମନ୍ତୁଦ ଘଟଣାକୁ ନେଇ 'ପରକଲମ' (୫/୮/୧୯୫୪) ନାଟକ ରଚନା କଲେ। ''ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ପାଇଁ ରାଜନେତା ଯେତେବେଳେ ସାଧାରଣ ଲୋକଙ୍କ ସୁଖସୁବିଧା ପ୍ରତି ଆଖି ବୁଜିଦିଅନ୍ତି ସେତେବେଳେ 'ପରକଲମ' ଭଳି ରାଜନୀତିକ ନାଟକ ଲେଖିବାର ପ୍ରେରଣା ଆସିଥାଏ।'' ଏହା ହେଉଛି ନାଟ୍ୟକାରଙ୍କ ବିଚାର।

ଦ୍ୱିତୀୟ ବିଶ୍ୱଯୁଦ୍ଧ ହେବା ସମୟରେ ଓଡ଼ିଶାରେ ତା'ର ପ୍ରଭାବ ଅନୁଭୂତ ହୋଇଥିଲା। ଗୁଆଦାମ୍ ବଢ଼ିଲା। କଟକ ଆକାଶରେ ଉଡ଼ାଜାହାଜ ଓ ରାସ୍ତାରେ ମିଲିଟାରୀଟ୍ରକ୍ ଦେଖିବାକୁ ମିଳିଲା। ଟମି (ଇଂଲିଶ ପଦାତିକ ସୈନ୍ୟ)ମାନେ ମିଲିଟାରୀ ଜିପ୍ ନେଇ କଟକରୁ ବଜାର ସଉଦା କଲେ। ଥରେ ଛୋଟରାୟ ମହାଶୟ ଜଣେ ଇଂରେଜ ଟମିକୁ ଗୋଟିଏ ପ୍ୟାକେଟ୍ ସିଜର୍ସ ସିଗାରେଟ୍ ଦେଇ ତା'ର ଧନ୍ୟବାଦର ପାତ୍ର ହୋଇଥିଲେ। ସେତେବେଳେ ବିଦେଶୀ ଅଫିସରମାନେ ଡାକ୍ତରଖାନା ପରିଦର୍ଶନ ସ୍ଥାନରେ କୃଷ୍ଣାଙ୍ଗ ରୋଗୀମାନଙ୍କୁ ବିଡ଼ି ଓ ଶ୍ୱେତାଙ୍ଗମାନଙ୍କୁ ସିଗାରେଟ୍ ପ୍ୟାକେଟ୍ ପ୍ରଦାନ କରିଥିଲେ। ଜାପାନ ଆକ୍ରମଣ ଭୟରେ ରାଜଧାନୀ କଟକରୁ ସେକ୍ରେଟାରିୟେଟ୍ ସମ୍ବଲପୁରକୁ ସ୍ଥାନାନ୍ତରିତ ହୋଇଥିଲା। ଥରେ ଗୋପାଳବାବୁ କଟକରେ ବଜାର କରୁଥିବାବେଳେ ସାଇରନ ବାଜିବାରୁ ସେ ରାସ୍ତା ଉପରେ ମୁହଁମାଡ଼ି ଶୋଇବାକୁ ବାଧ୍ୟ ହୋଇଥିଲେ। ମିଲିଟାରୀ ପୋଲିସର ଆଶଂକାକୁ ଅମୂଳକ ପ୍ରମାଣ କରି ସେଦିନ କଟକରେ ବୋମା ପଡ଼ିନଥିଲା, କିନ୍ତୁ ଗୋପାଳବାବୁଙ୍କର ଆଣ୍ଠୁଗଣ୍ଠି ଛିଣ୍ଡି ରକ୍ତ ବାହାରିଥିଲା।

## ସମକାଳୀନ ସାମାଜିକ ପରିବେଶ

ଗୋପାଳ ବାରବର୍ଷ ବୟସରେ ପିତୃହରା ହୋଇଥିଲେ। ଶୁଦ୍ଧିକ୍ରିୟାର ଅଳ୍ପଦିନ ପରେ ସେ ସମାଜରେ ଗୋପବନ୍ଧୁଙ୍କ ତିରୋଧାନ ସମ୍ବାଦ ପଢ଼ି କାନ୍ଦିପକାଇଥିଲେ। ସେ ତାଙ୍କ ବଡ଼ ଭଉଣୀଙ୍କୁ କାନ୍ଦିବାର କାରଣ କହିଥିଲେ ଏହିଭଳି '' xxx ବାପା ସିନା ଆମ ପରିବାରକୁ ଅନାଥ କରି ଯାଇଛନ୍ତି। ଉତ୍କଳମଣି ଆମ ସମସ୍ତଙ୍କୁ, ହଁ ଲୋ ଅପା, ଓଡ଼ିଶାର ଆମ ସମସ୍ତଙ୍କୁ ଅନାଥ କରି ଚାଲିଗଲେ। ଆମେ ସମସ୍ତେ ଅନାଥ ହୋଇଗଲୁ। ମୁଁ ଥରେ ତାଙ୍କୁ ଦେଖି ପାରିଲି ନାହିଁ।'' (ପଥିକ- ପୃଃ-୨୦) ସେ ଯେଉଁ ବର୍ଷ କଟକ ଆସିଥିଲେ ସେହି ବର୍ଷ ଇଲେକ୍ଟ୍ରିକ ବଲ୍‌ବ ପ୍ରଥମେ ହଷ୍ଟେଲରେ ଲାଗିଥିଲା ଓ ଗୋଟିଏ ପିଲା ଟେକା ମାରି ବଲ୍‌ବ ହୋଲଡର ଭାଙ୍ଗି ଦେଇଥିବାରୁ ହଷ୍ଟେଲରୁ ତାକୁ ବହିଷ୍କାର କରାଯାଇଥିଲା। ବିଦ୍ୟୁତ୍ ପରିଚାଳନା ପ୍ରଥମେ ଓକ୍ଟୋଭିୟସ ନାମକ କମ୍ପାନୀ ଦାୟିତ୍ୱରେ ଥିଲା। ପରେ ବିଶାଳ ବିଦ୍ୟୁତ୍ ବୋର୍ଡ ଗଠିତ ହେଲା ଓ ବିଚକ୍ଷଣ ଇଂଜିନିୟରମାନେ ବୋର୍ଡ ପରିଚାଳନା ଦାୟିତ୍ୱରେ ରହିଲେ। କ୍ରମେ ତାଳଚେର ହୀରାକୁଦ ଓ ବାଲିମେଳା ପ୍ରଭୃତି ଅଞ୍ଚଳରେ ବିଦ୍ୟୁତ୍ ଉତ୍ପାଦନ ଆରମ୍ଭ ହୋଇ ସମଗ୍ର ଓଡ଼ିଶାକୁ ବିଜୁଳି ଯୋଗାଇବାକୁ ଚେଷ୍ଟା ହୋଇଥିଲା।

ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ଭାଷାକୋଷ ପ୍ରଣୟନ କାର୍ଯ୍ୟ ଦେଖି ଗୋପାଳ ଖୁବ୍

ଉଦ୍‌ବୁଦ୍ଧ ହୋଇଥିଲେ । ଏହି ଭାଷାକୋଷ ପ୍ରକାଶନର ଦାୟିତ୍ୱ ନେଇଥିଲେ ମୟୂରଭଞ୍ଜର ତରୁଣ ଶାସକ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ । ତାଙ୍କୁ ସମ୍ମାନଜଣାଇ ୭ ଖଣ୍ଡରେ ବିଭକ୍ତ ଏହି ଭାଷାକୋଷର ନାମ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ରଖାଯାଇଛି । ସେଠାରେ ଗୋପାଳ ପଣ୍ଡିତ ଲମ୍ବୋଦର କର, ରେଭେନ୍‌ସା କଲିଜିଏଟ୍ ସ୍କୁଲର ହେଡ୍‌ପଣ୍ଡିତ କୁଳମଣି ଦାସ ପ୍ରଭୃତିଙ୍କ ପାଣ୍ଡିତ୍ୟ ତଥା ଭାଷାକୋଷ ରଚନା ପ୍ରତି ଦାୟବଦ୍ଧତା ଦେଖି ପ୍ରଭାବିତ ହୋଇଥିଲେ । ପରେ ଗୋଦାବରୀଶ ମହାପାତ୍ର ମହୋଦୟ 'ନିଆଁଖୁଣ୍ଟା'ରେ ସମାଲୋଚନାତ୍ମକ ପ୍ରବନ୍ଧ ଲେଖିଲେ ଯାହାର ନାମ ଥିଲା 'ଅର୍ଦ୍ଧଚନ୍ଦ୍ର ଦେଢ଼ିଆ ପାଳକୋଷ' । ଏହା ପାଠକରି ତତ୍‌କାଳୀନ ବିଶିଷ୍ଟ ଓକିଲ ଚିନ୍ତାମଣି ଆଚାର୍ଯ୍ୟ, 'ମୁକୁର'ର ସଂପାଦକ ବ୍ରଜସୁନ୍ଦର ଦାସ, ବିଶିଷ୍ଟ ଶିକ୍ଷାବିତ୍ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତି ବ୍ୟସ୍ତ ହୋଇ ଏଭଳି ନ କରିବାକୁ ଗୋଦାବରୀଶ ମହାପାତ୍ରଙ୍କୁ ଅନୁରୋଧ କରିଥିଲେ । ପରେ ଭାଷାକୋଷ ମୁଦ୍ରଣ ସମାପ୍ତ ହୋଇଥିଲା ଓ ଏଥିପାଇଁ ଗୋପାଳ ପ୍ରହରାଜଙ୍କୁ 'ରାୟବାହାଦୂର' ଉପାଧି ମିଳିଥିଲା ।

କଂଗ୍ରେସ କହିଲେ ସେତେବେଳେ ଏକ ରାଜନୀତିକ ପାର୍ଟି ମାତ୍ର ନ ଥିଲା । ତାହା ଥିଲା ଶିକ୍ଷିତ ବିଚାରଶୀଳ ଦେଶପ୍ରେମୀ ଯୁବକମାନଙ୍କର ମିଳନପୀଠ । କଂଗ୍ରେସ ତରଫରୁ ସ୍କୁଲଛାଡ଼ି ଛାତ୍ରମାନଙ୍କୁ ବାନରସେନା ଭାବରେ ପିକେଟିଂ କରିବାର ନିର୍ଦ୍ଦେଶ ଦିଆଗଲା । ସେ ସମୟରେ କଟକରେ ରେଭେନ୍‌ସା କଲିଜିଏଟ୍ ସ୍କୁଲ, ପ୍ୟାରୀମୋହନ ଏକାଡ଼େମୀ, ଟାଉନ୍‌ଭିକ୍ଟୋରିଆ ହାଇସ୍କୁଲ (ଭକ୍ତ ମଧୁ ବିଦ୍ୟାପୀଠ) ମିଶନ ହାଇସ୍କୁଲ ଓ ସୟଦ ସେମିନାରୀ ସ୍କୁଲ । ରେଭେନ୍‌ସା ଗାର୍ଲସ୍କୁଲକୁ ପିକେଟିଂ ଇତ୍ୟାଦିରୁ ବାଦ୍ ଦିଆଯାଇଥିଲା । ଗୋପାଳ ଛୋଟରାୟ ଭିକ୍ଟୋରିଆ ହାଇସ୍କୁଲ ସାମନାରେ ପିକେଟିଂ କରିବା ସମୟରେ ରମାଦେବୀଙ୍କୁ ପ୍ରଥମେ ଦେଖିଥିଲେ । ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ପରିବାରର ଝିଅ ବରିଷ୍ଠ ଓକିଲ ତଥା ଜମିଦାର ଗୋକୁଳାନନ୍ଦ ଚୌଧୁରୀଙ୍କ ବୋହୂ ତଥା କଂଗ୍ରେସ ନେତା ଗୋପବନ୍ଧୁ ଚୌଧୁରୀଙ୍କ ପତ୍ନୀ ରମାଦେବୀଙ୍କୁ ସାଧାରଣ ପୋଷାକରେ ଦେଖି ଓ ତାଙ୍କ ସ୍ୱର ଶୁଣି ସେ ଯୁଗପତ୍ ଆନନ୍ଦ ଓ ବିଷାଦରେ ବିବ୍ରତ ହୋଇ ପଡ଼ିଥିଲେ ।

କଟକରେ ଦୁଇ ବର୍ଷ ପଢ଼ିବା ଭିତରେ ସେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କୁ ମଧ ଦେଖିଥିଲେ । ଫୋର୍ଡହୁଡ୍‌ବାଲା ଗାଡ଼ିରେ ଆସି କଲେକ୍‌ଟରେଟ୍ ହତା ନଦୀକୂଳରେ ଓହ୍ଲାଇ ସେ କାଠଯୋଡ଼ି ନଦୀବନ୍ଧ ଉପରକୁ ପ୍ରାୟ ବୁଲିବାକୁ ଆସୁଥିଲେ । ତାଙ୍କୁ ସମସ୍ତେ ସମ୍ମାନ ଜଣାଉଥିଲେ । ତାଙ୍କର ଶୁଭ୍ର ପଗଡ଼ିଟି କିଶୋର ଗୋପାଳଙ୍କୁ ଅଧିକ ଆକର୍ଷିତ କରିଥିଲା ।

୧୯୩୧ରେ କଟକରେ ସେ ପ୍ରଥମେ ଉଡ଼ାଜାହାଜ ଦେଖିବାର ବିରଳ ସୌଭାଗ୍ୟ ପାଇଥିଲେ । ଉଡ଼ାଜାହାଜ ଦୁଇଟିରୁ ପେଟ୍ରୋଲ ସରିଯାଇଥିବାରୁ ସେମାନେ କଟକର କ୍ୟାଣ୍ଟନମେଣ୍ଟ ରୋଡ୍ ପାଖରେ ଓହ୍ଲାଇଥିଲେ । ବିଲ୍‌ମୋରିଆ ଦୋକାନରୁ ବଳଦ ଗାଡ଼ିରେ ପେଟ୍ରୋଲ ଆସି ସେଥିରେ ଭର୍ତ୍ତି କରାଯିବାପରେ ପରଦିନ ସେମାନେ ଉଡ଼ିବା ଆରମ୍ଭ କରିଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଉପଲକ୍ଷେ ହୋଇଥିବା ବିରାଟ ପ୍ରଦର୍ଶନୀରେ ଗୋପାଳ

ବାବୁ ଶିଳ୍ପୀ ବିମ୍ବାଧର ବର୍ମାଙ୍କର ଅମର ଚିତ୍ର 'ପଲ୍ଲୀବଧୂ' ଓ ତା'ର ସ୍ରଷ୍ଟା ଶିଳ୍ପୀ ବର୍ମା ମହୋଦୟଙ୍କୁ ଦେଖିଥିଲେ । କଲିକତାର ଟିକାୟତ ସାହେବ ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ 'ପଲ୍ଲୀବଧୂ' ଛବିଟିକୁ ସାତହଜାର ଟଙ୍କାରେ କିଣିଥିଲେ । ତାଙ୍କ ସହିତ ପ୍ରଥମ ସାକ୍ଷାତରେ ହିଁ ପେନ୍‌ସିଲ ଗାର କେତୋଟି ସାହାଯ୍ୟରେ ଗୋଟିଏ ଛବିର ମାନସିକତାରେ ପରିବର୍ତ୍ତନ ଆଣି ବର୍ମା ମହାଶୟ ଗୋପାଳ ବାବୁଙ୍କ ମନରେ ସମ୍ଭ୍ରମ ସୃଷ୍ଟି କରିପାରିଥିଲେ । କଲିକତାରୁ ସଜନୀକାନ୍ତ ଦାସଙ୍କ ସଂପାଦିତ ସାହିତ୍ୟ ପତ୍ରିକା 'ଶନିବାରେର ଚିଠି' ଓ ବଂଗଳା ସାହିତ୍ୟ ପତ୍ରିକା 'ଭାରତବର୍ଷ'ରେ ଶିଳ୍ପୀ ବି. ବର୍ମାଙ୍କ ଚିତ୍ର ଓ ଚିତ୍ରର ପ୍ରଶଂସା ସେ ପଢ଼ିଥିଲେ । ତାଙ୍କୁ ବଙ୍ଗଳାର ନନ୍ଦଲାଲ ବୋଷ, ଯାମିନୀକାନ୍ତ ଓ ଅବନୀନ୍ଦ୍ର ପ୍ରଭୃତିଙ୍କ ସମକକ୍ଷ ଭାବରେ ଚିତ୍ରଣ କରାଯାଇଥିବାରୁ ଗୋପାଳ ବାବୁ ମୁଗ୍ଧ ହୋଇଥିଲେ ।

## ଛୋଟରାୟଙ୍କର ଅନ୍ୟାନ୍ୟ ଆଗ୍ରହ

ଗୋପାଳ ଛୋଟରାୟ ପିଲାଦିନରୁ ଲେଖାଲେଖି ପ୍ରତି ଆଗ୍ରହୀ ଥିଲେ । ସ୍କୁଲ ମ୍ୟାଗାଜିନରେ ନିଜ ଲେଖା ପ୍ରକାଶ କରିବା ସହିତ ସେ ହାତଲେଖା ହଷ୍ଟେଲ ମ୍ୟାଗାଜିନ ସହିତ ମଧ୍ୟ ଜଡ଼ିତ ଥିଲେ । ଅନ୍ୟ ସାହିତ୍ୟିକମାନଙ୍କ ଭଳି ତାଙ୍କର ସାହିତ୍ୟିକ ଜୀବନ କବିତା ଲେଖାରୁ ଆରମ୍ଭ ହୋଇଥିଲା । ସେ ଖୁବ୍ ସୁନ୍ଦର କବିତା ଆବୃତ୍ତି କରିପାରୁଥିଲେ । ନିଜ ଗାଁ ପୁରୁଣାଗଡ଼ରୁ ହାତଲେଖା ପତ୍ରିକା 'ପଲ୍ଲୀସଖା'ସେ ସଂପାଦନା କରିଥିଲେ ଯାହା ସେ ସମୟରେ ଖୁବ୍ ଲୋକପ୍ରିୟ ହୋଇଥିଲା । ତାଙ୍କର ପ୍ରଥମ କବିତା ଚନ୍ଦ୍ରମଣି ଦାସଙ୍କ ସଂପାଦିତ ପତ୍ରିକା 'ପ୍ରଗତି'ରେ ପ୍ରକାଶିତ ହୋଇଥିଲା । ପ୍ରଗତି, ସହକାର, ଡଗର, ଗୋଧୂଳି ପ୍ରଭୃତି ପତ୍ରପତ୍ରିକାରେ ତାଙ୍କର କବିତା ଓ ଗଳ୍ପମାନ ପ୍ରକାଶିତ ହେଉଥିଲା ।

ଚାରିବର୍ଷ ବୟସରେ ଶିଶୁ ଗୋପାଳ ବୃନ୍ଦାବନ ଓଝାଙ୍କ ଯାତ୍ରା ଓ ରାହାସ ଦେଖିଥିଲେ । ବୃନ୍ଦାବନ ଓଝାଙ୍କ ଯାତ୍ରାପାର୍ଟିରେ ଅଭିନୀତ ହୋଇଥିବା 'ରଙ୍ଗସଭା' ଦ୍ୱାରା ସେ ଏତେ ପ୍ରଭାବିତ ହୋଇଥିଲେ ଯାହା ପରବର୍ତ୍ତୀ କାଳରେ ଆକାଶବାଣୀରେ ଗୀତିନାଟ୍ୟର ପୁନରୁଦ୍‌ବର୍ତ୍ତନରେ ସହାୟକ ହୋଇଥିଲା । ଏତଦ୍‌ବ୍ୟତୀତ ସେ ପାଲା, ଲୀଳା, ସୁଆଙ୍ଗ ପ୍ରଭୃତି ଦେଖିବାପାଇଁ ଖୁବ୍ ଆଗ୍ରହୀ ଥିଲେ । ଅତୀତର ନାଟ୍ୟକଳା ସହିତ ତାଙ୍କର ବାଲ୍ୟକାଳରୁ ସଂପୃକ୍ତି ଥିଲା । ତେଣୁ ତାଙ୍କ ନିଜ ଭାଷାରେ "Technically or otherwise, I have thankfully accepted anything new that has come in my way, but never failed to have a nostalgic look at our rich past." (୧୯୮୨ ମସିହା କେନ୍ଦ୍ରସାହିତ୍ୟ ଅକାଦେମି ପୁରସ୍କାର ଗ୍ରହଣ ଅବସରରେ ପ୍ରଦତ୍ତ ଭାଷଣରୁ ଉଦ୍ଧୃତ) ସଙ୍ଗୀତ ସଂଯୋଜନାରେ ମଧ୍ୟ ସେ ପ୍ରାଚୀନ ସ୍ୱର ତାଳ ଲୟର ଯଥେଷ୍ଟ ପ୍ରୟୋଗ କରିଛନ୍ତି ।

ଯାତ୍ରା, ସୁଆଙ୍ଗ ବା ଲୀଳା ଦେଖିବାର ଆଗ୍ରହ ସହିତ ଫୁଟବଲ ଖେଳରେ ମଧ୍ୟ ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା । ଖବରକାଗଜରୁ ଖେଳ ସମ୍ବାଦ କାଟି ସଂଗ୍ରହ କରିବା, ବିଶ୍ୱର ପ୍ରସିଦ୍ଧ

ଫୁଟବଲ ଖେଳାଳୀମାନଙ୍କ ବିଷୟରେ ବିବରଣୀ ସଂଗ୍ରହ କରିବାରେ ଥିଲା ତାଙ୍କର ପ୍ରଚୁର ଆଗ୍ରହ। କଟକ ଫୁଟବଲ ଲିଗ୍ ମ୍ୟାଚ୍ ଓ ଆର୍ଟ ଓୟାର ସିଲ୍ଡ ମ୍ୟାଚ୍‌ରେ ଅଂଶଗ୍ରହଣ କରିଥିବା କ୍ଲବ୍‌ଗୁଡ଼ିକ ହେଲେ ଟାଉନ୍ କ୍ଲବ, ରୋଭରର୍ସ କ୍ଲବ, ସନ୍‌ରାଇଜ କ୍ଲବ ପ୍ରଭୃତି। ମୋହନବାଗାନ ଦଳ ଓ ଗୋଲକିପର କେ. ଦତ୍ତଙ୍କ କଥା ମଧ୍ୟ ସେ ନିଜ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି। ଓଡ଼ିଶାର ସନ୍ତୋଷ ଟ୍ରଫି, ବୁଲୁ, ବଟନ ଜଗାରାଓ ଯୁବରାଜ, ବୀରକିଶୋର ପ୍ରଭୃତି ତାଙ୍କ ସ୍ମୃତିରେ ଜୀବନ୍ତ। ସବୁ ଖେଳ ସେ ଦେଖୁଥିଲେ। ଓଡ଼ିଶାର ଫୁଟ୍‌ବଲ୍ ଜଗତର ଯୁଗପୁରୁଷ ନନ୍ଦନନ୍ଦନ ମହାପାତ୍ର ଓରଫ୍ ଫେଲୁ ବାବୁଙ୍କ କଥା ମଧ୍ୟ ସେ ବାରମ୍ବାର ଦୋହରାଉଥିଲେ। ୧୯୫୦ର ଭାରତୀୟ ଅଲମ୍ପିକ୍‌ସ୍, ନନ୍ଦକୃଷ୍ଣ ଦାସ, ଭୈରବଚନ୍ଦ୍ର ମହାନ୍ତି ପ୍ରଭୃତିଙ୍କ ବିଷୟରେ ସେ ଖୁବ୍ ଆଗ୍ରହୀ ଥିଲେ ଓ ପରିଣତ ବୟସରେ ମଧ୍ୟ ଖେଳୁଆଡ଼୍ ସୁଲଭ ମନୋଭାବ ନେଇ ସୃଷ୍ଟିକର୍ମରେ ବ୍ୟାପୃତ ଥିଲେ। ଭୈରବ ମହାନ୍ତି ପରବର୍ତ୍ତୀ ସମୟରେ କଟକ ବିନୋଦ ବିହାରୀଠାରେ ବ୍ରିଜ ଖେଳର ପ୍ରତିଯୋଗିତା କରିଥିଲେ ଓ ସେକ୍ରେଟେରିୟେଟ୍‌ରେ ବ୍ଲିଜ୍ କ୍ଲବ୍‌ର ମୁଖ୍ୟ ଉଦ୍ୟୋକ୍ତା ହୋଇଥିଲେ। ୧୯୮୦ ମସିହା ପର୍ଯ୍ୟନ୍ତ ଭୈରବ ବାବୁଙ୍କ ସହିତ ତାଙ୍କର ଖୁବ୍ ଭଲ ସମ୍ପର୍କ ଥିଲା।

ଅଷ୍ଟମ ଶ୍ରେଣୀର ଛାତ୍ର ଥିବାବେଳେ ମୋହନ ଗୋସ୍ୱାମୀ, ବାବାଜୀ ବୈଷ୍ଣବଚରଣ ଦାସ ଓ କାଳୀଚରଣଙ୍କର ରାସର ପ୍ରଭାବ ତାଙ୍କ ଅବଚେତନରେ ଅପେରା ସୃଷ୍ଟି ପାଇଁ ଆଗ୍ରହ ସୃଷ୍ଟି କରିଥିଲା। ସେ ରେଭେନ୍‌ସା କଲେଜରେ ରାମାରଂଜନ ମହାନ୍ତିଙ୍କର 'ଗୌଡ଼ବିଜେତା' ନାଟକ ଦେଖି ମୁଗ୍ଧ ହୋଇଥିଲେ। ଧନେଶ୍ୱର ଦାସଙ୍କର କାର୍ତ୍ତବୀର୍ଯ୍ୟ, ରାମଚନ୍ଦ୍ର ମହାପାତ୍ରଙ୍କର 'ସୁଦାମା' ଓ ରାମଶଂକର ରାୟଙ୍କର 'କାଞ୍ଚିକାବେରୀ' ତାଙ୍କୁ ପ୍ରଭାବିତ କରିଥିଲା। 'କାଞ୍ଚିକାବେରୀ'ର ଉତ୍କଳଦୂତ ଚରିତ୍ରର ସଂଳାପ ମୁଖସ୍ଥ କରି ସେ ସ୍କୁଲରେ ଆବୃତ୍ତି ପ୍ରତିଯୋଗିତାରେ ଭାଗ ନେଇଥିଲେ। ସେ ରାମଚନ୍ଦ୍ର ମିଶ୍ରଙ୍କର 'ଅଭିମାନ' ନାଟକରେ ନାୟକ ଭୂମିକାରେ ଅଭିନୟ କରିଥିଲେ। ଅଭିନୟ ଶିକ୍ଷା ସମୟରେ ତତ୍‌କାଳୀନ ପୋଲିସ ଇନ୍‌ସପେକ୍ଟର ଦୁର୍ଗା ମିଶ୍ରଙ୍କଠାରୁ ସେ ମାଡ଼ ମଧ୍ୟ ଖାଇଥିଲେ।

ତାଙ୍କର ସମ୍ବଲପୁର ଅଞ୍ଚଳରେ ଜମିଜମା ଓ ଚାଷବାସ ରହିଥିଲା। ଆକାଶବାଣୀରେ ନିଯୁକ୍ତି ନ ପାଇବା ପୂର୍ବରୁ ସେ ସମ୍ବଲପୁରର ବୋଡ଼ାସମ୍ବର ଜମିଦାରୀରେ ରହୁଥିଲେ। ଏହା ପଦ୍ମପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ଥିଲା। ସେହିଠାରେ ମାଣ୍ଡୁଚିଲି ଗ୍ରାମରେ ୧୯୪୬ ନଭେମ୍ବର ୨୬ରେ ପୁତ୍ର ଦେବଦାସ ଓ ୧୯୪୮ ନଭେମ୍ବର ୨୬ରେ କନ୍ୟା କସ୍ତୁରୀ ଜନ୍ମଗ୍ରହଣ କରିଥିଲେ। ସମ୍ବଲପୁରର ପ୍ରଚୁର ଭୂସମ୍ପତ୍ତିକୁ ସେ ସଚେତନ ଭାବରେ ଉପଯୋଗ କରିବାକୁ ଚାହିଁ ନିଜର ବ୍ୟବସାୟ ଆରମ୍ଭ କରିଥିଲେ। ଲୁଗା, ଚାଉଳ, ଖଇର ଇତ୍ୟାଦି ଥିଲା ତାଙ୍କର ପଣ୍ୟଦ୍ରବ୍ୟ। କିନ୍ତୁ ଲୁଗା ଚାଉଳ ବ୍ୟବସାୟ ଯେ କେହି ଚତୁର ମଣିଷ ମଧ୍ୟ କରିପାରେ। ଗୋପାଳ ଛୋଟରାୟ କିନ୍ତୁ ଏଭଳି ବ୍ୟବସାୟରେ ସନ୍ତୁଷ୍ଟ ହୋଇ ପାରୁ ନ ଥିଲେ। ତେଣୁ ସେ ଦୀର୍ଘଦିନ ସେହି ବ୍ୟବସାୟରେ ରହି ପାରିଲେ ନାହିଁ। ବରଂ ଆକାଶବାଣୀର ସାହଚର୍ଯ୍ୟ ତାଙ୍କ ଭିତରେ ଥିବା ସ୍ରଷ୍ଟାମଣିଷଟି ପାଇଁ ଯଥେଷ୍ଟ ସନ୍ତର୍ପଣରେ ପଥ ପ୍ରସ୍ତୁତ କରିଥିଲା।

## ବିବାହ ଓ ଚାକିରି ଜୀବନ

୧୯୩୮ରେ ଗୋପାଳ ଛୋଟରାୟ ବିବାହ କରନ୍ତି। ନବବଧୂ ଶ୍ରୀମତୀ ବନଲତା ଗୋପାଳ ବାବୁଙ୍କର ଉପଯୁକ୍ତ ସହଧର୍ମିଣୀ ଭାବରେ ତାଙ୍କର ସୁଖଦୁଃଖକୁ ଆପଣାର କରି ଉପଯୁକ୍ତ ପତ୍ନୀ ହୋଇପାରିଥିଲେ। ୧୯୪୨ରେ ପ୍ରଥମ ନାଟକ ଲେଖିବା ସମୟରେ ବନଲତା ତାଙ୍କୁ ସଚେତନ କରିଦେଇଥିଲେ ଯେ ଥରେ ସରକାର ବିରୋଧୀ ଆନ୍ଦୋଳନରେ ଯୋଗ ଦେଇ ସେ ଜେଲ୍ ଯାଇଛନ୍ତି। ତେଣୁ ସେ ଯାହା ଲେଖିବେ, ବୁଝିଶୁଝି ଲେଖିବା ଉଚିତ। ୧୯୪୧ରେ ତାଙ୍କର ଜମିଦାରୀ ନିଲାମ ହୋଇଥିଲା ଓ ଝିଅଟିଏ ଜନ୍ମ ହୋଇ ମୃତ୍ୟୁବରଣ କରିଥିଲା। ଏସବୁ ଦୁଃଖକୁ ସେ ପତ୍ନୀଙ୍କ ସାହାଯ୍ୟରେ ସହ୍ୟ କରିବାର ଶକ୍ତି ହାସଲ କରିଥିଲେ। ପତ୍ନୀ ତାଙ୍କଠାରୁ ଦୃଢ଼ମନା ଥିଲେ ବୋଲି ସେ ବାରମ୍ବାର କହିଥାଆନ୍ତି। ତାଙ୍କ ଭଳି ସହଧର୍ମିଣୀ ପାଇଥିବାରୁ ହିଁ ନାଟ୍ୟକାର ଛୋଟରାୟ ନିଜର ସମସ୍ତ ସାମର୍ଥ୍ୟ ନାଟକ ପାଇଁ ବିନିଯୋଗ କରିପାରିଥିଲେ।

ପାଠପଢ଼ା ସହିତ ଖେଳରେ ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା। ସେ ସମୟରେ Inspector of Schoolsର ଅଫିସ ଆସିଷ୍ଟାଣ୍ଟ ଚାକିରି ପାଇଁ ଦେଇଥିବା ଇଣ୍ଟରଭ୍ୟୁରେ ସେ ୧୯୩୬ ବର୍ଲିନ୍ ଅଲିମ୍ପିକ୍ସରେ ନିଗ୍ରୋ କ୍ରୀଡ଼ାବିତ୍ ଜେ.ସି ଓୟେନ୍ସଙ୍କ କୃତିତ୍ୱ ତଥା ଭାରତୀୟ ହକିର ଯାଦୁକର ଧ୍ୟାନଚାନ୍ଦଙ୍କ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ବିବରଣୀ ପ୍ରଦାନ କରି କର୍ମକର୍ତ୍ତାମାନଙ୍କୁ ବିସ୍ମିତ କରି ଦେଇଥିଲେ। ୧୯୩୭ରୁ ୧୯୪୩ ପର୍ଯ୍ୟନ୍ତ ସେ କଟକ ଡିଷ୍ଟ୍ରିକ୍ଟ ବୋର୍ଡ ଅଫିସରେ ଚାକିରି କରିଥିଲେ। ଏହି ସମୟରେ ବିବାହ ଓ ବ୍ରଜସୁନ୍ଦର ଦାସଙ୍କ ସାକ୍ଷାତ ତାଙ୍କ ଜୀବନକୁ ପ୍ରଭାବିତ କରିଥିଲା।

୧୯୪୪ରୁ ୧୯୪୮ ପର୍ଯ୍ୟନ୍ତ ସେ ବୋଡ଼ାସମ୍ବର ଜମିଦାରୀରେ ରହି ନିଜ ଜମିବାଡ଼ିର ଦେଖାଚାହାଁ କରୁଥିଲେ। ସେଠାରେ ତାଙ୍କର ପୁତ୍ର କନ୍ୟା ଉଭୟ ଜନ୍ମଗ୍ରହଣ କରିଥିଲେ। ସେଠାରେ ଲୁଗା, ଖଇର ଓ ଚାଉଳ ଇତ୍ୟାଦିର ବ୍ୟବସାୟ ମଧ୍ୟ ସେ ଆରମ୍ଭ କରିଥିଲେ। ୧୯୪୮ ମସିହା ଜାନୁୟାରୀ ୨୮ ତାରିଖରେ କଟକ ରେଡ଼ିଓ ଷ୍ଟେସନ ସ୍ଥାପିତ ହେଲା। ୧୯୪୯ ଡିସେମ୍ବର ମାସରେ ଗୋପାଳ ଛୋଟରାୟ କଟକ ଆସିଲେ ଓ ଜଣେ ବେତାର ନାଟ୍ୟଶିଳ୍ପୀ ଭାବରେ ନାଟକ ପ୍ରଚାରରେ କିଛିଦିନ ଅଂଶ ଗ୍ରହଣ କରିଥିଲେ। ୧୯୫୦ରେ ତାଙ୍କର ପ୍ରଥମ ବେତାର ନାଟକ 'ସମ୍ରାଟ ନନ୍ଦିନୀ ଜାହାନ୍ନାରା' ପ୍ରଚାରିତ ହେଲା। ଏହା ପରଠାରୁ ସେ ରେଡ଼ିଓକୁ ତାଙ୍କର ପ୍ରିୟ ମାଧ୍ୟମ ଭାବରେ ଗ୍ରହଣ କରିଥିଲେ ଏବଂ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଭାଷାର ଅନେକ ନାଟକର ଓଡ଼ିଆ ଅନୁବାଦ କରି ରେଡ଼ିଓରେ ପ୍ରସାରିତ କରିଥିଲେ। ଏହି ସମୟରେ ନିଜେ ସେ ନାଟକ ଓ ରୂପକ ରଚନା ଆରମ୍ଭ ମଧ୍ୟ କରିଥିଲେ। ଗୋପାଳ ବାବୁ ପ୍ରଥମ ବେତାର ନାଟ୍ୟକାର ଯିଏ କି ଉପନ୍ୟାସର ନାଟ୍ୟରୂପ ପ୍ରସ୍ତୁତ କରି ପ୍ରଚାରିତ କରିଥିଲେ। ଏହା ହେଉଛି ଉପେନ୍ଦ୍ର କିଶୋର ଦାସଙ୍କର ଅନୁପମ ଉପନ୍ୟାସ 'ମଲାଜହ୍ନ'ର ନାଟ୍ୟରୂପ।

୧୯୫୬ ମସିହା ସେପ୍ଟେମ୍ବର ମାସରେ ଆକାଶବାଣୀ ଦିଲ୍ଲୀ କେନ୍ଦ୍ରଠାରେ ଭାରତର ବିଭିନ୍ନ ଭାଷାଭାଷୀ ବେତାର ନାଟ୍ୟକାରମାନଙ୍କର ଏକ ସମାବେଶ ହୋଇଥିଲା । ଗୋପାଳ ଛୋଟରାୟ ଏହି ଆଲୋଚନା ସଭାରେ ଓଡ଼ିଶାର ପ୍ରତିନିଧି ଭାବରେ ଯୋଗ ଦେଇଥିଲେ । ଏହାପରେ ସେ ୧୯୫୬ ଡିସେମ୍ବର ମାସରେ କଟକ ଆକାଶବାଣୀ କେନ୍ଦ୍ରରେ ସ୍ଥାୟୀ ନାଟ୍ୟକାର ଭାବରେ ଯୋଗ ଦେଇ ୧୯୭୫ ଡିସେମ୍ବରରେ ଚାକିରିରୁ ଅବସର ଗ୍ରହଣ କରିଥିଲେ ।

ଅବସର ଗ୍ରହଣ ପରେ ମଧ୍ୟ ତାଙ୍କର ଲିଖନକର୍ମ ଜାରି ରହିଥିଲା । ଜୀବନସାରା ଲେଖାପଢ଼ାରେ ରହି ପରିବାର ଓ ପତ୍ନୀଙ୍କ ପାଇଁ ସମୟ ଦେଇପାରି ନ ଥିବା ନାଟ୍ୟକାର ଅବସର ପରେ ପତ୍ନୀଙ୍କ ସାହଚର୍ଯ୍ୟରେ କିଛି ଦିନ ଆନନ୍ଦରେ କଟାଇବାକୁ ଇଚ୍ଛା କରିଥିଲେ ମାତ୍ର ଅଳ୍ପଦିନ ଭିତରେ ତାଙ୍କୁ ପତ୍ନୀବିୟୋଗ ଦୁଃଖ ସହ୍ୟ କରିବାକୁ ପଡ଼ିଥିଲା । ବନଲତା ଦେବୀ ନିଜର ଶାରିରୀକ ଅସୁସ୍ଥତା ନେଇ ୨୬/୧୨/୧୯୭୮ ରେ ଇହଧାମ ତ୍ୟାଗ କଲେ । ସ୍ନେହୀ ତଥା କର୍ତ୍ତବ୍ୟପରାୟଣ ସ୍ୱାମୀ ଭାବରେ ନାଟ୍ୟକାର ଛୋଟରାୟ ପତ୍ନୀଙ୍କର ସେବାଯତ୍ନରେ ସାମାନ୍ୟତମ ହେଳା କରୁ ନ ଥିଲେ । ମାତ୍ର ପତ୍ନୀବିୟୋଗ ଦୁଃଖରେ ସେ ରୀତିମତ ଭାଙ୍ଗି ପଡ଼ିଲେ । ବନଲତାଙ୍କୁ ଚିକିତ୍ସା କରୁଥିବା ବିଶିଷ୍ଟ ଭେଷଜ ବିଶେଷଜ୍ଞ ଡଃ ବିଭୂତି ଭୂଷଣ ତ୍ରିପାଠୀ ନାଟ୍ୟକାର ଛୋଟରାୟ ମହାଶୟଙ୍କୁ ସେଦିନ କହିଥିଲେ- ''ଗୋପାଳ ବାବୁ ଆପଣଙ୍କର ଦ୍ୱିତୀୟ ଚାକିରି ଚାଲିଗଲା ।'' ତା'ପରେ ସେ କିଛି ଦିନ କନ୍ୟା କସ୍ତୁରୀ ଓ ଜାମାତା ଗୌରୀ ଶଙ୍କରଙ୍କ ନିକଟରେ ଅନୁଗୋଳ ଫର୍ଟିଲାଇଜର୍ସରେ ରହିଥିଲେ। ସେଠାରେ ତାଙ୍କୁ ଭଲ ନ ଲାଗିବାରୁ, ସେତେବେଳେ ବିହାରର ସାନ୍ତାଳ ପ୍ରଗଣାର ଦୁମ୍‌କାଠାରେ, ପୁତ୍ର ଦେବାଦାସ ଯେଉଁଠି କଲେକ୍ଟର ଥିଲେ ସେଠାରେ ରହିଥିଲେ । ପୁନର୍ବାର କଟକ ଫେରି ତାଙ୍କର ଜଣେ ସାନଭାଇ ନବକିଶୋର ଦାସଙ୍କ ଘରେ ମଧ୍ୟ ସେ କିଛି ଦିନ କଟାଇଥିଲେ । ତାଙ୍କର ଏତାଦୃଶ ବିପର୍ଯ୍ୟସ୍ତ ଅବସ୍ଥା ଦେଖି ତାଙ୍କର ବଡ଼ ଭଉଣୀ ସୁବାଣୀ ଅପା (ସୁରବାଳା ଦେବୀ) ତାଙ୍କ ମନସ୍ଥିର କରି ଗୋଟିଏ ଜାଗାରେ ରହିବାକୁ ଉପଦେଶ ଦେଇଥିଲେ । ତା'ପରେ କଟକ ଘରେ ରହି ସେ ନିଜର ପରଲୋକଗତା ପତ୍ନୀଙ୍କ ସ୍ମୃତିକୁ ଆପଣାର କରି ପୁନର୍ବାର ଲେଖାଲେଖିରେ ମନ ଦେଇଥିଲେ । ସେହି ସମୟରେ ସେ ଅନେକ ଗଳ୍ପ ଲେଖିଛନ୍ତି ଯାହା କି 'ସେଇଫୁଲ' ଓ 'ଚନ୍ଦ୍ରମୁଖୀ ଓ ଅନ୍ୟାନ୍ୟ ଗଳ୍ପ' ନାମକ ଦୁଇଟି ସଂକଳନରେ ସ୍ଥାନିତ ହୋଇଛି । ସେହି ସମୟରେ ସେ 'ରାମାୟଣ' ଗୀତିନାଟ୍ୟ, ଜଗନ୍ମୋହନ ଲାଲାଙ୍କର 'ବାବାଜୀ'ର ନାଟ୍ୟରୂପ, 'ଶୋଭା', 'ବାବୁ ଚନ୍ଦ୍ରମଣି', 'ସ୍ୱାଗତମ୍ ଗଣତନ୍ତ୍ର' ଓ ଆତ୍ମଜୀବନୀ 'ପଥିକ' ରଚନା କରିଛନ୍ତି । 'ସ୍ୱାଗତମ୍ ଗଣତନ୍ତ୍ର' ବର୍ତ୍ତମାନ ପର୍ଯ୍ୟନ୍ତ ମୁଦ୍ରିତ ବା ଅଭିନୀତ ହୋଇନାହିଁ । ଏହାକୁ ଛୋଟରାୟଙ୍କର ରାଜନୀତିଭିତ୍ତିକ ନାଟକ 'ପରକଲମ'ର ଦ୍ୱିତୀୟ ଭାଗ ବୋଲି କୁହାଯାଇପାରେ । ବମ୍ବେର ଲୀଳା ରାୟ ଏହି ସମୟରେ ଗୋପାଳ ଛୋଟରାୟଙ୍କ ଦ୍ୱାରା 'କୃଷ୍ଣଚରିତ'ର ୪୦୦ରୁ ଊର୍ଦ୍ଧ୍ୱ ଏପିସୋଡ୍ ଲେଖାଇଥିଲେ । American Library of Congressର ଦୁଇଶହ ବର୍ଷ ପୂର୍ତ୍ତି ପାଇଁ ଦୁଇଶହ ଲେଖକଙ୍କର କଣ୍ଠସ୍ୱର ସଂଗୃହୀତ ହେଉଥିଲା । ଏଥିପାଇଁ ନାଟ୍ୟକାର ଛୋଟରାୟ

ନିଜ କଣ୍ଠରେ କିଛି recording ମଧ୍ୟ କରିଥିଲେ। (ଏହି ତଥ୍ୟ ଗୋପାଳ ଛୋଟରାୟଙ୍କ ପୁତ୍ର ଦେବଦାସ ଛୋଟରାୟଙ୍କଠାରୁ ପ୍ରାପ୍ତ)।

ଏହି ସମୟରେ ସିଏ ଟେଲିଭିଜନ୍ ପାଇଁ ମଧ୍ୟ ଲେଖିବାକୁ ଆରମ୍ଭ କରିଥିଲେ। 'ସ୍କୁଲ ମାଷ୍ଟର' ଓ 'ବଧୂ ନିରୂପମା' ଭଳି ଓଡ଼ିଆ ଘରର ବାସ୍ନା ତଥା ସ୍ୱାଦ ଥିବା ସିନେମାର ସେ ଚିତ୍ରନାଟ୍ୟ ଓ ସଂଳାପ ମଧ୍ୟ ଲେଖିଥିଲେ।

ଶ୍ରୀଯୁକ୍ତ ଛୋଟରାୟ ନିଜର ପୁତ୍ର ଦେବଦାସ ବା ନିଜର କନ୍ୟା କସ୍ତୁରୀଙ୍କ ଘରେ ଶେଷ ଜୀବନ ବିତାଇଥିଲେ। ଏହି ସମୟରେ ୨୦୦୦ରେ ସେ ଶାରଳା ପୁରସ୍କାର ଓ ୨୦୦୨ରେ ପଦ୍ମଶ୍ରୀ ସମ୍ମାନ ପାଇଥିଲେ।

ଶିଶୁସୁଲଭ ମନ ନେଇ ଗୋପାଳ ବାବୁ ସମସ୍ତଙ୍କ ସହିତ ମିଶୁଥିଲେ ଓ ଧୀରସ୍ଥିର ଭାବରେ ନିଜର ମନ୍ତବ୍ୟ ପ୍ରକାଶ କରୁଥିଲେ। କେବେ ନିକଟ ଅତୀତର କଥା ସେ ମନେ ପକାଇ ପାରୁ ନ ଥିଲେ ମାତ୍ର ଦୂର ଅତୀତର ସ୍ମୃତି ମନେପକାଉଥିଲେ। ୨୦୦୩ ଜାନୁୟାରୀ ୨୨ ତାରିଖରେ କନ୍ୟା କସ୍ତୁରୀଙ୍କର ଭୁବନେଶ୍ୱର ସହିଦନଗର ବାସଭବନରେ ତାଙ୍କର ପରଲୋକ ଘଟିଥିଲା।

## ଲେଖକ ଜୀବନର ଆଦ୍ୟପାଦ

୧୯୪୨ ବେଳକୁ ଦେଶରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଚୂଡ଼ାନ୍ତ ପର୍ଯ୍ୟାୟ। ଦେଶର ପୂର୍ବ ଉପକୂଳରେ ଜାପାନର ସମରସଜ୍ଜା ଚାଲିଥାଏ। ଏ ଯୁଦ୍ଧରେ ଭାରତୀୟମାନେ ବ୍ରିଟିଶ ସରକାରଙ୍କୁ ସମର୍ଥନ କରିବେ ନାହିଁ ବୋଲି କଂଗ୍ରେସ ଜଣାଇ ଦେଇଥାଏ। ଏହାର ପ୍ରତିକାର ସ୍ୱରୂପ ସରକାର ଦେଶର ନରମପନ୍ଥୀ ନେତାମାନଙ୍କ ସହଯୋଗରେ National War Front ନାମକ ଏକ ସଂସ୍ଥା ଗଠନ କରିଥିଲେ। ଏହି ସଂସ୍ଥାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଯେ ହିଟ୍ଲରଙ୍କ ସାମ୍ରାଜ୍ୟବାଦ ବିରୁଦ୍ଧରେ ମିତ୍ରଶକ୍ତି ଏକ ଗଣଯୁଦ୍ଧ କରୁଛି ବୋଲି ସମ୍ବାଦପତ୍ର ଓ ଅନ୍ୟାନ୍ୟ ମାଧ୍ୟମ ଦ୍ୱାରା ପ୍ରଚାର କରାଯିବ। ତଦନୁସାରେ ଓଡ଼ିଶାରେ War Front ଗଢ଼ା ହେଲା ଓ ଏହାର ମୁଖ୍ୟକର୍ତ୍ତା ହେଲେ ଉଦାରପନ୍ଥୀ ନେତା 'ମୁକୁର' ପତ୍ରିକାର ସମ୍ପାଦକ ବ୍ରଜସୁନ୍ଦର ଦାସ। ଶ୍ରୀଯୁକ୍ତ ଦାସଙ୍କ ବାସଭବନରେ ହିଁ War Frontର କାର୍ଯ୍ୟାଳୟ ସ୍ଥାପିତ ହେଲା। ଦିନେ ଖଣ୍ଡିଏ ଟାଇପ୍‌କରା ପ୍ରଚାରପତ୍ର ଗୋପାଳ ଛୋଟରାୟଙ୍କ ହାତକୁ ଆସିଲା, ଯେଉଁଥିରେ ଲେଖା ହୋଇଥିଲା ମିତ୍ରପକ୍ଷର ଯୁଦ୍ଧ ଓ ଉଦ୍ୟମର ପ୍ରସାର ପାଇଁ ଓଡ଼ିଆରେ ପାଲା, ଦାସକାଠିଆ ଓ ଏକାଙ୍କିକା ପ୍ରଭୃତି ରଚନା War Front ଦରକାର କରୁଛନ୍ତି। ଉପଯୁକ୍ତ ଲେଖା ପାଇଁ ପାରିତୋଷିକ ମଧ୍ୟ ଦିଆଯିବ। କୋଡ଼ିଏ ଟଙ୍କା ପାରିତୋଷିକ ସେତେବେଳେ ଢେର୍ ଥିଲା। ସେହି ଆଗ୍ରହରେ ଗୋପାଳ ବାବୁ ନାଟକ ଲେଖିଲେ। ନାଟକଟିକୁ ଧରି ଗୋପାଳ ବାବୁ National War Frontର ଅଫିସକୁ ଗଲେ। ଚବିଶି ବର୍ଷର ତରୁଣ ଛୋଟରାୟଙ୍କୁ ଦେଖି ବ୍ରଜସୁନ୍ଦର ଦାସ ପ୍ରଥମେ ଆମୋଦିତ ହେଲେ। ଛୋଟରାୟ ତ କ୍ଷତ୍ରିୟ ସନ୍ତାନ। ସେ ତରବାରୀ ଧରି ଯୁଦ୍ଧକୁ ଯିବା କଥା। ସେ ହାତ ଲେଖନୀ ଧରିବା କଥା ତାଙ୍କୁ କୌତୂହଳୀ କରିଥିଲା। ଅଶ୍ୱିନୀ କୁମାର ଘୋଷ ଓ କାଳିନ୍ଦୀ

ପାଣିଗ୍ରାହୀଙ୍କ ନାଟକମାନ ସେହି ପ୍ରତିଯୋଗିତା ପାଇଁ ଆସିଥିଲା । ତେଣୁ ବ୍ରଜସୁନ୍ଦର ଦାସ ସେ ନାଟକଟିକୁ ଯୁବକ ଗୋପାଳ ତାଙ୍କୁ ପଢ଼ି ଶୁଣାନ୍ତୁ ବୋଲି ଆଦେଶ ଦେଇଥିଲେ । ସମ୍ପୂର୍ଣ୍ଣ ନାଟକଟି ପଢ଼ି ଶୁଣାଇବା ପରେ ବ୍ରଜସୁନ୍ଦର ଦାସ ତାଙ୍କୁ ଆଶୀର୍ବାଦ କରିଥିଲେ । ଗୋପାଳ ଛୋଟରାୟଙ୍କ ନିଜ ଭାଷାରେ ''ଯେତେ ବିନୟ ବା ଯେତେ ନମ୍ରତାର ଛଳନା କଲେ ମଧ ଜୀବନର ସେଇ ଅତି ସ୍ମରଣୀୟ ମୁହୂର୍ତ୍ତଟିର ବର୍ଣ୍ଣନା କରିବାକୁ ଯାଇ ମୁଁ ଏଠି ସତ୍ୟର ଅପଳାପ କରିପାରିବି ନାହିଁ । ପଢ଼ାଶେଷ ହେବା ବେଳକୁ ଦେଖିଲି, ଓଡ଼ିଆ ସାହିତ୍ୟର ସେଇ ଅନ୍ୟତମ କର୍ଣ୍ଣଧାର ମୋ' ମୁଣ୍ଡ ଉପରେ ହାତ ରଖି ଭାବ ଗଦ୍‌ଗଦ୍ କଣ୍ଠରେ କହୁଛନ୍ତି - ମୁଁ ଆଶୀର୍ବାଦ କରୁଚି - ତୁ ଲେଖ୍ - ଆହୁରି ଲେଖ୍ । ତୋ' କଲମ ବଞ୍ଚିରହୁ । ଏ ନାଟକ ତୁ ଲେଖିଚୁ - ଏଥିରେ - ମିତ୍ରଶକ୍ତିର ଜୟ କାମନା ତୁ କରିଚୁ - ହେଲେ ଜଣେ ଭାରତୀୟ ଭାବରେ ତୋ' ନିଜକୁ ତୁ କୋଉଁଠି ବିକି ଦେଇନୁ । ତୋ' ଲେଖାର ଛତ୍ରେ ଛତ୍ରେ ତୁ କହିଛୁ - ଏ ଦେଶ ଆମର । ଅମେ ହିଁ ଏ ଦେଶକୁ ଶତ୍ରୁ ହାତରୁ ରକ୍ଷା କରିବୁ । '' (ପଥିକ- ପୃ : ୧୬୬-୧୬୭) ଏହାପରେ ବ୍ରଜସୁନ୍ଦର ଦାସ ଏକାଙ୍କିକାଟି ଥିବା ସେ ଫାଇଲ ଉପରେ As a special case ଲେଖି ତାଙ୍କୁ କୋଡ଼ିଏ ଟଙ୍କା ନ ଦେଇ ପଞ୍ଚିତିରିଶି ଟଙ୍କା ପାରିତୋଷିକ ଦେଇଥିଲେ ।

ଗୋପାଳ ବାବୁ ନିଜ ନାଟକର ନାମ ରଖିଥିଲେ 'ସାଗରକନ୍ୟା' । ବ୍ରଜସୁନ୍ଦର ଦାସ ମହାଶୟ ହିଁ ଏକାଙ୍କିକାଟିର ନାମକରଣ କରିଥିଲେ 'ସହଧର୍ମିଣୀ' । ଏହା ବ୍ରଜସୁନ୍ଦର ଦାସଙ୍କ ଆଗ୍ରହ ଫଳରେ ମୁଦ୍ରିତ ହୋଇଥିଲା ଓ ତା'ର ଇଂରାଜୀ ଅନୁବାଦ ସେତେବେଳର ଓଡ଼ିଶାର ଗଭର୍ଣ୍ଣର ସାର୍ ହଥର୍ଣ୍ଣ ଲୁଇଙ୍କୁ ପଢ଼ିବାକୁ ଦିଆଯାଇଥିଲା । ଅନ୍ନପୂର୍ଣ୍ଣା ଏ ଗ୍ରୁପ୍ ଦ୍ୱାରା ଏହାର ମଞ୍ଚାୟନ ହେବା ସମୟରେ ସାର୍ ଲୁଇ ମହାଶୟ ପ୍ରେକ୍ଷାଳୟରେ ଉପସ୍ଥିତ ରହି ନାଟକଟି ଉପଭୋଗ କରିଥିଲେ । କିଛି ଦିନ ପରେ କଟକ ସହରରେ ଗଢ଼ି ଉଠିଥିବା ନୂତନ ନାଟ୍ୟମଞ୍ଚ 'ଭାରତୀ ଥିଏଟର୍ସ' ଦ୍ୱାରା ଏହି ନାଟକ ଅଭିନୀତ ହୋଇଥିଲା । ଅଭିନୟ ଦେଖିବାକୁ ଆସିଥିଲେ ଓଡ଼ିଶାର ତତ୍‌କାଳୀନ ପ୍ରିମିୟର ବା ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ପାରଳାର ରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ । ସେ ଅଭିନୟ ଦେଖିବା ପରେ ନାୟକ ଓ ନାୟିକା ଦୁହିଁଙ୍କୁ ଦୁଇଟି ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲେ । ପରଦିନ - ତୁଳସୀପୁରରେ ରାଜାଙ୍କ ବାସଭବନ ଗୋପାଳ ଛୋଟରାୟଙ୍କୁ ନିମନ୍ତ୍ରଣ କରି କୃଷ୍ଣଚନ୍ଦ୍ର ଗଜପତି ନିଜର ନାଟ୍ୟପ୍ରୀତିର ପରିଚୟ ଦେବା ସହିତ ଗୋପାଳ ବାବୁଙ୍କୁ ଶହେ ଟଙ୍କାର ନୋଟ୍‌ଟିଏ ଅର୍ପଣ କରିଥିଲେ । ସତେ ଯେପରି ଏକ ଯୁଗସ୍ରଷ୍ଟା ନାଟ୍ୟକାର ପାଇଁ ଏହିଭଳି ଶୁଭେଚ୍ଛା ଓ ପ୍ରୋତ୍ସାହନ ଉପଯୁକ୍ତ ମାର୍ଗ ପ୍ରସ୍ତୁତ କରିଥିଲା । ସେହିଦିନଠାରୁ ନାଟକ ରଚନା ପାଇଁ ତାଙ୍କର ଆଗ୍ରହ ବଢ଼ିଥିଲା ଯାହାକୁ ସେ ନିଜର ସାମର୍ଥ୍ୟ ଓ ପ୍ରତିଭା ସାହାଯ୍ୟରେ ଦୀର୍ଘସ୍ଥାୟୀ କରିପାରିଥିଲେ ।

ଗୋପାଳ ବାବୁଙ୍କ ସାନ ଜେଜେ ନିୟମିତ ସମ୍ବାଦପତ୍ର ପାଠ କରୁଥିଲେ । କଳାହାଣ୍ଡି ମହାରାଜ ଗୋଟିଏ ନାଟକ ପ୍ରତିଯୋଗିତା କରୁଛନ୍ତି, ଯେଉଁଥିରେ ଏକ ହଜାର ଟଙ୍କା ପୁରସ୍କାର

ମିଳିବ ବୋଲି ଖବରକାଗଜରୁ ସେ ଜାଣିବାକୁ ପାଇଲେ । ଜେଜେଙ୍କଠାରୁ ଏ ଖବର ଶୁଣିବା ପରେ ସେ ଅଳ୍ପଦିନ ମଧ୍ୟରେ ଶହେ ସାତ ପୃଷ୍ଠାର ଏକ ନାଟକ ଲେଖି ପ୍ରତିଯୋଗିତାକୁ ପଠାଇଥିଲେ । ସେହି ପ୍ରତିଯୋଗିତାରେ ଲାଲା ନଗେନ୍ଦ୍ର କୁମାର ରାୟଙ୍କର 'କଳିଙ୍ଗ ବିଜୟ' ନାଟକ ପୁରସ୍କୃତ ହୋଇଥିଲା । ପରବର୍ତ୍ତୀ କାଳରେ ସେହି ପାଣ୍ଡୁଲିପିଟି ପରିବର୍ତ୍ତିତ ତଥା ପରିବର୍ଦ୍ଧିତ ହୋଇ 'ଫେରିଆ' ନାଟକର ରୂପ ନେଇଥିଲା । ୧୯୪୬ ବେଳକୁ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଆରମ୍ଭ ହୋଇଥାଏ । ସାମୁଏଲ ସାହୁ(ବାବି)ଙ୍କ ସହିତ ଗୋପାଳ ବାବୁଙ୍କର ପୂର୍ବରୁ ପରିଚୟ ଥିଲା । ତେଣୁ ୧୯୪୬ ଅଗଷ୍ଟ ମାସ ଏଗାର ତାରିଖରେ 'ଫେରିଆ' ତାଙ୍କର ପ୍ରଥମ ମଞ୍ଚନାଟକ ଭାବରେ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଦ୍ୱାରା ଅଭିନୀତ ହୋଇଥିଲା । 'ଡଗର' ପତ୍ରିକାରେ ସ୍ୱର୍ଗତ ପର୍ଶୁରାମ ପଟ୍ଟନାୟକ ଏହି ନାଟକ ସମ୍ପର୍କରେ ଏକ ମର୍ମସ୍ପର୍ଶୀ ଆଲୋଚନା ଲେଖିଥିଲେ । 'ଫେରିଆ' ମଞ୍ଚରେ ଖୁବ୍ ସଫଳ ହୋଇଥିଲା ଓ ରଙ୍ଗମଞ୍ଚ କର୍ତ୍ତୃପକ୍ଷ ସେତେବେଳେ ବହୁତ ଅର୍ଥ ଉପାର୍ଜନ କରିଥିଲେ ।

## ତତ୍କାଳୀନ ମଞ୍ଚ ପରିବେଶ

ଗୋପାଳ ଛୋଟରାୟ ନାଟକ ଆରମ୍ଭ କରିବା ସମୟରେ ଓଡ଼ିଶାରେ ଅଶ୍ୱିନୀ କୁମାର ଘୋଷ, କାଳୀଚରଣ ପଟ୍ଟନାୟକ ପ୍ରଭୃତି ଖ୍ୟାତିର ଶୀର୍ଷରେ ଅଧିଷ୍ଠିତ ଥିଲେ । ବଲଙ୍ଗା ଆର୍ଟ ଥିଏଟର୍ସ, କଟକର ମେଡ଼ିକାଲ୍ ସ୍କୁଲ ଓ ରେଭେନ୍ସା କଲେଜର ନାଟ୍ୟସଂସଦର ଅଭିନୀତ ନାଟକମାନ ଗୋପାଳ ବାବୁ ଦେଖିବାର ସୁଯୋଗ ପାଇଥିଲେ । ଔପନ୍ୟାସିକ କାହ୍ନୁଚରଣଙ୍କର 'ନିଷ୍କୃତି' ଉପନ୍ୟାସ ପାଠ କରିବା ପରେ ସେ ତା'ର ନାଟ୍ୟରୂପ ପ୍ରସ୍ତୁତ କରିବାକୁ ପ୍ରୟାସ କରିଥିଲେ । ଅଶ୍ୱିନୀ କୁମାରଙ୍କର 'ସେଓଜୀ' ନାଟକଟି ସେ ପାଠ କରିଥିଲେ । କାଳିନ୍ଦୀ ପାଣିଗ୍ରାହୀ ମଧ୍ୟ କବି ଓ ନାଟ୍ୟକାର ଭାବରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥାନ୍ତି । କାଳୀବାବୁଙ୍କ ପ୍ରତିଷ୍ଠିତ 'ଓଡ଼ିଶା ଥିଏଟର୍ସ' ଓଡ଼ିଶାରେ ନାଟକ ଅଭିନୟ କ୍ଷେତ୍ରରେ ବିପ୍ଳବ ସୃଷ୍ଟି କରିଥାଏ । ଉଚ୍ଚକୋଟିର ନାଟକ ତଥା ଅଭିନୟ ନିମିତ୍ତ ଓଡ଼ିଶା ଥିଏଟର୍ସ ଯଥେଷ୍ଟ ସୁନାମ ଅର୍ଜନ କରିଥାଏ । ଅନ୍ନପୂର୍ଣ୍ଣା ଏ ଓ ବି ଗ୍ରୁପ୍ ମଧ୍ୟ ନାଟକ ଅଭିନୟରେ ଯଥେଷ୍ଟ ପାରଦର୍ଶିତା ଲାଭ କରିଥାଆନ୍ତି । ଅନ୍ନପୂର୍ଣ୍ଣା ଏ ଗ୍ରୁପ୍ ଦ୍ୱାରା ଗୋପାଳ ବାବୁଙ୍କର ପ୍ରଥମ ନାଟକ 'ସହଧର୍ମିଣୀ' ମଞ୍ଚସ୍ଥ ହୋଇଥିଲା । ପରେ ଗୋପାଳ ଛୋଟରାୟ 'ଭାରତୀ ଥିଏଟର୍ସ' ନାମକ ନବଗଠିତ ନାଟ୍ୟସଂସ୍ଥା ସହିତ ଜଡ଼ିତ ହୋଇଥିଲେ । ଗୋଟିଏ କଥାରେ କହିଲେ, ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ସହରରେ ଏକାଧିକ ରଙ୍ଗମଞ୍ଚରେ ପ୍ରତ୍ୟହ ନାଟକ ଅଭିନୀତ ହେଉଥିଲା । ଆହୁରି ରଙ୍ଗମଞ୍ଚ ନୂଆ କରି ଗଢ଼ି ଉଠିବାର ସୁଯୋଗ ମଧ୍ୟ ରହିଥିଲା । ତେଣୁ ନୂତନ ନାଟ୍ୟକାରମାନେ ମଞ୍ଚର ଆବଶ୍ୟକତା ବୁଝି ନାଟକମାନ ରଚନା କରୁଥିଲେ ।

ଗୋପାଳ ଛୋଟରାୟ ନାଟକ ରଚନା ଆରମ୍ଭ କରିବା ସମୟରେ ଅନ୍ୟ ଯେଉଁମାନେ ନାଟକ ରଚନା କରୁଥିଲେ ସେମାନେ ହେଲେ- ଭଞ୍ଜକିଶୋର ପଟ୍ଟନାୟକ, ଉଦୟନାଥ ମିଶ୍ର, ନରସିଂହ ମହାପାତ୍ର, ଅଦ୍ୱୈତଚନ୍ଦ୍ର ମହାନ୍ତି, ରାଜକିଶୋର ରାୟ ପ୍ରଭୃତି । ସେ ସମୟରେ

ରଙ୍ଗମଞ୍ଚର ଆବଶ୍ୟକତାକୁ ଆଖି ଆଗରେ ରଖି ନାଟକମାନ ରଚିତ ହେଉଥିଲା । ସମସାମୟିକ ସାମାଜିକ ସମସ୍ୟାଗୁଡ଼ିକ ଏମାନଙ୍କ ଲେଖନୀରେ ରୂପାୟିତ ହେଉଥିଲା । ପାରମ୍ପରିକ ପାରିବାରିକ ଜୀବନ, ସମାଜରେ କୁସଂସ୍କାର ଓ ଅନ୍ଧବିଶ୍ୱାସ, ଜାତିଭେଦ, ଯୌତୁକପ୍ରଥା, ଭୂମିକୈନ୍ଦ୍ରିକ ରାଜନୀତି, ନବପ୍ରତିଷ୍ଠିତ ନାନାଦି ଯୋଜନା ଓ ତା'ର ପରିଣତିରେ ସୁବିଧାବାଦୀ ଶ୍ରେଣୀର ସୃଷ୍ଟି ପ୍ରଭୃତି ବିଷୟ ଏମାନେ ନାଟକ ମାଧ୍ୟମରେ ରୂପାୟିତ କଲେ । ସବୁଠାରୁ ଉଜ୍ଜ୍ୱଳ ଦିଗଟି ହେଲା ଗାନ୍ଧୀ ଆଦର୍ଶ ତଥା ମୂଲ୍ୟବୋଧ ପ୍ରତି ସେମାନଙ୍କର ନିଷ୍ଠା ଓ ମଣିଷର ପରିବର୍ତ୍ତନ ଉପରେ ଦୃଢ଼ ବିଶ୍ୱାସ । ହାସ୍ୟରସକୁ ମଧ୍ୟ ନାଟକରେ ବେଶ୍ ଗୁରୁତ୍ୱ ଦିଆଯାଇଥିଲା । ସାଂପ୍ରଦାୟିକତା ସହିତ ଯୌତୁକପ୍ରଥା, ବେକାର ସମସ୍ୟା ଓ ବର୍ଣ୍ଣବୈଷମ୍ୟ ମନୁଷ୍ୟର ସ୍ଥିତିକୁ ଯେଭଳି ବିଡ଼ମ୍ବିତ କରିଦେଇଥିଲା ତା'ର ସ୍ୱର ଏହି ସମୟର ନାଟକରେ ଫୁଟି ଉଠିଥିଲା ।

୧୯୪୨ରେ ଗୋପାଳ ଛୋଟରାୟଙ୍କର ପ୍ରଥମ ନାଟକ 'ସହଧର୍ମିଣୀ' ରଚିତ ହୁଏ । ଏହି ସମୟ ହେଉଛି 'ଭାରତ ଛାଡ଼' ଆନ୍ଦୋଳନର ସମୟ । ଗୋଟିଏ ଦିଗରେ ଭାରତର ସ୍ୱାଧୀନତା ଯେ ଆସନ୍ନ ଏପରି ଏକ ଭାବନା ଜନମାନସରେ ଦାନା ବାନ୍ଧୁଥାଏ ଓ ଅନ୍ୟ ଦିଗରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ସମସ୍ତ ପାରମ୍ପରିକ ମୂଲ୍ୟବୋଧକୁ ବିପର୍ଯ୍ୟସ୍ତ କରିଦେଉଥାଏ । ଏକ ପରିଚ୍ଛନ୍ନ ଭାରତର ଛବି କ୍ରମେ ସୃଷ୍ଟି ହେଉଥିବା ବେଳେ ବ୍ୟକ୍ତିସ୍ୱାତନ୍ତ୍ର୍ୟର ବ୍ୟାପାର ଜୀବନର ନୂତନ ଦିଗନ୍ତ ସମ୍ପର୍କରେ ଧାରଣା ମଧ୍ୟ ଦେଉଥାଏ । ଗୋପାଳ ଛୋଟରାୟଙ୍କ ନାଟକଗୁଡ଼ିକରେ ଆମେ 'ସୁ' ଓ 'କୁ'ର ଦ୍ୱନ୍ଦ୍ୱ ଦେଖୁ । 'ସୁ' ନିଷ୍ପ୍ରଭ ହୋଇପଡ଼େ ମାତ୍ର ଲିଭିଯାଇପାରେନାହିଁ । ଠିକ୍ ଏହିଭଳି ସମୟରେ ବିଶ୍ୱନାଟକ ସହିତ ଓଡ଼ିଶାର ନାଟ୍ୟଜଗତର ପରିଚିତି ଆରମ୍ଭ ହୁଏ । ୧୯୫୦ ବେଳକୁ 'ଆଗାମୀ' ରଚନା ହୋଇ ମନସ୍ତତ୍ତ୍ୱ ଓ ରାଜନୀତିର ତିଳ ତଣ୍ଡୁଳିତ ରୂପ ଦର୍ଶକ ଆଗରେ ତୋଳିଧରେ ସତ, ମାତ୍ର ୧୯୬୮ ପର୍ଯ୍ୟନ୍ତ ଏହି ଧାରାର ଆଉ କୌଣସି ନାଟକ ଆମେ ଦେଖୁନାହିଁ । ବରଂ ଏହି ସମୟରେ ଗୋପାଳ ଛୋଟରାୟ ଯେଉଁଭଳି ରାଜନୀତି, ସମାଜନୀତି ତଥା ବ୍ୟକ୍ତିସ୍ୱାତନ୍ତ୍ର୍ୟର ଚିତ୍ର ଆଙ୍କିଛନ୍ତି ସେଗୁଡ଼ିକ ଦର୍ଶକଙ୍କ ଆଗ୍ରହ ଧରି ରଖିପାରିଛି । ଏପରିକି ଗୀତିନାଟକର ଯେଉଁ ଲୋକପ୍ରିୟ ଧାରା କ୍ରମେ ଜନମାନସରୁ ବିଚ୍ଛିନ୍ନ ହୋଇଯାଇଥିଲା ତାହାକୁ ଗୋପାଳ ବାବୁ ପୁନର୍ବାର ଜୀବନ୍ୟାସ ଦେଇଛନ୍ତି ଓ ସେହିଧାରାକୁ ମଧ୍ୟ ପରୀକ୍ଷାଧର୍ମୀ ନାଟକ ରଚନା କରୁଥିବା ନାଟ୍ୟକାରମାନେ ନିଜର ବକ୍ତବ୍ୟ ପ୍ରକାଶ ପାଇଁ ଗ୍ରହଣ କରିନେଇଛନ୍ତି ।

ଗୋପାଳ ଛୋଟରାୟ ମଞ୍ଚନାଟକ ରଚନା ସହିତ ଅନ୍ୟ ଯେଉଁ ନୂତନ ଧାରାର ନାଟକ ରଚନା କରିଛନ୍ତି ତାହା ହେଉଛି ବେତାର ନାଟକ । ନବପ୍ରତିଷ୍ଠିତ ଆକାଶବାଣୀ ପାଇଁ ନାଟକ ରଚନା ତାଙ୍କ ନାଟ୍ୟକାର ଜୀବନର ଉଜ୍ଜ୍ୱଳ ଦିଗକୁ ଉନ୍ମୋଚିତ କରଛି ।

## ଆକାଶବାଣୀ ପ୍ରତିଷ୍ଠା

୧୯୪୮ ଜାନୁୟାରୀ ୨୮ ତାରିଖରେ କଟକରେ ଆକାଶବାଣୀ କେନ୍ଦ୍ର ସ୍ଥାପିତ ହୁଏ । ଏହି କେନ୍ଦ୍ରରୁ ପ୍ରଥମ ଦିନ 'ଉତ୍କଳଶ୍ରୀ' ନାମକ ରୂପକ ପ୍ରସାରିତ ହୋଇ ଶ୍ରୋତାମାନଙ୍କର

ଆଗ୍ରହ ଓ ବିଶ୍ୱାସକୁ ଧରି ରଖିବାର ସାମର୍ଥ୍ୟ ହାସଲ କରେ। 'ଆକାଶବାଣୀ' କେନ୍ଦ୍ର ପାଇଁ ବିଭିନ୍ନ ସମୟରେ ନାଟକର ଅବଶ୍ୟକତା ଅନୁଭୂତ ହୁଏ। ସପ୍ତାହର ଗୋଟିଏ ଦିନ ସୋମବାରରେ ଆକାଶବାଣୀ କେନ୍ଦ୍ରରୁ ନାଟକଟିଏ ପ୍ରସାରିତ ହୁଏ, କାରଣ ସେହିଦିନ କଟକରେ ରଙ୍ଗମଞ୍ଚ ବନ୍ଦ ରହେ। କଳାକାରମାନେ ଆକାଶବାଣୀରେ ପରିବେଷିତ ନାଟକରେ କଣ୍ଠଦାନ ତଥା ଅଭିନୟ କରିଥାଆନ୍ତି। ପୂର୍ବରୁ ରେକର୍ଡ଼ିଂର ସୁବିଧା ନ ଥିବା ପର୍ଯ୍ୟନ୍ତ ଏହି ରୀତି ଅନୁସୃତ ହେଉଥିଲା। ଫଳରେ ଶ୍ରୋତାମାନେ ନିଜ ନିଜର ପ୍ରିୟ କଳାକାରମାନଙ୍କ କଣ୍ଠସ୍ୱର ଶୁଣି ମୁଗ୍ଧ ହେଉଥିଲେ ଓ ପରିଚିତ ମଧ୍ୟ ହେଉଥିଲେ।

ନରସିଂହ ମହାପାତ୍ର, ସାମୁଏଲ ନାୟକ, ନୟନକିଶୋର ମହାନ୍ତି, ପର୍ଶୁରାମ ପଟ୍ଟନାୟକ, ନନ୍ଦୀୟା ବିହାରୀ ମହାନ୍ତି, ବୀଣା ଦେବୀ ଓ ସରଳା ଦେବୀଙ୍କ ଭଳି ନାଟ୍ୟକାରମାନେ ଆକାଶବାଣୀ ପାଇଁ ନାଟକ ଲେଖି ନିଜ ନିଜର ପରିଚିତି ସୃଷ୍ଟି କରିଥିଲେ। ରେଡ଼ିଓ ନାଟକ ରଚନା ଅପେକ୍ଷାକୃତ ସୁବିଧାଜନକ। କାରଣ ସେଥିରେ ମଞ୍ଚପ୍ରସ୍ତୁତି ବା ସାଜସଜ୍ଜା ଲୋଡ଼ା ହୁଏନାହିଁ। ବହୁ ସାହିତ୍ୟିକ ସଂଳାପ ଓ ଦୀର୍ଘ ସଂଳାପ ଏଥିରେ ସହଜରେ ସ୍ଥାନିତ ହୋଇପାରେ। ଯେଉଁ ଦୃଶ୍ୟଗୁଡ଼ିକ ମଞ୍ଚରେ ପରିବେଷଣ କରିବା କଷ୍ଟସାଧ୍ୟ ସେଗୁଡ଼ିକ ସହଜରେ ଆକାଶବାଣୀରେ ପରିବେଷିତ ହୁଏ। ପୁଣି ଦୃଶ୍ୟରୁ ଦୃଶ୍ୟାନ୍ତରକୁ ଯିବା ମଧ୍ୟ ଏଥିରେ ସହଜସାଧ୍ୟ। ସାଧାରଣ ମଣିଷ ସହିତ ଏଥିରେ ପଶୁପକ୍ଷୀ, ଭୂତପ୍ରେତ, ଈଶ୍ୱର ତଥା ଅନ୍ୟ ଅଶରୀରୀମାନେ ମଧ୍ୟ ଅଭିନୟ କରିଥାଆନ୍ତି। ପ୍ରଯୋଜନା ନିମିତ୍ତ ରେଡ଼ିଓ ନାଟକରେ ମଞ୍ଚନାଟକ ଭଳି ବିଶେଷ ଅସୁବିଧା ହୁଏ ନାହିଁ। ତେଣୁ ରେଡ଼ିଓ ଷ୍ଟେସନ ଆରମ୍ଭ ହେବା ପରେ ଅନେକ ନାଟ୍ୟକାର ରେଡ଼ିଓ ପାଇଁ ନାଟକ ଲେଖିଛନ୍ତି। ଗୋପାଳ ଛୋଟରାୟ ମଧ୍ୟ ମଞ୍ଚନାଟ୍ୟକାର ଭାବରେ ଜୀବନ ଆରମ୍ଭ କରି ପରବର୍ତ୍ତୀ କାଳରେ ରେଡ଼ିଓ ନାଟକ ଲେଖି ଖ୍ୟାତିର ଶିଖର ସ୍ପର୍ଶ କରିଛନ୍ତି। ତାଙ୍କର ଲେଖକ ଜୀବନ ଆକାଶବାଣୀକୁ ନେଇ ପରିପୁଷ୍ଟ ହୋଇଛି ଓ ଆକାଶବାଣୀ ଗୋପାଳ ଛୋଟରାୟଙ୍କ ପ୍ରତିଭା ଦ୍ୱାରା ବହୁ ଭାବରେ ଋଦ୍ଧିମନ୍ତ ହୋଇଛି।

# ନାଟ୍ୟସ୍ରଷ୍ଟା ଗୋପାଳ ଛୋଟରାୟ - କୃତିସମୂହ

ଗୋପାଳ ଛୋଟରାୟ ଆଜୀବନ ସାହିତ୍ୟ ସାଧକ। ସେ ମଞ୍ଚନାଟକ ଲେଖିଛନ୍ତି। ବେତାର ନାଟକ ଲେଖିଛନ୍ତି। ବେତାର ରୂପକ, ଧାରାବାହିକ, ପୌରାଣିକ ନାଟକ, ଗୀତିନାଟ୍ୟ, ଏକପାତ୍ରୀ ନାଟକ ଲେଖିଛନ୍ତି। ଏଥିସହିତ ସେ ବହୁ କାଳଜୟୀ ଉପନ୍ୟାସର ନାଟ୍ୟରୂପ ପ୍ରସ୍ତୁତ କରିଛନ୍ତି ଓ ପ୍ରାଚୀନ ଗୀତିନାଟକର ପୁନରୁଦ୍ଧାର କରି ଲୋକପ୍ରିୟ କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି। ହାସ୍ୟ‌ ୍ମକ ନାଟକ ରଚନାରେ ତାଙ୍କର ସିଦ୍ଧି ଯଥେଷ୍ଟ। ସେ ଗଳ୍ପ ମଧ୍ୟ ଲେଖିଛନ୍ତି। ତାଙ୍କର ଆତ୍ମଜୀବନୀର ନାମ ସେ ରଖିଛନ୍ତି 'ପଥିକ'। ଏତଦ୍‌ବ୍ୟତୀତ ସେ ଏକାଧିକ ଦୂରଦର୍ଶନ ନାଟକ ତଥା ସିନେମା ସ୍କ୍ରିପ୍ଟ ମଧ୍ୟ ଲେଖିଛନ୍ତି। କିନ୍ତୁ ଓଡ଼ିଶାରେ ସେ ନାଟ୍ୟକାର ଭାବରେ ହିଁ ପ୍ରତିଷ୍ଠିତ। ସେ ହିଁ ଏକମାତ୍ର ନାଟ୍ୟକାର ଯାହାକୁ ଗାଁ ଠାରୁ ସହର ଧନୀ ଗରିବ, ଶିକ୍ଷିତ ଅଶିକ୍ଷିତ ସମସ୍ତେ ସମ୍ମାନ କରନ୍ତି ଓ ତାଙ୍କ ନାଟକ ଦେଖିବାକୁ\ ଶୁଣିବାକୁ ଅପେକ୍ଷା କରି ରହନ୍ତି। ତାଙ୍କର କୃତିଗୁଡ଼ିକ ଆମେ ନିମ୍ନମତେ ବିଭାଜନ କରିପାରିବା।

ମଞ୍ଚ ନାଟକ: ସହଧର୍ମିଣୀ(୧୯୪୨), ଫେରିଆ(୧୯୪୬), ଅର୍ଦ୍ଧାଙ୍ଗିନୀ(୧୯୫୦), ଭରସା(୧୯୫୩), ପରକଲମ(୧୯୫୪), ପଦ୍ମାଳୟ, ଶଙ୍ଖାସିନ୍ଦୂର(୧୯୫୫), ନଷ୍ଟ ଉର୍ବଶୀ(୧୯୫୬), ପଥିକବନ୍ଧୁ(୧୯୫୮), ଅଭାଗିନୀର ସ୍ୱର୍ଗ(୧୯୬୧), ଘଟକ (୧୯୬୧), ସାଧନା(୧୯୬୪), ଦଳବେହେରା(୧୯୬୬)।

ବେତାର ନାଟକ: ବେତାର ନାଟକ ଗୋପାଳ ଛୋଟରାୟଙ୍କର ଯଥାର୍ଥ ପରିଚୟ ବହନ କରେ। ସେଗୁଡ଼ିକୁ ଆଲୋଚନାର ସୁବିଧା ଦୃଷ୍ଟିରୁ ବିଭିନ୍ନ ବିଭାଗରେ ବିଭକ୍ତ କରାଗଲା।

୧) ସାମାଜିକ ନାଟକ - କ) ବାନ୍ଧବୀ, ସଂଗ୍ରାମ, ସଂଗ୍ରାମ ଓ ଶାନ୍ତି, ସାମଲ ଝୁଅ, ଭାଙ୍ଗିଯାଏ କ୍ଷୁଦ୍ର ପରିବେଶ, ଆଉ କେତେଦିନ, ଛାୟା, ଦିଗନ୍ତ, ଗାଁ ପରିମଳ, ଯଦି ହୁଏତ କିନ୍ତୁ, ଯାତ୍ରାମଙ୍ଗଳ, ପାରିବାରିକ, ସାଗରମନ୍ଥନ, ଭସ୍ମାଚ୍ଛାଦିତ ବହ୍ନି, ସୈନିକ, ବସୁନ୍ଧରା, ଶୋଭା, ଚାରି ବୋହୂ, ଅଶୋକାଷ୍ଟମୀ, ଅନାଗତ, ଚୋରା ଚଇତ, ଚକ୍ର, ସୀମା, ଅଭିଳାଷ, ଗୃହରକ୍ଷୀ, ଭୁଲ୍ କାହାର, ଶେଷ ପର୍ଯ୍ୟନ୍ତ, ମୋତି ମହଲ, ପାହାଚ, ଉତ୍ତରା, ଦ୍ୱିଧାରା, ସେବା, ଅପେକ୍ଷା, ଦୃଷ୍ଟିପାତ, ଦରିଦ୍ର ନାରାୟଣ।

ଖ) ହାସ୍ୟରସାତ୍ମକ ନାଟକ - ବେଣୀବନ୍ଧନୀ, ତଥାପି, ବିଶେଷ ଦ୍ରଷ୍ଟବ୍ୟ, ନାମ ମାହାତ୍ମ୍ୟ, ପ୍ରଜାପତି ନିର୍ବନ୍ଧ ଅଫିସ, ବଦଳି, କରୁଣାନିଧି, ଭୃତ୍ୟରାଜ ବସନ୍ତ, ବାଜି, ଅଥ ନାସିକା ସମ୍ବାଦ, ନରି ଭାଇ, ଦିନ ଦଶଟାବେଳେ ଘରେ।

ଗ) ନାରୀ ଚରିତ୍ର ପ୍ରଧାନ ନାଟକ - ଭାନୁମତୀ, ବଉଳ, ଲକ୍ଷ୍ମୀ, ଶତରଞ୍ଜି, ଭସାମେଘ, ଜର୍ମାନଛୁଞ୍ଚି, 'ଶାଖା ପ୍ରଶାଖା' ସଂକଳନର ନାଟକ ସମୂହ।

ଘ) ଶିଶୁ ନାଟିକା - ବଣ ଜଙ୍ଗଲର ବନ୍ଧୁ, ବାପପୁଅ, ଫୁଟବଲ୍-ଭଲିବଲ, ଛେନାପୋଡ଼ ପିଠା, ବନ୍ଧୁକ ଗଲା ଯୁଦ୍ଧକୁ, ବୋକା ରଜା - ବୋକା ମନ୍ତ୍ରୀ, ମହୁମାଛି।

୨) ଐତିହାସିକ ନାଟକ - ସମ୍ରାଟ ନନ୍ଦିନୀ ଜାହାନ୍ନାରା, ଅଠରଶ ସତାବନ, ରାଣୀ ରୂପମତୀ, ମଣି ବେଗମ୍, ମୀରା ବାଈ, ରାଜରାଣୀ ମୀରା, ଜୈତ୍ରମଣି, ନନ୍ଦିକା, ପାଇକ ବିଦ୍ରୋହ, ଦଳବେହେରା, ହର୍ଷବର୍ଦ୍ଧନ, ନନ୍ଦକୁମାର ଫାଶୀ।

୩) ପୌରାଣିକ ନାଟକ - ସେତୁବନ୍ଧ, ରାମ-ରାବଣ, ପ୍ରଜାନୁରଞ୍ଜନ, ଅନ୍ତିମ ଦର୍ଶନ, ତାରା, ଭୀଷ୍ମ, ଗାନ୍ଧାରୀ, ଗାନ୍ଧାରୀଙ୍କ ଆଶୀର୍ବାଦ, ହସ୍ତିନା ପୁରୀ, ଉରୁଭଙ୍ଗ, ନଚିକେତା, ଅଶ୍ୱପରୀକ୍ଷା, ଭୀଷ୍ମପ୍ରତିଜ୍ଞା, ଶୈଳସୁତା, ଦଶଭୁଜା, ଦେବୀ ଓ ଦାନବ, ସତୀ, ନୃସିଂହନାଥ, ହଂସଦୂତ, ଉର୍ବଶୀ, ଶ୍ରୀଗୁଣ୍ଡିଚା।

୪) ଧାରାବାହିକ - ପୂରାପୂରି ପାରିବାରିକ (୩୩ଟି ଚିତ୍ର), ବିଭ୍ରାଟ (୧୨ଟି ଚିତ୍ର), ଗାଁ ପରିମଳ (୯ଟି ଚିତ୍ର), ଶୁକଉବାଚ (୬ଟି ଚିତ୍ର), ଡାକ୍ତର ବାବୁ (୧୨ ଚିତ୍ର), ଅବସର ଗ୍ରହଣ ପରେ (୧୨ ଚିତ୍ର), ବହୁରୂପୀ (୬ଟି ଚିତ୍ର), ଶ୍ରୀହରିଙ୍କ ସଂସାର (୧୮ଟି ଚିତ୍ର), ଦୃଷ୍ଟିପାତ (୬ଟି ଚିତ୍ର), ଏମିତି ହୁଏ ନାହିଁ (୮ଟି ଚିତ୍ର)

୫) ଗୀତିନାଟ୍ୟ -

କ) ପୌରାଣିକ - ଶ୍ରୀଗଣେଶ, ଜନ୍ମାଷ୍ଟମୀ, ମହିଷାମର୍ଦ୍ଦିନୀ, ରାମାୟଣ, ବିନ୍ଦୁସାଗର

ଖ) କିମ୍ବଦନ୍ତୀ - ନ ପାହୁ ରାତି ନ ମରୁ ପତି, ବୋଲେ ହୁଁଟି

ଗ) ହାସ୍ୟରସାତ୍ମକ - ଶ୍ରୀମତୀ ସମାର୍ଜନୀ (ମୂଳଗଳ୍ପ : ପେଟେଣ୍ଟ ମେଡିସିନ-ଫକୀରମୋହନ)।

୬) ରୂପକ - ବିଷରୁ ଅମୃତ (ତାଳଗୁଡ଼), ଅପରାଜେୟ, ସ୍ମରଣିକା (ମହାତ୍ମା ଗାନ୍ଧୀ), ଓଡ଼ିଶାର ଯାତ୍ରା ୧ମ / ୨ୟ, ଗଣକବି ବୈଷ୍ଣବ ପାଣି, ପଣ୍ଡିତ ନୀଳକଣ୍ଠ, ଡାକା ପଉନ, ଚାରଣବାଣୀ, ଜାତିର ଆହ୍ୱାନ, ଦରିଦ୍ର ନାରାୟଣ, ସେମାନେ ଓ ଆମେ।

୭) ରୂପାନ୍ତର -

କ) ଉପନ୍ୟାସ - ଛମାଣ ଆଠଗୁଣ୍ଠ ଓ ମାମୁ (ଫକୀରମୋହନ), ମଲାଜହ୍ନ (ଉପେନ୍ଦ୍ର କିଶୋର), ଝଞ୍ଜା ଓ କା' (କାହ୍ନୁଚରଣ), ହରିଜନ ଓ ପରଜା (ଗୋପୀନାଥ ମହାନ୍ତି), ଅମଡ଼ାବାଟ (ବସନ୍ତ କୁମାରୀ ପଟ୍ଟନାୟକ), ପ୍ରତିଭା (ହରେକୃଷ୍ଣ ମହତାବ), ବଧୂ ନିରୁପମା (ବିଭୂତି ପଟ୍ଟନାୟକ), ମୁକ୍ତାଗଡ଼ର କ୍ଷୁଧା (କାଳିନ୍ଦୀ ଚରଣ ପାଣିଗ୍ରାହୀ)

ଖ) ଗଳ୍ପ - ପେଟେଣ୍ଟ ମେଡିସିନ ଓ ଧୂଳିଆବାବା (ଫକୀରମୋହନ), ବସୁନ୍ଧରା, ନାରୀ ଓ ନିକିତି (ମନୋରମା ମହାପାତ୍ର), ଧାତବ ସନ୍ତୋଷ ଯାତ୍ରା (ଚୌଧୁରୀ ହେମକାନ୍ତ ମିଶ୍ର)

ଗ) ଗୀତିନାଟ୍ୟ - ବୈଷ୍ଣବ ପାଣିଙ୍କ 'ରଙ୍ଗସଭା', 'କର୍ଣ୍ଣବଧ', 'ଦକ୍ଷଯଜ୍ଞ', 'ପ୍ରହ୍ଲାଦ' ଓ 'ହରିଶ୍ଚନ୍ଦ୍ର'। ବାଳକୃଷ୍ଣ ମହାନ୍ତିଙ୍କ 'ସୁଶୀଳ ମାଳତୀ', 'ବାଣା ପରାଜୟ' ଓ 'ଅମର ବିଳାସ', ବାବାଜୀ ବୈଷ୍ଣବ ଚରଣ ଦାସଙ୍କ 'ମାନଭଞ୍ଜନ', ଗଙ୍ଗାଧର ମେହେରଙ୍କ 'ତପସ୍ୱିନୀ'

ଘ) ଅନ୍ୟ ଭାଷାରୁ ରୂପାନ୍ତର - ଶରତଚନ୍ଦ୍ରଙ୍କ 'ରାମେର ସୁମତି' - 'ନୂଆବୋଉ'

ଙ) ଅନ୍ୟାନ୍ୟ - ଗୋପାଳ ପ୍ରହରାଜଙ୍କର ଭାଗବତ ଟୁଙ୍ଗିରେ ସନ୍ଧ୍ୟା

ତାଙ୍କର ପ୍ରଥମ ବେତାର ନାଟକ 'ସମ୍ରାଟ ନନ୍ଦିନୀ ଜାହାନ୍ନାରା' ଆକାଶବାଣୀ କଟକ ଆନୁକୂଲ୍ୟରେ ୧୯୪୯ ଜୁନ୍ ମାସ ୬ ତାରିଖରେ ପ୍ରସାରିତ ହୋଇଥିଲା । ଏହା ପୂର୍ବରୁ ଗୋପାଳ ବାବୁଙ୍କର ମଞ୍ଚନାଟକ ରଚନାରେ ଆଗ୍ରହ ଥିଲା ଓ 'ଫେରିଆ' ଅଭିନୀତ ହେବା ପରେ ତାଙ୍କର ସ୍ଥିତି ମଧ୍ୟ ଓଡ଼ିଶାର ରଙ୍ଗମଞ୍ଚରେ ସୁଦୃଢ଼ ହୋଇଯାଇଥିଲା । ଆକାଶବାଣୀରେ ସେ ଯୋଗ ଦେଲେ ୧୯୪୯ ମସିହା ଜୁନ୍ ମାସ ୧୫ ତାରିଖରେ । ତା' ପୂର୍ବରୁ ସେ ଦୀର୍ଘ ସାତବର୍ଷ ବେତାର ନାଟକ ମଧ୍ୟ ରଚନା କରିଥିଲେ ।

## ନାଟ୍ୟକାର ଗୋପାଳ ଛୋଟରାୟ

ଗୋପାଳ ଛୋଟରାୟଙ୍କର ପ୍ରଥମ ନାଟକ 'ସହଧର୍ମିଣୀ' ବିଷୟ ପୂର୍ବରୁ ଆଲୋଚିତ ହୋଇଛି । ଏହି ନାଟକ ରଚନା ପରେ ଗୋପାଳ ବାବୁଙ୍କର ଆତ୍ମବିଶ୍ୱାସ ବୃଦ୍ଧି ପାଇଥିଲା । ୧୯୪୬ରେ ତାଙ୍କର ନାଟକ 'ଫେରିଆ' ମଞ୍ଚସ୍ଥ ହୁଏ । 'ଫେରିଆ' ମହାତ୍ମା ଗାନ୍ଧୀଙ୍କ 'Back to village' ଆହ୍ୱାନରେ ରଚିତ । 'ଫେରିଆ'ର କାହାଣୀ ସଂଯତ, ମାର୍ଜିତ ତଥା ସମୟାନୁସାରୀ । 'ଫେରିଆ'ର ଦୃଷ୍ଟି ଓ ଦିଗ୍‌ବଳୟ' ପ୍ରବନ୍ଧରେ ଅଧ୍ୟାପକ ସୁବୋଧ କୁମାର ଚାଟାର୍ଜୀ କୁହନ୍ତି- ''ଫେରିଆ'ର ଶିଳ୍ପ-ସୌନ୍ଦର୍ଯ୍ୟ ତଥା ଜୀବନୀ ଶକ୍ତି ତାଙ୍କର ଅନ୍ୟ ନାଟକମାନଙ୍କଠାରୁ ମଧ୍ୟ ସ୍ୱାତନ୍ତ୍ର୍ୟ ଦାବୀ କରେ । ଛୋଟରାୟଙ୍କ 'ଫେରିଆ'ର ମନ୍ଦ୍ର ମଧୁର ସଂଳାପ ଶୈଳୀ ତତ୍କାଳୀନ ପ୍ରାୟ ସମସ୍ତ ନାଟ୍ୟରଥୀଙ୍କ ଭାଷାକୁ ପ୍ରତିହତ କରି ଏକ ଭିନ୍ନ ଦୃଷ୍ଟି ଏବଂ ଭିନ୍ନ ଦିଗ୍‌ବଳୟର ସର୍ଜନା କରିପାରିଛି ।''(୧)

ଏହି ନାଟକ ୧୯୪୬ ଅଗଷ୍ଟ ୧୧ ତାରିଖରେ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଦ୍ୱାରା ମଞ୍ଚସ୍ଥ ହୋଇଛି । ଗାନ୍ଧିବାଦୀ ଆଦର୍ଶ ନାଟକର ଗତି ନିୟନ୍ତ୍ରଣ କରିଛି । ସୁରେଶ ଉଚ୍ଚଶିକ୍ଷା ପାଇଁ ଗ୍ରାମଠାରୁ ଦୂରରେ ରହେ ଓ ସେଠାରେ ରେଖା ନାମ୍ନୀ ଝିଅ ସହିତ ପରିଚିତ ହୁଏ । ଗ୍ରାମରେ ଉନ୍ନତି ଆଣିବା ପାଇଁ ଅନେକ ସଙ୍ଗଠନ କ୍ରିୟାଶୀଳ ଥାଆନ୍ତି । ଗ୍ରାମୋନ୍ନତି ସଂଘର ସଂପାଦିକା ଶାନ୍ତି ସହରକୁ ଯିବାକୁ ଚାହେଁ ନାହିଁ । ରେଖା ପାଇଁ ସୁରେଶକୁ ସହରରେ ବଦ୍‌ନାମ ହେବାକୁ ପଡ଼େ । ସେ କଲେଜରୁ ବିତାଡ଼ିତ ହୋଇଛି । ଶେଷରେ ପ୍ରଫେସର ଦାସ, ଯିଏ କି ରେଖା ଓ ସୁରେଶକୁ ବଦ୍‌ନାମ କରିଥିଲେ, ତାଙ୍କର ଚକ୍ରାନ୍ତ ପଦାରେ ପଡ଼ି ଯାଇଛି । ସୁରେଶ କିନ୍ତୁ ଗ୍ରାମକୁ ଫେରି ଯିବାକୁ ଚାହିଁଛି, ଯେଉଁଠି ତାକୁ ଶାନ୍ତି ଅପେକ୍ଷା କରିବସିଛି । ସତେ ଯେପରି ଗ୍ରାମ ସଙ୍ଗଠନ ଓ ହଜାର ହଜାର ଅଶିକ୍ଷିତ ଜନତା ସୁରେଶର ଫେରିବା ବାଟକୁ ଅନାଇଁ ରହିଛନ୍ତି ।

---

(୧) ଗୋପାଳ ଛୋଟରାୟଙ୍କ ନାଟ୍ୟମାନସ- 'ଫେରିଆ'ର ଦୃଷ୍ଟି ଓ ଦିଗ୍‌ବଳୟ'- ସୁବୋଧ କୁମାର ଚାଟାର୍ଜୀ-ପୃ - ୭୧ ।

ଯେଉଁ ସମୟରେ 'ଫେରିଆ' ରଚିତ ହୋଇଛି ସେ ସମୟରେ ଗ୍ରାମସୁଧାର ପାଇଁ ଅନେକ ଶିକ୍ଷିତ ଯୁବକ ଚାକିରି ଛାଡ଼ି ଦେଶ ପାଇଁ ଆନ୍ଦୋଳନର ପଥ ବାଛି ନେଉଥିଲେ। ଗାନ୍ଧିବାଦୀ ଆଦର୍ଶକୁ ରୂପ ଦେବା ପାଇଁ ବ୍ରଜ ଚରିତ୍ର ମୁଖ୍ୟ ଭୂମିକା ଗ୍ରହଣ କରିଛି ଓ ସାମ୍ୟବାଦୀ ଚେତନା ବିଶ୍ୱନାଥ ଚରିତ୍ର ମାଧ୍ୟମରେ ପ୍ରତିଫଳିତ ହୋଇଛି। ରେଖା ଚରିତ୍ର ମନସ୍ତତ୍ତ୍ୱ ଉପରେ ନିର୍ଭର କରି ବ୍ୟକ୍ତିର ଅନ୍ତର୍ମନର ପ୍ରତିନିଧି ପାଲଟି ଯାଇଛି। ପ୍ରଫେସର ଦାସ ଏକ ପ୍ରଭାବଶାଳୀ ଚରିତ୍ର ଯାହାଙ୍କର ଚରିତ୍ରରେ ଖଳନାୟକର ଝଲକ ଦିଶିଥାଏ। ରଙ୍ଗାଧର ଓ କାଳୀଚରଣ ଚରିତ୍ର ଦ୍ୱୟ ହାସ୍ୟରସ ପରିବେଷଣରେ ଦକ୍ଷତା ପ୍ରତିପାଦନ କରିପାରିଛନ୍ତି। ରେଖାର ବାପା ରାୟବାହାଦୂର ପି. ଏନ୍. ମହାନ୍ତିଙ୍କ ଅହଂକାର ସମଗ୍ର ନାଟକରେ ଅନୁଭୂତ ହୁଏ।

ସୁରେଶ-ଶାନ୍ତି, ବ୍ରଜ ଓ କନକ, ପ୍ରଫେସର ଦାସ ଏବଂ ମୀରା - ଏଇ ତିନୋଟି ଯୋଡ଼ିଙ୍କୁ ନେଇ ଏହି ରୋମାଣ୍ଟିକ୍ କାହାଣୀ ଗତିଶୀଳ। ସୁରେଶ ଓ ଶାନ୍ତି ପରସ୍ପରକୁ ପ୍ରେମ କରନ୍ତି ମାତ୍ର ପ୍ରକାଶ କରିପାରନ୍ତିନାହିଁ। ବ୍ରଜ ଓ କନକଙ୍କ ଚାଲିଚଳଣି ଓ ହାବଭାବରେ ବାରମ୍ବାର ଅନ୍ୟମନସ୍କତା ଫୁଟି ଉଠିଛି। ପ୍ରଫେସର ଦାସଙ୍କର ରେଖା ସହିତ ବିଭାଘର ଠିକ୍ ହୋଇସାରିଥିଲେ ମଧ୍ୟ ସେ ମୀରାଙ୍କୁ ନିଜ କାମନା ଜାଲରେ ଛନ୍ଦିବାକୁ ଚାହିଁଛନ୍ତି। ତେଣୁ ନାଟକରେ ନାୟକ ନାୟିକାଙ୍କ ମାନସିକତାର ପରିପ୍ରକାଶ ପାଇଁ ସ୍ୱପ୍ନ ଦୃଶ୍ୟର ଅବତାରଣା ଘଟିଛି।

'ଫେରିଆ'ରେ ରଙ୍ଗାଧର ଓ କାଳୀଚରଣଙ୍କୁ ନେଇ ହାସ୍ୟରସ ସୃଷ୍ଟି ହୋଇଛି। ପ୍ରଫେସର ଦାସ ଓ ରେଖା ଚରିତ୍ର ମଧ୍ୟରେ ମଧ୍ୟ ହାସ୍ୟରସ ପରିବେଷିତ ହୋଇଛି। 'ଫେରିଆ'ରେ ଦ୍ୱନ୍ଦ୍ୱ ଓ ସଂଘାତ ବେଶ୍ ଉଚ୍ଚକୋଟିର। ରଙ୍ଗାଧର ସାମ୍ୟବାଦୀ ସଂଗଠକ ବିଶ୍ୱନାଥଙ୍କର ପ୍ରଥମେ ବିରୁଦ୍ଧାଚରଣ କରନ୍ତି ଓ ପରିଣତିରେ ନିଜର ତ୍ରୁଟି ବୁଝିପାରନ୍ତି। ମୀରା ଓ ପ୍ରଫେସର ଦାସଙ୍କର ନଗ୍ନଫଟୋ ଉଠାଇ ରଙ୍ଗାଧର ସଂଘର୍ଷର ଅନ୍ୟ ଏକ ଗ୍ରନ୍ଥି ଉନ୍ମୋଚନ କରନ୍ତି। ସୁରେଶ ପାଇଁ ପ୍ରଫେସର ଦାସ ଯେଉଁ ଜାଲ ବୁଣିଥିଲେ ସେ ଜାଲରେ ସେ ନିଜେ ପଡ଼ିଯାଇଛନ୍ତି। ପ୍ରଫେସର ଦାସ ଅକ୍ସଫୋର୍ଡ ୟୁନିଭରସିଟିରୁ ପାସ୍ କରି ଫେରିଛନ୍ତି। ତେଣୁ ଶ୍ଳାଘ୍ୟ ନ ହେଲେ ମଧ୍ୟ ସେ ନିଜର କାମନାକୁ ପ୍ରେମ ନାମରେ ଚଳାଇ ନେଇ ସମାଜ ଜୀବନରେ ବିଶୃଙ୍ଖଳା ସୃଷ୍ଟି କରିଛନ୍ତି। କିନ୍ତୁ ରେଖା ଓ ଶାନ୍ତି ଉଭୟଙ୍କର ପ୍ରେମ ଶାନ୍ତ ତଥା ସମାହିତ। ଏହି ନାଟକର ପରିଣତିରେ ସୁରେଶ ଓ ଶାନ୍ତିର ମିଳନ ଘଟିଛି।

ପ୍ରାଥମିକ ପର୍ଯ୍ୟାୟରେ ଗାନ୍ଧିବାଦ ଓ ସାମ୍ୟବାଦକୁ ନେଇ ସମାଜରେ ଯେଉଁ ଦ୍ୱନ୍ଦ୍ୱ ଦେଖା ଦେଇଥିଲା ତାହାର ସ୍ୱର- 'ଫେରିଆ'ରେ ସ୍ପଷ୍ଟ। ଗ୍ରାମ୍ୟ ଓ ନଗର ଜୀବନର ଜୀବନଧାରାରେ ଯେ କେତେ ତାରତମ୍ୟ ରହିଛି, ଏହା ମଧ୍ୟ ନାଟ୍ୟକାର ସଚେତନ ଭାବରେ ପରିବେଷଣ କରିଛନ୍ତି। ରୋମାଣ୍ଟିକ ପ୍ରେମକାହାଣୀ ବାସ୍ତବତାର ରୁକ୍ଷ ସ୍ପର୍ଶରେ ଲାଳିତ୍ୟ ହରାଇଛି ସତ ମାତ୍ର ପାଇଛି ଦୃଢ଼ତା ତଥା ଜୀବନକୁ ସାମ୍ନା କରିବାର ଶକ୍ତି। 'ଫେରିଆ' ଅଭିନୀତ ହୋଇ ଓଡ଼ିଆ ନାଟକ ତଥା ନାଟ୍ୟକାର ଉଭୟଙ୍କ ପାଇଁ ପ୍ରଶଂସା ଓ ଆତ୍ମବିଶ୍ୱାସ ଆଣି ପାରିଛି। ପ୍ରଥମ ନାଟକ ହେଲେ ମଧ୍ୟ ଛୋଟରାୟ ସୃଷ୍ଟି ସମୂହ ମଧ୍ୟରେ 'ଫେରିଆ'ର ସ୍ଥାନ ଗୁରୁତ୍ୱପୂର୍ଣ୍ଣ।

'ଫେରିଆ' ପରେ ଗୋପାଳ ଛୋଟରାୟ 'ଭରସା' ଭଳି ଆଶ୍ୱାସନାପୂର୍ଣ୍ଣ ନାଟକ ରଚନା କରିଛନ୍ତି। 'ଭରସା' ଏକ ମଞ୍ଚସଫଳ ନାଟକ ଯାହା ଓଡ଼ିଶାର ମଞ୍ଚ, ଶିଳ୍ପୀକୁଳ, ଏପରିକି ଦର୍ଶକମଣ୍ଡଳୀ ସମସ୍ତଙ୍କୁ ଭରସା ଦେବା ପାଇଁ ସମର୍ଥ ହୋଇଥିଲା। ଜଣେ ଶିଳ୍ପୀର ଜୀବନ କାହାଣୀକୁ ନେଇ ରଚିତ 'ଭରସା' ଓଡ଼ିଆ ନାଟ୍ୟଜଗତର ଏକ ଉଜ୍ଜ୍ୱଳ କୃତି। ଏହା ୧୯୫୩ରେ ଜନତା ରଙ୍ଗମଞ୍ଚରେ ଅଭିନୀତ ହୋଇଛି। ତିନି ଅଙ୍କ ବିଶିଷ୍ଟ ଏହି ନାଟକରେ ଚରିତ୍ର, ସଂଳାପ ଓ ସଙ୍ଗୀତର ସୁକ୍ଷମ ସମନ୍ୱୟ ଦୃଷ୍ଟିଗୋଚର ହୁଏ।

ନାୟକ ମୋହନ ବମ୍ବେରେ ଛଅ ବର୍ଷ ରହି ଉଚ୍ଚଶିକ୍ଷା ପାଇବା ପରେ କଟକ ଫେରିଆସିଛି। କଟକର କାଠଗଡ଼ା ସାହି ପାଲଟିଛି ତା'ର ସାଧନାର ପୀଠ। କଳାସାଧନାରେ ମଗ୍ନ ମୋହନ ଚାକିରି କରିନାହିଁ। ତେଣୁ ଦାରିଦ୍ର୍ୟ ମଧ୍ୟରେ ତା'ର କଳା ବିକଶିତ ହୋଇଛି। ମୋହନର ପ୍ରେରଣାରେ ଶିକ୍ଷାଲାଭ କରିଥିବା ନୀଳା ପାଇଁ ବାପା ମଧୁ ମହାରଣାର ବ୍ୟସ୍ତତାର ସୀମା ନାହିଁ। ସେ କାହ୍ନୁ ମହାରଣାର ପୁଅ ମଦ୍ୟପ ଶଙ୍କର ସହିତ ନୀଳାର ବିଭାଘର କରାଇ ଦେଇଛି କିନ୍ତୁ ପ୍ରତିବାଦରେ ନୀଳା ବିବାହ ବେଦୀରୁ ଉଠି ମୋହନ ପାଖକୁ ଯାଇଛି। ମୋହନ ପ୍ରଥମେ ନିଜର ଦାରିଦ୍ର୍ୟର ଦ୍ୱାହି ଦେଇ ତାକୁ ଅନ୍ୟତ୍ର ବିବାହ ପାଇଁ ଅନୁରୋଧ କରିଛି ମାତ୍ର ନୀଳାର ତା'ପ୍ରତି ପ୍ରେମ ତଥା ବେଦୀରୁ ଉଠି ଆସିବାର ଦୁଃସାହସ ଦେଖି ବିବାହ ପାଇଁ ରାଜି ହୋଇଛି। ଆର୍ଥିକ ସ୍ଥିତି ସୁଧୁରିବା ପରେ ନୀଳାର ବିବାହ ମୋହନ ସହିତ ହେବ ବୋଲି ମଧୁ ମହାରଣା କଥା ଦେଇଛି। ଏହାପରେ ମୋହନର ଦାରିଦ୍ର୍ୟ ମଧ୍ୟକୁ ଧନୀ କୁମାର ସାହେବଙ୍କର ଆଗମନ ଘଟିଛି ଯିଏ ଏକ ସୁନ୍ଦରୀ ନାରୀର ଛବି ଅଙ୍କାଇବାକୁ ଚାହାନ୍ତି। ମୋହନ ବାଧ କରିବାରୁ ନୀଳା ତା'ର ମଡେଲ ହୋଇଛି ମାତ୍ର ସେହିଦିନଠାରୁ ନୀଳାର ଦୁର୍ଭାଗ୍ୟ ଆରମ୍ଭ ହୋଇଛି। ନୀଳାକୁ ମୋହନ ଘରେ ଦେଖି କୁମାର ସାହେବ ତା'ପ୍ରତି ଆକର୍ଷିତ ହୁଅନ୍ତି ଓ ସେ ଛବିଟି ପାଞ୍ଚ ହଜାର ଟଙ୍କାରେ କିଣି ନେବାକୁ ଚାହାନ୍ତି। ମୋହନ କୁମାର ବାବୁଙ୍କ ମନକଥା ବୁଝିପାରେ ଓ ଛବିଟି ଶେଷ ହୋଇଗଲେ ତାଙ୍କୁ ଦେଇଦେବ କହି ନିଜେ ଲଜ୍ଜାରେ ଗୃହତ୍ୟାଗୀ ହୁଏ। କଲିକତାର ସାମ୍ପ୍ରଦାୟିକ ଦଙ୍ଗାରେ ପଡ଼ି ସେ ଦୈବକ୍ରମେ ମୀର୍ଣ୍ଣାଙ୍କ ଘରେ ଆଶ୍ରୟ ନିଏ। ମୀର୍ଣ୍ଣାଙ୍କଠାରୁ ସେ ତାଙ୍କ ଜୀବନସଂଗ୍ରାମ କାହାଣୀ ଶୁଣେ। ମିଷ୍ଟର ମହାପାତ୍ରଙ୍କର ଅଲିଅଳି କନ୍ୟା ମୀର୍ଣ୍ଣା କୁମାର ଅମରେନ୍ଦ୍ର ନାରାୟଣଙ୍କୁ ବିବାହ କରନ୍ତି। କପର୍ଦ୍ଦକଶୂନ୍ୟ କୁମାର ସାହେବ କୌଶଳରେ ମୀର୍ଣ୍ଣାଙ୍କର ସମସ୍ତ ସମ୍ପତ୍ତି କରଗତ କରିନିଅନ୍ତି ଓ ବ୍ଲୁ-ଭିଲ୍ଲା ନାମକ ପ୍ରାସାଦକୁ ମଧ ତାଙ୍କ ନାମରେ କରିନିଅନ୍ତି। ମୀର୍ଣ୍ଣା ନିଜର ରୁଗ୍ଣ ପିତାଙ୍କ ସହିତ କଲିକତାର ଏକ ଛୋଟ ଭଡ଼ାଘରେ ରହି ସିଲେଇ କରି ନିଜର ଗୁଜୁରାଣ ମେଣ୍ଟାନ୍ତି।

ଅପର ପକ୍ଷରେ କୁମାର ସାହେବ ଧନୀ ହୋଇ ଅନେକ ତରୁଣୀ କନ୍ୟାଙ୍କୁ ନିଜ କାମନାର ଫାଶରେ ବାନ୍ଧି ବ୍ଲୁ-ଭିଲ୍ଲାକୁ ନିଜର ବିଳାସ ଭିଲ୍ଲାରେ ପରିଣତ କରନ୍ତି। ଶ୍ରୀମତୀ ଦାସ ନାମ୍ନୀ ମହିଳା ଏ କ୍ଷେତ୍ରରେ କୁମାରଙ୍କର ସହାୟିକା ସାଜନ୍ତି। ସେ ନିଜର ଛୋଟପିଲା ପାଇଁ ଶିକ୍ଷୟିତ୍ରୀ ଖୋଜିବାର ବିଜ୍ଞାପନ ଦେଇ କୌଶଳରେ ନୀଳାକୁ କଲିକତା ଡକାଇ ନିଅନ୍ତି। ମୋହନର

କଳା ପ୍ରଦର୍ଶନୀରୁ କୁମାର ସାହେବ ନୀଳାର ଛବି ଚୋରାଇ ଆଣି ନୀଳା ଆଗରେ ମୋହନର ସ୍ୱାର୍ଥପରତା ପ୍ରମାଣିତ କରିଛନ୍ତି। ଫଳରେ ନୀଳା ମୋହନ ଉପରୁ ଭରସା ତୁଟାଇ କୁମାର ସାହେବଙ୍କୁ ବିବାହ କରିବା ପାଇଁ ନିଜର ସମ୍ମତି ଦେଇଛି। ମୋହନ ଏହି ଖବର ପାଇ ଦୁଃଖରେ ଭାଙ୍ଗି ପଡ଼ିଛି ମାତ୍ର କୁମାର ସାହେବଙ୍କ ବନ୍ଧୁ ଆନନ୍ଦ ଏ ବିବାହ ଅସମ୍ଭବ ବୋଲି ଘୋଷଣା କରିଛନ୍ତି। ଜୀବନରେ ଏକାଧିକ ନାରୀଙ୍କୁ ଉପଭୋଗ କରିଥିବା କୁମାର ସାହେବ ନୀଳାର ଚାରିତ୍ରିକ ମହତ୍ତ୍ୱ ହୃଦୟଙ୍ଗମ କରି ତାକୁ ବିବାହ କରିବାକୁ ଚାହିଁଥିଲେ, ଯେଉଁ କଥାଟି ଶ୍ରୀମତୀ ଦାସଙ୍କୁ ବାଧିଥିଲା। ଆନନ୍ଦଙ୍କ କଥା ତାଙ୍କ ଭିତରେ ଥିବା ସୁପ୍ତ ମାନବିକତାକୁ ଜାଗ୍ରତ କରିଛି। ମୀର୍ଣ୍ଣାର ପ୍ରେରଣାରେ ମୋହନର ପଳାୟନପନ୍ଥୀ ଚରିତ୍ରର ପରିବର୍ତ୍ତନ ଘଟିଛି। ବନ୍ଧୁ ଆନନ୍ଦର ଆଶଂକାକୁ ପରୀକ୍ଷା କରିବା ପାଇଁ କୁମାର ବାବୁ ନୀଳାକୁ ନକଲି ହୀରାର ମୁଦି ଉପହାର ଦେଇଛନ୍ତି। ନୀଳା ତାଙ୍କୁ ଚିଠିଟିଏ ଲେଖି ସେହି ହୀରାମୁଦି ପାଟିରେ ଦେଇ ଆତ୍ମହତ୍ୟା କରିବାର ପ୍ରୟାସ କରିଛି। ଫଳରେ କୁମାର ବାବୁ ନୀଳାର ପ୍ରେମ କେତେ ମହନୀୟ ତା'ର ପ୍ରମାଣ ପାଇପାରିଛନ୍ତି। କୁମାର ବାବୁଙ୍କ ଚେଷ୍ଟାରେ ମୋହନ ନୀଳାକୁ ଓ କୁମାର ସାହେବ ନିଜର ପତ୍ନୀ ମୀର୍ଣ୍ଣାକୁ ଫେରିପାଇଛନ୍ତି।

ନାଟକର ଆରମ୍ଭରେ ନାୟିକା ନୀଳା ନିଜ ବିବାହ ବେଦୀରୁ ଉଠିଯିବା ବ୍ୟାପାରଟି ଉତ୍କଣ୍ଠା ଜାଗ୍ରତ କରିବାରେ ସହାୟକ ହୋଇପାରିଛି। ନାରୀର ପ୍ରେରଣା ପୁରୁଷ ଭିତରେ ନାୟକଟିଏ ସୃଷ୍ଟି କରିପାରେ ଏହା ନୀଳା ଓ ମୀର୍ଣ୍ଣା ଚରିତ୍ର ଦ୍ୱାରା ପ୍ରମାଣିତ ହୋଇ ପାରିଛି। ସେହି ନାରୀ ଶ୍ରୀମତୀ ଦାସ ଭାବରେ ବ୍ୟକ୍ତି ଚରିତ୍ରକୁ ତଳିତଳାନ୍ତ ମଧ୍ୟ କରିଦେଇପାରନ୍ତି। 'ଭରସା'ରେ ନୀଳା ପ୍ରଥମେ ମୋହନକୁ ଭରସା କରି ବିବାହ ବେଦୀରୁ ଦୁଃସାହସିକତା ଦେଖାଇ ଉଠିଯାଇଛି। ମଧୁ ମହାରଣା ଝିଅର ବାପା ଭାବରେ ମୋହନକୁ ଭରସା କରିବାକୁ ବାଧ ହୋଇଛି ମାତ୍ର ସମସ୍ତଙ୍କ ଭରସାର ଉପଯୁକ୍ତ ହେବାକୁ ମୋହନ ଉପାର୍ଜନକ୍ଷମ ହେବା ପାଇଁ କଟକ ଛାଡ଼ିଛି। ତା' ମନରେ ଦୃଢ଼ତା ଜାଗ୍ରତ କରିବା ପାଇଁ ଚରଣ ଓ ମୁକ୍ତା ନାମକ ଦୁଇଟି ଚରିତ୍ର ସୃଷ୍ଟି ହୋଇଛନ୍ତି। ଯେଉଁମାନେ ନାଚି ଗାଇ ପରସ୍ପର ପ୍ରତି ଭରସା ରଖି ବଞ୍ଚିବାର ପାଥେୟ ସଂଗ୍ରହ କରିପାରିଛନ୍ତି। କୁମାର ସାହେବ ଯେଉଁ ଭରସାରେ ବାଲ୍ୟବନ୍ଧୁ ଆନନ୍ଦଙ୍କୁ ବ୍ଲୁ-ଭିଲ୍ଲାକୁ ନେଇ ଯାଇଥିଲେ, ସେହି ଭରସାକୁ ସମ୍ମାନ ଦେଇ ଆନନ୍ଦ କୁମାର ସାହେବଙ୍କର ଚରିତ୍ରରୁ କଳଙ୍କ ଦୂର କରିବାରେ ସଫଳ ହୋଇଛନ୍ତି। ପରିଶେଷରେ ଶିକ୍ଷିତା ନୀଳା ଯେଉଁ ତ୍ୟାଗପୂତ ପ୍ରେମମୟ ପାରମ୍ପରିକ ଜୀବନଧାରାର ପ୍ରତିନିଧିତ୍ୱ କରିଛି, ସେଠାରେ କୁମାର ସାହେବଙ୍କ ଭଳି ମଣିଷଙ୍କର ହୃଦୟ ଯେ ପରିବର୍ତ୍ତିତ ହୋଇପାରେ, ଏଭଳି ଏକ ଶୁଭ ବିଶ୍ୱାସ ନାଟ୍ୟକର ପ୍ରଦାନ କରିଛନ୍ତି। ପରିଶେଷରେ ନାଟକରେ ମିଳନାନ୍ତକ ପରିସମାପ୍ତି ଘଟିଛି। 'ଭରସା' ଓଡ଼ିଶାର ରଙ୍ଗମଞ୍ଚକୁ ଭରସା ଦେଇଛି ଓ ଗୋପାଳ ଛୋଟରାୟଙ୍କର ନାଟ୍ୟସିଦ୍ଧିକୁ ପ୍ରମାଣିତ କରିପାରିଛି।

'ଅର୍ଦ୍ଧାଙ୍ଗିନୀ' ୧୯୫୦ରେ ରଚିତ ହୁଏ। ୧୯୫୦ ପରେ ଓଡ଼ିଆ ନାଟକରେ ପରିବର୍ତ୍ତନର ଯେଉଁ ସୂତ୍ରପାତ ହୋଇଛି 'ଅର୍ଦ୍ଧାଙ୍ଗିନୀ'ରେ ତା'ର ପ୍ରଭାବ ଅନୁଭୂତ ହୁଏ। 'ଅର୍ଦ୍ଧାଙ୍ଗିନୀ'ର

ବିଷୟ ଚୟନ ଗତାନୁଗତିକତାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏହା ତିନି ଅଙ୍କ ବିଶିଷ୍ଟ ନାଟକ । ଦୃଶ୍ୟବିହୀନ ଏହି ନାଟକ ଚାରିଟି ଦିନର ଘଟଣା ମଧ୍ୟରେ ସୀମିତ ।

ଏକ ଉଚ୍ଚମଧ୍ୟବିତ୍ତ ପରିବାରର ଜୀବନଯନ୍ତ୍ରଣାକୁ ନେଇ 'ଅର୍ଦ୍ଧାଙ୍ଗିନୀ' ପରିକଳ୍ପିତ । ପତ୍ନୀତ୍ୱ ଓ ମାତୃତ୍ୱ ମଧ୍ୟରେ ଥିବା ଦ୍ୱନ୍ଦ୍ୱ ଏହି ନାଟକଟିକୁ କଳାତ୍ମକ ରୂପ ପ୍ରଦାନ କରିଛି । ମନୋବିଜ୍ଞାନର ବିଚାରଧାରା ଏହି ନାଟକର ଚରିତ୍ରମାନଙ୍କର ଗତି ନିୟନ୍ତ୍ରଣ କରିଛି । ବିକାଶର ପତ୍ନୀ ମାୟା ସନ୍ତାନର ଜନନୀ ହେବା ପରେ ସନ୍ତାନଗତପ୍ରାଣା ହୋଇ ଯାଇଛି । ଏକମାତ୍ର ସନ୍ତାନ ଆଶୋକକୁ ନେଇ ତା'ର ଜୀବନ ପରିପୂର୍ଣ୍ଣ ହୋଇଛି ମାତ୍ର ସ୍ୱାମୀ ବିକାଶଙ୍କ ପ୍ରତି ସେ ପୂର୍ବ ପରି ଶ୍ରଦ୍ଧାଶୀଳ ହୋଇପାରୁ ନାହିଁ । ବିକାଶ ମଧ୍ୟ କ୍ରମେ ମାୟା ପ୍ରତି ବୀତସ୍ପୃହ ହୋଇଛନ୍ତି । ମାୟା ଜାଣେ ସେ ପୁନର୍ବାର ଜନନୀ ହେବାର କ୍ଷମତା ହରାଇ ବସିଛି । ତେଣୁ ଅଶୋକର ସମାନ୍ୟ ଦେହ ଖରାପ ହେଲେ ସେ ଅସହିଷ୍ଣୁ ହୋଇପଡ଼େ । ପୁଅର ଟନ୍‌ସିଲ ଅପରେସନ୍ କଥା ଶୁଣି ବିକାଶର ଡାକ୍ତର ବନ୍ଧୁଙ୍କୁ ଭର୍ତ୍ସନା ମଧ୍ୟ କରେ । ଅଭୟ ବିକାଶର ବନ୍ଧୁ ଯିଏ କି ପରିବର୍ତ୍ତିତ ପରିସ୍ଥିତିରେ ଶିଶୁମାନଙ୍କ ସ୍ୱାଧୀନତା ସମ୍ପର୍କରେ ସଚେତନ । ବଇ ଅଜା ଏ ନାଟକର ଅନ୍ୟ ଏକ କମନୀୟ ଚରିତ୍ର, ଯିଏ କି ଅଶୋକକୁ ପରିହାସ କରି ନାଟକରେ ହାସ୍ୟରସ ସୃଷ୍ଟି କରିଛନ୍ତି । ଅଶୋକର ଜନ୍ମଦିନର ଉତ୍ସବ ଆଡ଼ମ୍ବର ଭିତରେ ପିଲାମାନେ ସଙ୍ଗୀତ ଗାନ କରିବାର କାର୍ଯ୍ୟକ୍ରମ ରହିଛି । ପୂର୍ବରୁ ଜନ୍ମୋତ୍ସବରେ ବିଭିନ୍ନ ସଙ୍ଗୀତ ଚର୍ଚ୍ଚା ଓ ପୂଜା ଇତ୍ୟାଦି ହେଉଥିଲା । ମାତ୍ର ଯୁଗ ରୁଚି ସହିତ ତାଳଦେଇ ଅଶୋକର ଅଷ୍ଟମ ଜନ୍ମବାର୍ଷିକୀରେ ନାଟଗୀତର ପରିବେଷଣ କରାଯାଇଛି ।

'ଅର୍ଦ୍ଧାଙ୍ଗିନୀ' ଏକ ପାରିବାରିକ ନାଟକ । ଦିନେ ବାଳିକାବଧୂ ମାୟା ବିକାଶର ଡାକକୁ ଅପେକ୍ଷା କରି ବସୁଥିଲା । ଆଜି କିନ୍ତୁ ମାତୃତ୍ୱର ମହିମାମଣ୍ଡିତା ସେହି ନାରୀ ପାଖରେ ସ୍ୱାମୀର ପ୍ରେମ ସମ୍ଭାଷଣ ପାଇଁ ବେଳ ନାହିଁ । ସନ୍ତାନ ଜନ୍ମ ପରେ ନାରୀ ପରିବାରର ତତ୍ତ୍ୱାବଧାରିକା ତଥା ଭବିଷ୍ୟତର ରକ୍ଷାକର୍ତ୍ତ୍ରୀ ପାଲଟିଯାଏ, ଯେଉଁଠାରେ ପ୍ରେମ ପାଇଁ ତା'ର ଆଗ୍ରହ ସନ୍ତାନବତ୍ସଳତା ମଧ୍ୟରେ ପରିବର୍ତ୍ତିତ ହୋଇଯାଏ । ଏପରି ହୁଏ ଯେ ବିକାଶକୁ ନିଜର ଦଶମ ବିବାହ ବାର୍ଷିକୀର ଦିନ ସମ୍ପର୍କରେ ମାୟାକୁ ମନେପକାଇଦେବାକୁ ପଡ଼େ । ସନ୍ତାନ ବତ୍ସଳା ନାରୀର ଏତାଦୃଶ ଅବହେଳାକୁ ନାଟ୍ୟକାର ସମ୍ବେଦନା ଦେଇ ଅସାମାନ୍ୟ କରି ପରିବେଷଣ କରିଛନ୍ତି ।

'ପରକଲମ' ୧୯୫୪ରେ ରଚିତ । ଏହା ସମ୍ପୂର୍ଣ୍ଣ ରାଜନୀତିକୈନ୍ଦ୍ରିକ ନାଟକ । ଭାରତୀୟ ରାଜନୀତିରେ ନିର୍ବାଚନ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରକ୍ରିୟା, ଯାହାଦ୍ୱାରା ଜନପ୍ରତିନିଧିମାନେ ନିର୍ବାଚିତ ହୋଇଥାଆନ୍ତି । ଭୋଟ୍ ସମୟରେ ଗାଡ଼ିମଟର, ସାଇକେଲ୍ ଏପରିକି ପଦଯାତ୍ରା କରି ଲୋକସମ୍ପର୍କ ବଢ଼ାଇଥିବା ତଥାକଥିତ ଲୋକ ପ୍ରତିନିଧିଗଣ ନିର୍ବାଚନ ଜିଣିବା ପରେ ପାଞ୍ଚ ବର୍ଷ ପାଇଁ ସାଧାରଣ ଜନତାଙ୍କୁ ପାଶୋରି ଦିଅନ୍ତି, ଫଳରେ ନିର୍ବାଚନ ସମୟରେ ତର୍କବିତର୍କ, ଭାଷଣ, ଆଲୋଚନା ଖବରକାଗଜ ପ୍ରଚାର ଇତ୍ୟାଦିକୁ ନେଇ ସରଗରମ ରହୁଥିବା ଗ୍ରାମ୍ୟ ପରିବେଶ ନିରବ ହୋଇଯାଏ । ସାଧାରଣ ଜନତା ଉପଯୁକ୍ତ ପ୍ରାର୍ଥୀ ବାଛିଛନ୍ତି ଭାବି ପ୍ରତିଥର ଠକି ହୋଇ ଯାଆନ୍ତି । ଏହି ନାଟକଟି ପ୍ରଚଳିତ ଗଣତନ୍ତ୍ରର ଏହି ଦୁର୍ବଳ ଦିଗଟିକୁ ବିଦ୍ରୂପରେ ଜର୍ଜର କରିଛି ।

ଦେଶବାସୀଙ୍କର ଆଗ୍ରହ ଅପେକ୍ଷା କୌଣସି ନିର୍ଦ୍ଦିଷ୍ଟ ରାଜନୀତିକ ଦଳ ଓ ତା'ର ମୁଖ୍ୟମାନେ ନିଜ ନିଜ ଆଗ୍ରହକୁ ଉଚ୍ଚସ୍ଥାନ ଦେଉଛନ୍ତି, ଯାହା ନାଟ୍ୟକାରଙ୍କୁ ବ୍ୟଥିତ କରିଛି।

'ପରକଲମ'ରେ ପରକଲମ ଏକ ରାଜନୀତିକ ଦଳର ନିର୍ବାଚନ ସଂକେତ। ଗଣଶକ୍ତି ଦଳ ଓ ମିଳିତ ଦଳ ପରସ୍ପରକୁ ସମାଲୋଚନା କରନ୍ତି। ଗଣଶକ୍ତି ଦଳ ପ୍ରଥମେ ସରକାରରେ ଥିଲେ। ଆସେମ୍ବ୍ଲି ଶେଷଦିନ ମିଳିତ ଦଳ ସରକାରଙ୍କ ଖାଦ୍ୟନୀତିର ସମାଲୋଚନା କରିଥିଲେ। ସେହି ରାଜନୀତିକୁ ନିର୍ବାଚନ ପ୍ରଚାରର ମୁଖ୍ୟ ଆୟୁଧ ଭାବରେ ଗ୍ରହଣ କରି ସେମାନେ ନିର୍ବାଚନରେ ବିଜୟୀ ହୋଇ ସରକାର ମଧ୍ୟ ଗଠନ କରିଥିଲେ। ସେହି ଖାଦ୍ୟନୀତି ଯୋଗୁଁ ସେମାନେ ନିଜେ ମଧ୍ୟ ନିନ୍ଦିତ ହୋଇଥିଲେ।

ନାଟକର ସମୟ ସୀମା ଆଠ ମାସ ମଧ୍ୟରେ ସୀମିତ। ଶେଷ ଆସେମ୍ବ୍ଲିର ଦୁଇ ମାସ ପରେ ନିର୍ବାଚନ। ସରକାର ଗଠନର ତିନି ମାସ ପରେ ଖବରକାଗଜରେ ଏହାର ସମାଲୋଚନା ଆରମ୍ଭ ହୁଏ। ନିର୍ବାଚନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିବା ରାଜେନ୍ଦ୍ର ବାବୁ ଶାରୀରିକ ଅସୁସ୍ଥତା ଯୋଗୁଁ ଛଅ ମାସ ଛୁଟି ନେଇ ସୁଇଜରଲ୍ୟାଣ୍ଡ ଯାଆନ୍ତି ଓ ତିନି ମାସ ପରେ ଫେରିଆସି ରାଜ୍ୟର ଅବସ୍ଥା ଦେଖି ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟଙ୍କଠାରୁ ଅଲଗା ହୋଇଯାଆନ୍ତି।

ମୁକୁନ୍ଦ ଏହି ନାଟକରେ ସରଳ ଜନତାର ପ୍ରତିନିଧି। ସେ ଖୁବ୍ ଶକ୍ତିଶାଳୀ। ତା'ର ସରଳ ଅଥଚ ଦୃଢ଼ ପ୍ରଶ୍ନର ଉତ୍ତର ଗଣଶକ୍ତି ଦଳର ଶର୍ମା ବାବୁ ଓ ମିଳିତ ଦଳର ରାଜେନ୍ଦ୍ର ବାବୁ କେହି ଦେଇ ପାରନ୍ତି ନାହିଁ।

ଗଣତନ୍ତ୍ରର ନିୟମ ହେଉଛି ପ୍ରତିନିଧିମାନେ ନିର୍ବାଚିତ ହେବେ ଓ ସଂଖ୍ୟାଗରିଷ୍ଠ ଦଳ ସରକାର ଗଢ଼ିବ। କିନ୍ତୁ ପ୍ରକୃତରେ ନିର୍ବାଚନ ପୂର୍ବରୁ କିଛି ବେକାର ଯୁବକ ଓ ଟାଉଟର ମିଶି କଳାଟଙ୍କା ବଳରେ ନିର୍ବାଚନ ଜିତନ୍ତି ଓ ଲୋକଙ୍କଠାରୁ ପ୍ରାପ୍ତ ଅଖଣ୍ଡ କ୍ଷମତାକୁ ସେହି ଲୋକମାନଙ୍କୁ ଦମନ କରିବା ପାଇଁ ପ୍ରୟୋଗ କରନ୍ତି। ମୁକୁନ୍ଦର ପ୍ରଶ୍ନ ହେଉଛି ଯେ ହାତରୁ ଖାଇ ଦିହଦୁଃଖ ସହି ଖରାତରାରେ ନେତାମାନେ ଜନତା ନିକଟକୁ ଧାଇଁବେ କାହିଁକି ? ଶୋଷ ସିନା ପାଣି ପାଖକୁ ଯାଏ, ହେଲେ ପାଣି କେମିତି ଶୋଷ ପାଖକୁ ଆସିବ ? ୧୯୫୪ରେ ମୁକୁନ୍ଦ ମୁହଁରୁ ବାହାରିଥିବା ଏହି କେତୋଟି ପଦ ଭାରତୀୟ ଗଣତନ୍ତ୍ର ଶାସନରେ ଥରେ ନୁହେଁ ବାରମ୍ବାର ସତ ବୋଲି ପ୍ରମାଣିତ ହୋଇଛି।

ନିଜର ଦୀର୍ଘ ନାଟ୍ୟକାର ଜୀବନ ଭିତରେ ଛୋଟରାୟ ମହାଶୟ ପାରିବାରିକ ସମ୍ପର୍କକୁ ନେଇ ଶତାଧିକ ନାଟକ, ଧାରାବାହିକ ଇତ୍ୟାଦି ଲେଖିଥିଲେ ହେଁ ପରିବର୍ତ୍ତିତ ରାଜନୀତି ପ୍ରତି ତାଙ୍କର ସୂକ୍ଷ୍ମ ତଥା ନିଜସ୍ୱ ବିଚାର ଥିଲା। ତେଣୁ ପରିଣତ ବୟସରେ ସେ 'ସ୍ୱାଗତମ୍ ଗଣତନ୍ତ୍ର' ଶୀର୍ଷକ ନାଟକ ଲେଖିଥିଲେ ଯାହା ବର୍ତ୍ତମାନ ପର୍ଯ୍ୟନ୍ତ ମୁଦ୍ରିତ ହୋଇନାହିଁ ବା କୌଣସିଠାରେ ଅଭିନୀତ ମଧ୍ୟ ହୋଇନାହିଁ।

'ପରକଲମ'ର ମନ୍ଦର ମହାନ୍ତି କୌଣସି ରାଜନୀତିକ ଦଳକୁ ସମର୍ଥନ କରୁ ନ ଥିଲେ ଓ ନିରପେକ୍ଷ ରହିବାର ଛଳନା କରୁଥିଲେ। ତାଙ୍କ ସ୍ତ୍ରୀ ସୀତା ଗଣଶକ୍ତିକୁ ଓ କନ୍ୟା ସୁରମା ମିଳିତ

ଦଳକୁ ସାହାଯ୍ୟ କରୁଥିଲେ । ମୁଖ୍ୟମନ୍ତ୍ରୀ ମହାପାତ୍ରଙ୍କ କନ୍ୟା ଗୀତା ଆସେମ୍ଲି ହଲ୍‌ରେ ରାଜେନ୍ଦ୍ରଙ୍କ ଭାଷଣ ଶୁଣି ପ୍ରଭାବିତ ହୋଇଛି ଓ ପରେ ତାଙ୍କୁ ବିବାହ କରିଛି । ରାଜନୀତିଜ୍ଞଙ୍କ କନ୍ୟା ବା ଅନ୍ୟ ଜଣେ ରାଜନୀତିଜ୍ଞଙ୍କ ପତ୍ନୀ ହୋଇ ମଧ୍ୟ ସେ ରାଜନୀତିଠାରୁ ନିର୍ଦ୍ଦିଷ୍ଟ ଦୂରତ୍ୱ ରକ୍ଷା କରିଛି । ସୀତା ମଫସଲି ସ୍ତ୍ରୀଲୋକ ହୋଇଥିଲେ ମଧ୍ୟ ପରିବାର ମଧ୍ୟରେ ରହି ନିଜର ସ୍ୱାଧୀନ ମତ ପ୍ରଦାନ କରିଛି ଓ ହସଖୁସିରେ ନିଜର ପାରିବାରିକ ଜୀବନ ବଞ୍ଚୁଛି । ନେତା ଦେବାନନ୍ଦ ସାମନ୍ତରାୟଙ୍କ କନ୍ୟା ଆଧୁନିକା ସୁରମା ନୃତ୍ୟ ଗୀତ ପ୍ରତି ଆକୃଷ୍ଟା । ସେବତୀ 'ପରକଲମ'ର ସ୍ୱତନ୍ତ୍ର ଚରିତ୍ର । ସିଏ ଗାଁ ଝିଅ ମାତ୍ର ସ୍ୱାଧୀନ ଭାବେ ସେ ସଭା ସମିତିକୁ ଯାଇଛି ଏପରିକି ଦୁଃସାହସୀ ହୋଇ ଲୋକମଙ୍ଗଳ ପାଇଁ ସମାଜସେବା କରିଛି । ଶେଷରେ ଶଶୀ ଭଳି ଛଦ୍ମବେଶୀ ଦେଶପ୍ରେମୀଙ୍କ ମୁଖା ଖୋଲିବାରେ ସହାୟକ ହୋଇଛି । ତା'ର ଦେଶପ୍ରେମ ବେଶ୍ ଅଦର୍ଶସ୍ଥାନୀୟ ।

ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟ ନିଜର ବ୍ୟକ୍ତିଗତ ସମୃଦ୍ଧି ପାଇଁ ଦେଶକୁ ଦୁର୍ଭିକ୍ଷ ଆଡ଼କୁ ଠେଲି ଦେଇଛନ୍ତି । ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ଯେଉଁ ଆଦର୍ଶ ସେ ପ୍ରଚାର କରୁଥିଲେ ତାହା ମୁଖ୍ୟମନ୍ତ୍ରୀ ହେବା ପରେ ଭୁଲିଯାଇଛନ୍ତି । ରାଜେନ୍ଦ୍ର ବାବୁ ଖୁବ୍ ଅଳ୍ପ ସମୟ ନେତୃତ୍ୱ ନେଇ ନିଜ ପାଇଁ ସାଧାରଣ ଜନତା ମନରେ ଏକ ସମ୍ମାନାସ୍ପଦ ଆସନ ସୃଷ୍ଟି କରିପାରିଛନ୍ତି । ମୁକୁନ୍ଦ ଏକ ସରଳ ଚରିତ୍ର ଯିଏ ନାଟକର ପ୍ରତ୍ୟେକ ଘଟଣା ଓ ଚରିତ୍ର ସହିତ ସମ୍ପର୍କିତ । ମନ୍ଦର ଓ ରାଧୁ ପାଣିଙ୍କ ଚରିତ୍ରର ସବୁ ଦୁଷ୍କୃତି ସେ ପଦାରେ ପକାଇ ଦେଇଛି । ହାସ୍ୟ ଓ ବ୍ୟଙ୍ଗ ସୃଷ୍ଟି କରି ସେ 'ଭରସା'ର ପରିବେଷଣକୁ ସହନୀୟ କରିପାରିଛି । ଶେଷ ପର୍ଯ୍ୟନ୍ତ ତା' ପ୍ରଶ୍ନର ଉତ୍ତର ସେ ପାଇନାହିଁ କାରଣ ଭୋଟ୍ ଲଢ଼େଇର ମୂଳତତ୍ତ୍ୱଟି ସମଗ୍ର ନାଟକରେ ଅମୀମାଂସିତ ପ୍ରଶ୍ନ ହୋଇ ରହିଯାଇଛି ।

୧୯୫୪ରେ ଜନତା ରଙ୍ଗମଞ୍ଚର ତୃତୀୟ ନାଟକ ଭାବରେ 'ପରକଲମ' ଅଭିନୀତ ହୋଇଛି । ସ୍ୱାଧୀନତାର ଠିକ୍ ପର ସମୟରେ ଦେଶର ପ୍ରଥମ ସାଧାରଣ ନିର୍ବାଚନ ହୋଇଛି । ନାଟ୍ୟକାରଙ୍କର ଅନୁଭବ ହୋଇଛି ଯେ ରାଜନୀତି ଠିକ୍ ବାଟରେ ଗତି କରୁନାହିଁ । ଦେଶବାସୀଙ୍କର ଅଭାବ ଅସୁବିଧାଗୁଡ଼ିକ ରୀତିମତ ଉପେକ୍ଷା କରାଯାଉଛି ଓ ରାଜନୀତିକ ଦଳମାନ ଶକ୍ତିର କେନ୍ଦ୍ର ପାଲଟି ଯାଉଛନ୍ତି । ସେହି ସମୟରେ ମିଶରର ରାଜା ଫାରୁକ୍ ତଡ଼ା ଖାଇଲେ ପୁଣି କାଶ୍ମୀରର ଘଟଣା ନୂତନ ମୋଡ଼ ନେଲା । ଶେଖ୍ ଅବଦୁଲ୍ଲାଙ୍କର ଭାରତ ବିରୋଧୀ କାର୍ଯ୍ୟ ଯୋଗୁଁ ଯୁବକ ଡଃ କରଣ ସିଂହ ସଦର-ଇ-ରିୟାସତ୍ ଭାବେ ତାଙ୍କୁ ଡିସ୍‌ମିସ୍ କଲେ । ରାତି ଅଧରେ ତାଙ୍କୁ ବନ୍ଦୀ କରାଗଲା । ରାଜା ଫାରୁକ୍ ଓ ଶେଖ୍ ଅବଦୁଲ୍ଲାଙ୍କ ଘଟଣା ନାଟ୍ୟକାରଙ୍କ ମନପ୍ରାଣକୁ ପ୍ରଭାବିତ କରିଥିଲା । ତରୁଣ ଶିଳ୍ପୀ ନିଜର ବିଦ୍ରୂପାତ୍ମକ ଦୃଷ୍ଟିଭଙ୍ଗୀ ନେଇ 'ପରକଲମ' ରଚନା କରିଥିଲେ । ଜନତା ରଙ୍ଗମଞ୍ଚରେ ଏହା ଅଭିନୀତ ହୋଇ ବ୍ୟବସାୟିକ ସାଫଲ୍ୟ ଲାଭ କରିଥିଲା । ଦିଲ୍ଲୀଠାରେ ଅନୁଷ୍ଠିତ ଜାତୀୟ ନାଟକ ପ୍ରତିଯୋଗିତାରେ ଏହା ସେ ବର୍ଷ ଅଂଶ ଗ୍ରହଣ କରିଥିଲା । ତତ୍‌କାଳୀନ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ସଭାପତି ମାମା ୱାରେରକରଙ୍କ ଭଳି ବିଶିଷ୍ଟ ସାହିତ୍ୟିକ ଏହାକୁ ଦେଖିବା ପରେ ଏତେ ପ୍ରଭାବିତ ହୋଇଥିଲେ ଯେ ସେ ନାଟ୍ୟକାର ଗୋପାଳ

ଛୋଟରାୟଙ୍କ ସହିତ ଆଜୀବନ ବନ୍ଧୁତାରେ ଆବଦ୍ଧ ହୋଇଥିଲେ। 'ପରକଲମ' ଏକ ନିର୍ବାଚନୀ ସଂକେତ, ଯାହକୁ ଆଧାର କରି ରାଜନୀତିଜ୍ଞ ନିର୍ବାଚନ ବୈତରଣୀ ପାରିହୁଅନ୍ତି ମାତ୍ର ତାହାର ଯଥାର୍ଥ ଉପଯୋଗ ହୋଇପାରେ ନାହିଁ। ନେତୃବର୍ଗ ଯଦି ସ୍ୱାର୍ଥପର ହୁଅନ୍ତି, ତେବେ ସ୍ୱାଧୀନତା କିଭଳି ବିଡ଼ମ୍ବିତ ହୋଇଯାଏ ତା'ର ଚିତ୍ର 'ପରକଲମ'ରେ ସ୍ପଷ୍ଟ।

'ଶଙ୍ଖାସିନ୍ଦୂର' ୧୯୫୫ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଦ୍ୱାରା(୮/୮/୫୫ରେ) ପ୍ରଥମ ଥର ପାଇଁ ଅଭିନୀତ ହୋଇଥିଲା। ଓଡ଼ିଶାର ଜନଜୀବନରେ ଶଙ୍ଖାସିନ୍ଦୂରର ସ୍ଥାନ ସ୍ୱତନ୍ତ୍ର। ବିବାହିତା ନାରୀର ପତିଗତପ୍ରାଣତାର ପରିଚୟ ବହନ କରେ ଏହି ଶଙ୍ଖାସିନ୍ଦୂର। ଏହି ଶଙ୍ଖାସିନ୍ଦୂର ଲଗାଇବାର କାମନା ପ୍ରତ୍ୟେକ ଯୁବତୀ ମନର ଚିରବାଞ୍ଛିତ ଅଭିଳାଷ। ପତିତା ଶକୁନ୍ତଳାର କନ୍ୟା ମାଧବୀ ରୂପଗୁଣରେ ଅଦ୍ୱିତୀୟା, ମାତ୍ର ତା'ର ଲଜ୍ଜାକର ଜନ୍ମଜାତକ ପାଇଁ ସେ ସମାଜସେବିକା ଲଳିତା ଦେବୀଙ୍କ ଦ୍ୱାରା ବାରମ୍ବାର ଉପହସିତା ହୁଏ।

ବାଣୀ ରାସବିହାରୀଙ୍କ କନ୍ୟା। ସରଳା ବାଣୀ ସ୍ୱାମୀ ଶରତଙ୍କ ପ୍ରତି ଅନୁରକ୍ତା। ବାଣୀ ଓ ଶରତଙ୍କ ପାରିବାରିକ ଜୀବନରେ ରାସବିହାରୀ ହିଁ ସନ୍ଦେହର ବୀଜ ବପନ କରନ୍ତି। ସେ ଶରତ ସହିତ ମାଧବୀର କାଳ୍ପନିକ ସମ୍ପର୍କ କଥା କହି ବାଣୀ ମନକୁ ଶରତ ପ୍ରତି ବିଷାକ୍ତ କରିଦିଅନ୍ତି। ତାଙ୍କ କଥାକୁ ଲଳିତା ଦେବୀ ସମର୍ଥନ କରନ୍ତି ଓ ରାସବିହାରୀଙ୍କ ସହିତ ସମ୍ପର୍କ ବଢ଼ାଇ ତାଙ୍କର ବିଶ୍ୱାସ ଜିଣିବାର ଚେଷ୍ଟା କରନ୍ତି। ବାଣୀ ଓ ଶରତର ମତଭେଦ ହୋଇଛି। ବାଣୀ କଥା କଥାକେ ଶରତକୁ ଅପମାନିତ କରିଛି। ଏପରି କି ଶରତର ସମ୍ପର୍କୀୟ ଭାଇ ଉତ୍ତମ ଶରତ ଘରେ ରହି ପାଠପଢ଼ିବା ରାସବିହାରୀଙ୍କୁ ଭଲ ଲାଗିନାହିଁ। ଲଳିତା ଦେବୀ ବାରମ୍ବାର ମାଧବୀକୁ ଭର୍ତ୍ସନା କରିବା ଦେଖି ଉତ୍ତମ ନିଜ ଅଜାଣତରେ ମାଧବୀ ପ୍ରତି ଅନୁରାଗୀ ହୋଇ ଉଠିଛି। ଶରତ ମାଧବୀ ସହିତ ସମ୍ପୃକ୍ତ ବୋଲି ମାଧବୀ ସନ୍ଦେହ କରିବା ଭିତରେ ଉତ୍ତମ ମାଧବୀ ଘରକୁ ଯା'ଆସ କରି ତା' ପ୍ରତି ସହାନୁଭୂତିଶୀଳ ହୋଇପଡ଼ିଛି। ଯେଉଁ ଶଙ୍ଖାସିନ୍ଦୂର ପିନ୍ଧିବା ମାଧବୀ ପାଇଁ ସ୍ୱପ୍ନ ବୋଲି ବାଣୀ ତାକୁ ଅପମାନିତ କରିଥିଲା, ବାଣୀ ହାତରୁ ସେହି ଶଙ୍ଖାସିନ୍ଦୂର ପାଇଁ ମାଧବୀ ଶପଥ କରିଛି। ବିବାହିତା ଲଳିତା ଦେବୀ କିନ୍ତୁ ପବିତ୍ର ଶଙ୍ଖାସିନ୍ଦୂରର ଆଢୁଆଳରେ ନାନାଦି ଦୁଷ୍କର୍ମ କରି ସମାଜସେବିକାର ଗୌରବରେ ମଣ୍ଡିତ ହୋଇ ନିଜର ବିପର୍ଯ୍ୟସ୍ତ ପାରିବାରିକ ଜୀବନକୁ ଗୋପନ ରଖିବାର ଚେଷ୍ଟା କରିଛନ୍ତି।

ମାଧବୀ ଲଳିତା ଦେବୀଙ୍କ ଅପମାନର ପ୍ରତିଶୋଧ ନେବାକୁ ଇଚ୍ଛାକରି ନିଜକୁ ଦଣ୍ଡ ଦେଇଛି। ତା'ର ନାଚ ଦେଖିବାକୁ ସେ ଅନେକ ଯୁବକଙ୍କୁ ନିମନ୍ତ୍ରଣ କରିଛି ଓ ଅର୍ଥ ଉପାର୍ଜନ କରିବାକୁ ଚାହିଁଛି। ମାଧବୀର ଏ ଆତ୍ମହତ୍ୟାସୁଲଭ କର୍ମ ବୋଲି ଉତ୍ତମ ହୃଦୟଙ୍ଗମ କରିଛି।

ରାସବିହାରୀ ନିଜ କନ୍ୟାର ପାରିବାରିକ ଜୀବନ ସୁରକ୍ଷିତ ରଖିବା ପାଇଁ ମାଧବୀ ଘରକୁ ଯାଇଛନ୍ତି। ସେଠାରେ ତା'ର ଜନନୀ ଶକୁନ୍ତଳାଙ୍କ ଛବି ଦେଖି ସେ ବୁଝିପାରିଛନ୍ତି ଯେ ମାଧବୀ ବାରାଙ୍ଗନା ନୁହେଁ। ତାଙ୍କର ଔରସଜାତ ସନ୍ତାନ। ରାସବିହାରୀଙ୍କର ଚାରିତ୍ରିକ ତ୍ରୁଟି ହିଁ ମାଧବୀ ଜନ୍ମର ହେତୁ। ତେଣୁ ନିଜର ଚାରିତ୍ରିକ ତ୍ରୁଟି ନେଇ ସେ ଜାମାତା ଶରତଙ୍କୁ ମଧ ଚରିତ୍ରହୀନ

କହିବାକୁ ପଛାଇ ନ ଥିଲେ। ମାଧବୀକୁ ନିଜର କନ୍ୟା ବୋଲି ଜାଣିବା ପରେ ସେ ନାଟକ ପରିସରରୁ ଅନୁତପ୍ତ ହୃଦୟରେ ବିଦାୟ ନେଇଛନ୍ତି। ହସଖୁସିଆ ହାଲୁକା ସ୍ୱଭାବର ଯୁବକ ଉତ୍ତମ ମାଧବୀକୁ ବିବାହ କରି ପତ୍ନୀର ମର୍ଯ୍ୟାଦା ଦେବାକୁ ଆଗେଇ ଆସିଛି। ବାଣୀ ନିଜ ହାତରେ ଶଙ୍ଖାସିନ୍ଦୂର ପିନ୍ଧାଇ ମାଧବୀକୁ ବୋହୂ କରି ଘରକୁ ପାଛୋଟି ଆଣିଛି। ଫଳରେ ମାଧବୀର ସ୍ୱପ୍ନ ସଫଳ ହୋଇଛି। ଶରତର ବିଧବା ଜନନୀ ତୁଳସୀ ଦେବୀ ସହଜ ଭାବରେ ରାସବିହାରୀଙ୍କୁ ନିଜ ପୁଅ ଶରତର ଅଭିଭାବକତ୍ୱ ପ୍ରଦାନ କରି ତାକୁ ଦିଗ୍‌ଦର୍ଶନ ଦେବାକୁ ଅନୁରୋଧ କରନ୍ତି ମାତ୍ର ବାଣୀର ଶରତ ପ୍ରତି ସନ୍ଦେହ ସେ ସହ୍ୟ କରି ପାରନ୍ତି ନାହିଁ। ଅନୁରୂପ ଭାବରେ ଉତ୍ତମ ରାସବିହାରୀଙ୍କର ସବୁ କୂଟନୀତିକୁ ପଦାରେ ପକାଇଦିଏ। ବ୍ରହ୍ମଚାରୀ ଓ ମୁରାରୀ ଚରିତ୍ରଦ୍ୱୟ ନାଟକରେ ହାସ୍ୟରସର ଲହରୀ ସୃଷ୍ଟି କରିଛନ୍ତି। ଉଭୟ ଶିକ୍ଷିତ ମାତ୍ର ବେକାର। ତେଣୁ ସେମାନେ ଏକାଠି ହୋଇ ଗୋଟିଏ କନ୍ୟାକୁ ବିବାହ କରିବେ ଓ ତାକୁ ସୁଖରେ ରଖିପାରିବେ ବୋଲି କୁହନ୍ତି। ଏହା ଶିକ୍ଷିତ ବେକାର ସମସ୍ୟାର ଭୟାବହତା ପ୍ରତି ଦର୍ଶକର ଦୃଷ୍ଟି ଆକର୍ଷଣ କରିଥାଏ। ଯୁବସମାଜର ପ୍ରତିନିଧି ଭାବରେ ଉତ୍ତମ ସମାଜ ସଂସ୍କାରକର ଭୂମିକା ନେଇ ମାଧବୀକୁ କୁଳବଧୂର ମର୍ଯ୍ୟାଦା ଦିଏ। ପାରିବାରିକ ବୁଝାମଣା ଯେ ସମାଜିକ ଜୀବନର ପ୍ରଥମ ଆବଶ୍ୟକତା, ଏହା ନାଟ୍ୟକର 'ଶଙ୍ଖାସିନ୍ଦୂର'ରେ ଦେଖାଇବାକୁ ଚାହିଁଛନ୍ତି। ବାଣୀର ସରଳତା ନାଟକରେ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ବୃଦ୍ଧିରେ ସହାୟକ ହୋଇଛି।

'ନଷ୍ଟ ଉର୍ବଶୀ' ନାଟକ ୧୯୫୬ରେ ରଚିତ ଓ ଜନତା ରଙ୍ଗମଞ୍ଚରେ ଅଭିନୀତ ହୋଇଛି। ଶ୍ୟାମ ଚୌଧୁରୀଙ୍କ କନ୍ୟା ଉର୍ବଶୀ ଜ୍ଞାନୀନ୍ଦ୍ରଙ୍କୁ ପ୍ରଥମ ଦେଖାରେ ଭଲପାଇଛି। ଗୋଟିଏ ରାତି ପାଇଁ ଜ୍ଞାନୀନ୍ଦ୍ର ଚୌଧୁରୀଙ୍କ ପରିବାରରେ ଆଶ୍ରୟ ନେଇଥିବାରୁ ତା' ନାମରେ କଳଙ୍କ ବୋଲି ଦିଆଯାଇଛି। ଖଳନାୟକ କଣ୍ଟ୍ରାକ୍ଟର ମଦନ କୌଶଳରେ ମଣିଅପା ସାହାଯ୍ୟରେ ଉର୍ବଶୀର ବିବାହ ପ୍ରସ୍ତାବ ଭାଙ୍ଗି ଦେଇଛି ଏବଂ ପୁରାତନ ପରିଚୟର ସୂତ୍ର ଧରି ଶ୍ୟାମ ଚୌଧୁରୀଙ୍କ ଘରେ ପ୍ରବେଶ କରିପାରିଛି। ସେ ଉର୍ବଶୀ ଉପରେ ବଳାତ୍କାର କରିବାକୁ ମଧ ପଛାଇନାହିଁ। ମାତ୍ର ଅନ୍ତଃସତ୍ତ୍ୱା ଉର୍ବଶୀ ନିଜ ଦୁର୍ଭାଗ୍ୟକୁ ନେଇ ମଦନ ସହିତ ନିଜର ବିବାହ ପ୍ରସ୍ତାବ ରଖି ଅପମାନିତା ହୋଇଛି। ଉର୍ବଶୀର ନୀରବତା ଜ୍ଞାନୀନ୍ଦ୍ରଙ୍କୁ ହିଁ ଲୋକଚକ୍ଷୁରେ ନିନ୍ଦିତ କରିଛି। ଉର୍ବଶୀ ନର୍ସିଂ ଟ୍ରେନିଂ ନେଇ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରଛି ଓ ସେଠାରେ ଡାକ୍ତରୀ ଛାତ୍ର ତଥା ତା'ର ପ୍ରେମିକ ଜ୍ଞାନୀନ୍ଦ୍ରଙ୍କୁ ବିବାହ କରିଛି। ବିବାହ ରାତିରେ ଉର୍ବଶୀଠାରୁ ସବୁ କଥା ଶୁଣିବା ପରେ ଜ୍ଞାନ ତାକୁ ଛାଡ଼ି ବମ୍ବେ ପଳାଇଛି। ନିରୁଦ୍ଦିଷ୍ଟ ଖଳନାୟକ ମଦନ ସହିତ ଜ୍ଞାନର ବମ୍ବେରେ ସାକ୍ଷାତ ହୋଇଛି ଓ ମଦନ ଉର୍ବଶୀ ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କରିଦେଇଛି। ଜ୍ଞାନ ଅନୁତାପ କରି କଟକ ଫେରିବା ପାଇଁ ଇଚ୍ଛାକରି ଉର୍ବଶୀକୁ ଚିଠି ଦେଇଛି। ମଦନ କିନ୍ତୁ କୌଶଳରେ ଜ୍ଞାନର ମୁଦି ଏବଂ ଫଟୋ ହିମାଲୟାନ୍ କେମିକାଲସ୍ କମ୍ପାନୀ ତରଫରୁ ଉର୍ବଶୀ ନିକଟକୁ ପଠାଇ ଜ୍ଞାନ ପ୍ଲେଗ୍‌ରୋଗରେ ମୃତ୍ୟୁବରଣ କରିବାର ସମ୍ବାଦ ପଠାଇଦେଇଛି। ଏ ଖବର ପାଇ ଉର୍ବଶୀ ବିବ୍ରତ ହୋଇପଡ଼ିବା ସମୟରେ ମଦନ ମଣିଅପା ସାହାଯ୍ୟରେ ଦୁଇଟି ଫୁଲମାଳ

ବଦଳ କରି ତାକୁ ବିବାହ କରି ନେଇଛି। ସେଦିନ କିନ୍ତୁ ଜ୍ଞାନ କଟକରେ ପହଞ୍ଚେ ଓ ମଦନର ଖଳ ସ୍ୱରୂପ ଉଦ୍‌ଘାଟିତ ହୁଏ। ମଣିଅପା ହାତର ବନ୍ଧୁକରୁ ଗୁଳି ଫୁଟି ମଦନ ମୃତ୍ୟୁବରଣ କରେ। ଶେଷରେ ଜ୍ଞାନ ଓ ଉର୍ବଶୀଙ୍କର ମିଳନ ଘଟିଛି। ପଙ୍କଜ ଓ ଭାସ୍କର ଚରିତ୍ର ଦ୍ୱୟ ହାସ୍ୟରସ ପରିବେଷଣ ପାଇଁ ସୃଷ୍ଟି ହୋଇଛନ୍ତି। ନାରୀର ଚାରିତ୍ରିକ ଶୁଦ୍ଧତା ଉପରେ ଆଧାରିତ ଏହି ନାଟକରେ ଆମେ ଖଳନାୟକ ମଦନର ଭୋଗପ୍ରବଣତା ଦେଖି ଯେତିକି ବିସ୍ମିତ ହେଉ ବାସ୍ତବବାଦୀ ଜ୍ଞାନର ଭୀରୁତା ଓ ପଳାୟନପନ୍ଥୀ ବ୍ୟକ୍ତିତ୍ୱ ଦେଖି ସେମିତି ଆହତ ହେଉ। ପରିଣତିରେ ଦେହଠାରୁ ମନର ଶୁଦ୍ଧତା ଗୁରୁତ୍ୱ ଲାଭ କରିଛି ଓ ଉର୍ବଶୀ ପାରିବାରିକ ଜୀବନ ପାଇଁ ଉପଯୁକ୍ତ ବୋଲି ପ୍ରମାଣିତ ହୋଇଛି।

ତିନିଅଙ୍କ ବିଶିଷ୍ଟ ନାଟକ 'ପଥିକବନ୍ଧୁ' ୧୩/୫/୫୬ରେ ଅନ୍ନପୂର୍ଣ୍ଣା ବି ଗ୍ରୁପ୍‌ରେ ପ୍ରଥମେ ଅଭିନୀତ ହୋଇଥିଲା। ହୀରାକୁଦ ଶ୍ରମିକ ବସ୍ତିରେ ଥିବା ପଥିକବନ୍ଧୁ ନାମକ ହୋଟେଲ ଏହି କାହାଣୀର କେନ୍ଦ୍ରବିନ୍ଦୁ। ନବନିର୍ମିତ ହୀରାକୁଦ ପଚାଶ ଦଶକରେ ଅନେକ ଶ୍ରମଜୀବୀଙ୍କ ପରିବାରର ଭରଣପୋଷଣରେ ସହାୟକ ହୋଇଥିଲା। ବିଭିନ୍ନ ପ୍ରାନ୍ତରୁ ଆସିଥିବା ଶ୍ରମିକମାନେ ସେଠାରେ ବସ୍ତିବାସିନ୍ଦା ପାଲଟି ପରସ୍ପରର ସୁଖଦୁଃଖ ବାଣ୍ଟି ଚଳନ୍ତି। ବେଙ୍ଗମା'ର ଝିଅ କାଞ୍ଚନ ଶ୍ରମିକ ବସ୍ତିର ହୋଟେଲ ପଥିକବନ୍ଧୁ ଚଳାଏ। ଗୁଣ୍ଡା କାଲୁ ତା'ପ୍ରତି ଅନୁରକ୍ତ। କାଲୁର କୁତ୍ସିତ ଶରୀର ଭିତରେ ଏକ ପ୍ରେମିକର ମନ ଅଛି, ମାତ୍ର ସେ କାଞ୍ଚନକୁ ଅପହରଣ କରି ବିବାହ କରିବାକୁ ଜିଦ୍ କରେ। କଣ୍ଟ୍ରାକ୍ଟର ଜୀବନ ବାବୁଙ୍କ ଭଗିନୀ ଲତା ଶିକ୍ଷିତା। ସେ ସୁନ୍ଦରକୁ ଭଲପାଏ। ଆଦର୍ଶବାଦିନୀ ଲତା ସୁନ୍ଦର ଭଳି ଆଦର୍ଶବାଦୀ ପୁଅକୁ ଭଲପାଇବା ସ୍ୱାଭାବିକ। ଲତା ସହିତ ରାଇମୋହନର ବିବାହ ସ୍ଥିର ହୁଏ, ମାତ୍ର ଲୁହାରଡ଼ର କଳାବଜାର କରୁଥିବା କାଲୁ ଓ ରାଇମୋହନ ଉଭୟ ପୋଲିସ ଦ୍ୱାରା ଗିରଫ ହୁଅନ୍ତି। କାଞ୍ଚନ ସହିତ ତା'ର ପ୍ରେମିକ କିଶୋରର ଓ ସୁନ୍ଦର ସହିତ ଲତାର ବିବାହରେ ନାଟକ ପରିଣତିରେ ପହଞ୍ଚିଯାଏ। ଛଦ୍ମବେଶୀ ସି.ଆଇ.ଡି. ଇନ୍‌ସପେକ୍ଟର ଚରିତ୍ର ନାଟକରେ ରହସ୍ୟର ସ୍ପର୍ଶ ଦେଇଛନ୍ତି। ଜୀବନ ବାବୁ ଓ ହେମମାଳା ଦେବୀ ନାଟକରେ ହାସ୍ୟରସର ଅବତାରଣା କରିଛନ୍ତି। ହୀରାକୁଦ ଭଳି ଶିଳ୍ପାଞ୍ଚଳରେ ଆଦର୍ଶବାଦୀ ମଣିଷଟି ଦୀର୍ଘଦିନ ନିଜର ନୈତିକତା ବଜାଇ ରଖିପାରନ୍ତିନାହିଁ। ନୈତିକତା କ୍ରମେ ବିପନ୍ନ ହୋଇପଡ଼େ ଓ ସ୍ୱାଧୀନତା ପରର ପ୍ରାଥମିକ ପର୍ଯ୍ୟାୟର ଦୁର୍ନୀତିର ଚିତ୍ର ନାଟକରେ ସ୍ପଷ୍ଟ ହୋଇ ଦିଶେ।

'ଅଭାଗିନୀର ସ୍ୱର୍ଗ' ୧୯୫୯ରେ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଦ୍ୱାରା ଅଭିନୀତ ହୋଇଥିଲା। ଶ୍ୟାମ ଚୌଧୁରୀଙ୍କ କନ୍ୟା ଗୀତା ପିତାଙ୍କ ଦାରିଦ୍ର୍ୟ ପାଇଁ ବିବାହ କରିପାରିନାହିଁ। ତେଣୁ ସେ ପିତାଙ୍କର ନିରାପଦ ଆଶ୍ରୟ ଛାଡ଼ି ପ୍ରେମିକର ହାତ ଧରି ଘରୁ ବାହାରି ଆସିଥିଲା। ଘରୁ ଚାଲିଯିବା ପରେ ସେ ଅନେକଙ୍କର ସନ୍ଦେହର ଶିକାର ହୋଇଛି। କଳଙ୍କିନୀ ବୋଲି ତାକୁ ଉପହସିତ ହେବାକୁ ପଡ଼ିଛି। ଶ୍ୟାମ ବାବୁଙ୍କ ପରିବାରର ବନ୍ଧୁ ରାଜୁ ଗୀତାକୁ ବୁଝାଇ ନିଜ ଘରକୁ ନେଇଯାଇଛି। ତା'ର ପତ୍ନୀ ଶାନ୍ତି ଓ ନିଷ୍ଠାବତୀ ବିଧବା ଅପା ରାଜୁ ସହିତ ଗୀତାର ମିଳାମିଶାକୁ ସନ୍ଦେହ କରିବସନ୍ତି। ମନୋଜ ଓ ମଦନ ନାମକ ଦୁଇ ବନ୍ଧୁ ରାଜୁ ଘରେ ଗୀତାକୁ ଦେଖି ମୁଗ୍ଧ ହୋଇଛନ୍ତି।

ଅପା ଓ ଶାନ୍ତି କୌଣସିମତେ ଗୀତାଠାରୁ ରକ୍ଷା ପାଇବା ପାଇଁ ଏକ ଅପଦାର୍ଥ ଯୁବକ ହାତରେ ତାକୁ ଛନ୍ଦିଦେବାକୁ ଠିକ୍ କରିଛନ୍ତି । ମଦନର କ୍ରୁର ଇଙ୍ଗିତରେ ଗୀତା ରାଜୁର ଘର ଛାଡ଼ିବାକୁ ବାଧ ହୋଇଛି । ଏହି ଅପମାନ ସହି ନ ପାରି ପିତା ଶ୍ୟାମ ଚୌଧୁରୀ ମୃତ୍ୟୁବରଣ କରିଛନ୍ତି । ମଦନ ଗୀତାକୁ ନୃତ୍ୟ ସଙ୍ଗୀତ ଶିକ୍ଷା ଦେଇଛି । ଗୀତା ପାଖରେ ମନୋଜକୁ ଦେଖି ରାଜୁ ମଧ ଗୀତାକୁ ଭୁଲ୍ ବୁଝିଛି । ରାଜୁ ପରିବାରରେ ଶାନ୍ତି ଆଣିବାକୁ ହେଲେ ଗୀତାକୁ ତା'ଠାରୁ ଦୂରକୁ ଯିବା ଦରକାର ବୋଲି ମଦନ ରାଜୁକୁ ବୁଝାଇଛି । ପରିଣତିରେ ଅଭାଗିନୀ ଗୀତା ସହିତ ଶାନ୍ତି ଦେବୀ ମନୋଜକୁ ବିବାହ କରାଇଛନ୍ତି ।

ଟିକିଏ ସନ୍ଦେହ ଓ ଭୁଲ୍ ବୁଝାମଣା ପାରିବାରିକ ଜୀବନକୁ କିଭଳି ବିପନ୍ନ କରିଦିଏ 'ଅଭାଗିନୀର ସ୍ୱର୍ଗ'ରେ ତାହା ପ୍ରଦର୍ଶିତ ହୋଇଛି । ଯଦି କୌଣସି ଯୁବତୀ ପରିବାରର ବନ୍ଧନୀ ଟପିଯାଏ ସେ କିଭଳି ସମାଜର ଚକ୍ଷୁଶୂଳ ହୁଏ ତାହା ଗୀତା ଚରିତ୍ରରୁ ଜାଣିହୁଏ । 'ଶଙ୍ଖସିନ୍ଦୂର'ର ବାଣୀ ଓ ଶରତ ଭଳି ଅଭାଗିନୀର ସ୍ୱର୍ଗର ରାଜୁ ଓ ଶାନ୍ତି ପରସ୍ପରକୁ ସନ୍ଦେହ କରି କଷ୍ଟ ପାଆନ୍ତି । ସାମାନ୍ୟ ତ୍ରୁଟିପାଇଁ ନାରୀଟିଏ ଜୀବନସାରା ଅନୁତାପ କରି ମଧ କ୍ଷମା ପାଏନାହିଁ । ଏହା ଆମ ସମାଜର ଜୀବନଧାରା । ନାଟ୍ୟକାର ନିଜର ଆଦର୍ଶବାଦିତାର ପରିଚୟ ଦେଇ ଅଭାଗିନୀ ଗୀତାକୁ ସ୍ୱାମୀଘରର ସ୍ୱର୍ଗରେ ପହଞ୍ଚାଇଛନ୍ତି ।

'ଘଟକ' ଗୋପାଳ ଛୋଟରାୟଙ୍କର ହାସ୍ୟରସର ନାଟକ । ଏହା ୧୫/୧୦/୧୯୬୧ରେ ଅନ୍ନପୂର୍ଣ୍ଣା ବି'ଗ୍ରୁପ୍ ମଞ୍ଚରେ ଅଭିନୀତ ହୁଏ । ଏହା ଗୋଟିଏ ସେଟ୍‌ର ଦୁଇଅଙ୍କ ଓ ଏକକ ଦୃଶ୍ୟ ସମ୍ବଳିତ ନାଟକ, ଯାହା ସେ ସମୟରେ ପରୀକ୍ଷାମୂଳକ ଭାବରେ କରାଯାଇଥିଲା । ନିରୋଳା ହାସ୍ୟରସର ଏହି ପୂର୍ଣ୍ଣାଙ୍ଗ ନାଟକଟିକୁ ଦର୍ଶକମାନେ ଗ୍ରହଣ କରିଥିଲେ । ଏହାର କଥାବସ୍ତୁ ଖୁବ୍ ସରଳ । ଜୀବିକା ନିମନ୍ତେ ମୃଗାଙ୍କ ନାମକ ଯୁବକ ପ୍ରଜାପତି ଘଟସୂତ୍ର ଅଫିସ ଖୋଲି ବସିଛି । ସେ ସମ୍ବଲପୁରରୁ ରାଜଧାନୀ ଆସିଛି । ସୁଦୂର ବ୍ରହ୍ମପୁରରୁ ଚାକିରି ପାଇଁ ଆସି ମିତା ନାମ୍ନୀ ତରୁଣୀ ସେହି ପ୍ରଜାପତି ଘଟସୂତ୍ର ଅଫିସରେ ଚାକିରି ପାଇଛି । ବିବାହ ପ୍ରତ୍ୟାଶୀ ପ୍ରାର୍ଥୀ ପ୍ରାର୍ଥିନୀଗଣ ସେହି ଅଫିସକୁ ଆସି ନିଜ ନିଜର ପସନ୍ଦ ଅପସନ୍ଦର ତାଲିକା ପ୍ରଦାନ କରିଛନ୍ତି । ମୃଗାଙ୍କର ବାପା ମଥୁରାନନ୍ଦ ଓ ମିତାର ମାଆ ଚନ୍ଦ୍ରାବତୀଙ୍କ ଉଦ୍ୟମରେ ମୃଗାଙ୍କ ସହିତ ମିତାର ବିବାହ ସମ୍ପନ୍ନ ହୋଇଛି । ଏକାଧିକ ପ୍ରାର୍ଥୀଙ୍କର ଗହଳି ନାଟକକୁ ପ୍ରାଣବନ୍ତ କରିଛି । ସମ୍ବଲପୁରୀ, ଦକ୍ଷିଣୀ ଓ ବାଲେଶ୍ୱରୀ ଭାଷାର ସଂଳାପ ବେଶ୍ ମନୋଜ୍ଞ ପରିବେଶ ସୃଷ୍ଟି କରିଛି । ହାସ୍ୟରସର ମଧୁର ପ୍ରୟୋଗ ଏହି ନାଟକର ସ୍ୱାତନ୍ତ୍ର୍ୟ । ଜୀବନର ଅନେକ ତ୍ରୁଟିକୁ ହାସ୍ୟରସ ସହନୀୟ କରିପାରେ । ଶିକ୍ଷିତ ଯୁବକ ଯୁବତୀ ଚାକିରି ପାଇଁ ବ୍ୟାକୁଳ ହୁଅନ୍ତି । ବିବାହ ବୟସରେ ବିବାହ କରି ନ ପାରି ଘଟସୂତ୍ର ଅଫିସ ଉପରେ ଭରସା କରନ୍ତି । ଶେଷରେ ନିଜେ ସେହି ଘଟସୂତ୍ର ଅଫିସ ପାଇଁ ପରିଣୟ ସୂତ୍ରରେ ଆବଦ୍ଧ ହୁଅନ୍ତି ।

'ସାଧନା' ୧୯୬୪ ମସିହାରେ ରଚିତ ଓ ଜନତା ରଙ୍ଗମଞ୍ଚରେ ଅଭିନୀତ ହୋଇଛି । ୧୯୬୪ରେ ଚୀନ ଆକ୍ରମଣର ପୃଷ୍ଠଭୂମିରେ ଏହା ରଚିତ । ୧୯୬୨ ମସିହା ଅକ୍ଟୋବରରୁ

୧୯୬୩ ମସିହା ମାର୍ଚ୍ଚ ମାସ ମଧ୍ୟରେ ଏହାର କଥାବସ୍ତୁ ଗତିଶୀଳ । ସାଧନା ମେଜର ଦାସଙ୍କର ଏକମାତ୍ର କନ୍ୟା । ତା'ର କିଶୋର ସହିତ ବିବାହ ଠିକ୍ ହୋଇଛି । କିଶୋର Defence Serviceରେ ଯୋଗ ଦେବାକୁ ମନୋନୀତ ହୋଇ ମଧ୍ୟ ଯୋଗ ଦେବାକୁ ଭୟ କରିଛି । ସାଧନାର ପ୍ରେରଣାରେ ସେ ନିଜର ନିଷ୍ପତ୍ତି ବଦଳାଇଦିଏ । ପିତା ମେଜର ଦାସ କିଶୋରର ପରିବର୍ତ୍ତିତ ମନୋଭାବ ଦେଖି ଆନନ୍ଦିତ ମାତ୍ର ଜନନୀ ମନୋରମା ଏହା ଦ୍ୱାରା ବେଶ୍ ଆହତ ହୁଅନ୍ତି । କିଶୋରର ବିଧବା ଜନନୀ ତୁଳସୀ ଓ ମାମୁ ଚୌଧୁରୀ ମଧ୍ୟ ଏକଥାଟିକୁ ଗ୍ରହଣ କରିପାରନ୍ତିନାହିଁ । ସେମାନେ କିଶୋର ସହିତ ଇନ୍ଦୁ ନାମ୍ନୀ ତରୁଣୀର ବିଭାଘର ଠିକ୍ କରିଦିଅନ୍ତି । ତୁଳସୀଙ୍କ ଅସୁସ୍ଥତା ସମ୍ବାଦ ପାଇ କିଶୋର କ୍ୟାମ୍ପରୁ ଫେରେ ଓ ତା'ର ଇନ୍ଦୁ ସହିତ ସାକ୍ଷାତ ମଧ୍ୟ କରାଇଦିଆହୁଏ । କିଶୋର କ୍ୟାମ୍ପକୁ ଫେରିବା ପରେ ଅଫିସର ଗୁରୁତ୍ୱପୂର୍ଣ୍ଣ ଦଲିଲ ଚୋରି ହୋଇଯାଏ ଓ କିଶୋରକୁ ଦୋଷୀ ସାବ୍ୟସ୍ତ କରାଯାଏ । କିଶୋର ଅନ୍ୟ ଜଣେ ଯୁବକ କମଲକୁ ସନ୍ଦେହ କରେ । କମଲ କିଶୋରକୁ ଗୁଳି କରି ପଳାଇଯାଏ । କଲିକତା ଡାକ୍ତରଖାନାରେ କିଶୋର ଗୋଡ଼ରେ ଅସ୍ତ୍ରୋପଚାର କରାଯାଇ ତା'ର ଗୋଟିଏ ଗୋଡ଼ କାଟିଦିଆଯାଏ । ବନ୍ଧୁ ମେନନ୍‌ର ଚିଠି ମିଳିବା ପରେ କିଶୋର ଯେ ନିର୍ଦ୍ଦୋଷ ତାହା ଜଣାପଡ଼େ । ପତ୍ନୀଙ୍କ ଇଚ୍ଛା ବିରୁଦ୍ଧରେ ମେଜର ଦାସ ସାଧନାକୁ କିଶୋରର ଦାୟିତ୍ୱ ଗ୍ରହଣ କରିବାକୁ ଅନୁମତି ଦିଅନ୍ତି । ସାଧନା ତ୍ୟାଗର ପରାକାଷ୍ଠା ଦେଖାଇ କିଶୋରର ଦାୟିତ୍ୱ ଗ୍ରହଣ କରେ । ଉଭୟଙ୍କର ବିବାହର ସୂଚନାରେ ନାଟକ ଶେଷ ହୁଏ । ପଙ୍ଗୁ କିଶୋରର ଅବଲମ୍ବନ ହେବାକୁ ଆଗ୍ରହରେ ସମ୍ମତି ଦେଇଥିବା ସାଧନା ପାଇଁ ପ୍ରେମର ଅନ୍ୟ ନାମ ତ୍ୟାଗ ତଥା ସାଧନା ପାଲଟିଯାଇଛି । ଚୀନ୍ ଆକ୍ରମଣ ସମୟରେ ସାଧନା ଭଳି ତରୁଣୀମାନେ କିଭଳି ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରି ଦେଶ ପ୍ରୀତ ପାଇଁ ଜୀବନ ଉତ୍ସର୍ଗ କରୁଥିଲେ 'ସାଧନା'ରେ ଗୋପାଳ ବାବୁ ତାହା ପ୍ରଦର୍ଶିତ କରିଛନ୍ତି । ଦେଶପ୍ରେମର ପ୍ରଚାର ଏହି ନାଟକ ରଚନାର ଅନୁପ୍ରେରକ ସତ୍ୟ ମାତ୍ର ଛୋଟରାୟଙ୍କର ବିଷୟ ପରିକଳ୍ପନା, ଦ୍ୱନ୍ଦ୍ୱ ଓ ସଙ୍ଗୀତ 'ସାଧନା'କୁ କଳାତ୍ମକ ଦୃଷ୍ଟିରୁ ସଫଳ କରିପାରିଛି । ନାରୀର ତ୍ୟାଗ ଯେ ପୁରୁଷକୁ ମହାପୁରୁଷ କରିପାରେ 'ସାଧନା'ରେ ନାଟ୍ୟକାର ତାହା ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ।

'ଦଳବେହେରା' ୧୯୬୬ରେ ରଚିତ ଐତିହାସିକ ନାଟକ । ସତ୍ୟ, ମିଥ୍ୟା, ଅନୁମାନ ଓ ପ୍ରମାଣକୁ ଅବଲମ୍ବନ କରି ରଚିତ ଏହି ନାଟକରେ ତାପଙ୍ଗଗଡ଼ର ଦଳବେହେରାଙ୍କ ଚରିତ୍ରର ନ୍ୟାୟପରାୟଣତା ଓ ସାଧୁତାର ଚିତ୍ରଣ କରାଯାଇଛି । ତାପଙ୍ଗର ଦଳବେହେରା ଦିନେ ପ୍ରବଳ ପ୍ରତାପୀ ବ୍ରିଟିଶ ରାଜଶକ୍ତି ବିରୁଦ୍ଧରେ ବିପ୍ଳବ କରିପାରିଥିଲେ । ମାଧବ ଦଳବେହେରା ଫିରିଙ୍ଗି ଶାସକକୁ ଖଜଣା ଦେବାକୁ ମନା କରି ଦେବାରୁ କାହାଣୀର ଦ୍ୱନ୍ଦ୍ୱ ଆରମ୍ଭ ହୋଇଛି । ବିଦେଶୀ ସରକାର ତାପଙ୍ଗ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ପରାଜିତ ହୋଇଛନ୍ତି । ପଟ୍ଟନାୟକଙ୍କ ଷଡ଼ଯନ୍ତ୍ରରେ ଇଂରେଜମାନଙ୍କ ଦ୍ୱାରା ଗଡ଼ତାପଙ୍ଗର ଗୁପ୍ତ ଅସ୍ତ୍ରାଗାର ଧ୍ୱଂସ କରିଦିଆ ହୋଇଛି । ତାପଙ୍ଗର ପତନ ଘଟିଛି । ଦଳବେହେରା ଆତ୍ମଗୋପନ କରିଛନ୍ତି । ଜଣେ କୈବର୍ତ୍ତକୁ ସାହାଯ୍ୟ

କରିବାକୁ ଯାଇ ସେ ନିଜେ ଇଂରେଜମାନଙ୍କ ହାତରେ ଧରା ଦେଇଛନ୍ତି। ତାଙ୍କୁ ଧରିବା ପାଇଁ ଯେଉଁ ପୁରସ୍କାର ଘୋଷିତ ହୋଇଥିଲା ତାହା ସମ୍ବଳହୀନ କୈବର୍ତ୍ତଙ୍କୁ ଦିଆଯାଉ ବୋଲି ସେ ଇଂରେଜମାନଙ୍କୁ ନିବେଦନ କରିଛନ୍ତି। ଦଳବେହେରାଙ୍କ ତ୍ୟାଗ ଓ ମାନବିକତା ପାଖରେ ଇଂରେଜ ରାଜ ଶକ୍ତି ସତେ ଯେପରି ନିଷ୍ପ୍ରଭ ହୋଇଯାଇଛି। ନାଟକରେ ଚିନ୍ତାମଣି, ଗୋବର୍ଦ୍ଧନ, ଅବଧୂତ ଓ ହାରାମଣିଙ୍କ ଭଳି ଚରିତ୍ର ଦେଶପ୍ରେମର ଔଜଲ୍ୟରେ ଝଟକି ଉଠିଛନ୍ତି। ହାରାମଣି ଓ ଇନ୍ଦୁମତି ଚରିତ୍ରଦ୍ୱୟ ବିକଶିତ ହୋଇପାରିନାହାନ୍ତି। ତଥାପି କିମ୍ବଦନ୍ତୀ ଆଶ୍ରୟୀ ଏହି ନାଟକରେ ତ୍ୟାଗ ଓ ଦେଶପ୍ରେମ୍ ସହିତ ଉଦାରମାନବିକତାର ଅନୁପମ ସମନ୍ୱୟ ଦୃଷ୍ଟିଗୋଚର ହୋଇଥାଏ।

ଗୋପାଳ ଛୋଟରାୟ ଅଧିକ ମଞ୍ଚ ଉପଯୋଗୀ ନାଟକ ଲେଖିବାର ସୁଯୋଗ ପାଇ ନାହାନ୍ତି। ଯେଉଁ କେତୋଟି ମଞ୍ଚନାଟକ ସେ ଲେଖିଛନ୍ତି ସେଥି ମଧ୍ୟରୁ 'ପଦ୍ମାଳୟ' ଏକ ରହସ୍ୟମୂଳକ ନାଟକ, ଯାହା କୌଣସି ଏକ ଇଂରାଜୀ ଗଳ୍ପର ଛାୟାରେ ରଚିତ। ଏହି 'ପଦ୍ମାଳୟ' ଏକ କ୍ଲବ ଯାହାର ଦାୟିତ୍ୱରେ ପଦ୍ମା ନାମ୍ନୀ ସୁନ୍ଦରୀ ଆଧୁନିକା ଯୁବତୀ ରହିଛି। ସହପାଠୀ ବିଜୟ ଓ ଶଙ୍କର ସେ କ୍ଲବକୁ ଆସିଛନ୍ତି। ବିଜୟ ପାଇଁ ଟଙ୍କା ରୋଜଗାର ବଡ଼ କଥା ନୁହେଁ। ଜୀବନ ପାଇଁ ସେ Speed ଓ Thrill ଚାହେଁ। 'ଶଙ୍କର ଏଣ୍ଡ କୋ'ର ମାଲିକ ଶଙ୍କର ଇମ୍‌ପୋର୍ଟ ଏକ୍‌ସପୋର୍ଟ ଖବର ବୁଝେ। ବିଜୟ ଓ ସେ ସାଙ୍ଗ ହୋଇ କୌଣସି ଉପାୟରେ ଧନୀ ହେବାକୁ ଚାହାନ୍ତି। ଝଡ଼ବର୍ଷାରେ ବିଜୟର ଗୁଳିରେ ପଟ୍ଟନାୟକ ବାବୁ ମୃତ, ମାତ୍ର ବିଜୟ ତାଙ୍କର ଉଣେଇଶି ବର୍ଷର ଝିଅ କେତକୀ ମୁହଁକୁ ଚାହିଁ ତାକୁ ଗୁଳି କରିପାରିନାହିଁ। ଶଙ୍କର ସିଂହଳରେ ଥିଲା ବେଳେ Experiment ପାଇଁ ନିଜ ପ୍ରେମିକାକୁ ଗୁଳି କରି ହତ୍ୟା କରିଛି। ବିଜୟ ଓ ଶଙ୍କର କେତକୀକୁ ଏକ ପରିତ୍ୟକ୍ତ କୋଠାରେ ନଜରବନ୍ଦୀ କରି ରଖିଛନ୍ତି, ଯେଉଁଠୁ କେତକୀ କୌଶଳରେ ଖସିଆସିଛି। ପାଇକ ନାଚ ମାଧ୍ୟମରେ ନିଜର ବୀରତ୍ୱ ଦେଖାଉଥିବା ବିଜୟ ଶଙ୍କରକୁ ହତ୍ୟା କରିଛି ଓ ପୋଲିସ ହାତରେ ଧରାପଡ଼ିଛି। ସେ ପଦ୍ମାକୁ ମଧ୍ୟ ଗୁଳି କରିଛି। କେତକୀକୁ ବନ୍ଦୀ ଅବସ୍ଥାରୁ ମୁକ୍ତ କରିଥିବା ସୁର ବାବୁଙ୍କୁ ଶୁଭେଚ୍ଛା ଜଣାଇ ସେ ନିର୍ବିକାର ଭାବେ ଜେଲ୍ ଯାଇଛି। ନାଟ୍ୟକାର ଛୋଟରାୟ ଓଡ଼ିଶାର ପାରିବାରିକ ଜୀବନର ମୁଗ୍ଧ ରୂପକାର। ରହସ୍ୟ ରୋମାଞ୍ଚ ଲେଖିବାକୁ ଯାଇ ସେ ବେଶ୍ ଅସୁବିଧାରେ ପଡ଼ିଛନ୍ତି। ତେଣୁ କ୍ଷୁଦ୍ରାବୟବ ଏହି ନାଟକ ପରିସରରେ ତିନୋଟି ଇଚ୍ଛାକୃତ ହତ୍ୟାକାଣ୍ଡ ଘଟିଛି। ଗୋପାଳ ଛୋଟରାୟଙ୍କର 'ଶଙ୍କର ଏଣ୍ଡ କୋ' ନାଟକଟିର କଥାବସ୍ତୁ ଓ 'ପଦ୍ମାଳୟ'ର କଥାବସ୍ତୁ ପ୍ରାୟ ସମାନ। ପଦ୍ମା ବିଜୟକୁ ଭଲପାଇଛି ଓ ଟଙ୍କା ସୁନା ଧରି ପଳାଇବାର ଲାଳସା ମଧ୍ୟ ତାକୁ ଦେଇଛି। ମାତ୍ର ବିଜୟ କେତକୀକୁ ହିଁ ଶ୍ରଦ୍ଧା କରେ। ପଦ୍ମା ହୋଇପାରେ ସୁନ୍ଦରୀ, ବିଚକ୍ଷଣା ବୁଦ୍ଧିମତୀ କିନ୍ତୁ ପାରିବାରିକ ଜୀବନ ପାଇଁ ହୁଏତ ଲେଖକ ତାକୁ ଉପଯୁକ୍ତ ମଣି ନାହାନ୍ତି।

ଗୋପାଳ ଛୋଟରାୟଙ୍କ ରଚିତ ନାଟକଗୁଡ଼ିକରେ ସବୁଠାରୁ ବଳିଷ୍ଠ ଦିଗ ହେଉଛି ପଚାଶ ଓ ଷାଠିଏ ଦଶକର ଓଡ଼ିଶାର ସାମାଜିକ ସମସ୍ୟାର ଉତ୍‌ଥାପନ।

ପ୍ରଥମେ ଦେଖିବା ରାଜନୀତିକ ସମସ୍ୟା କଥା। 'ପରକଲମ'ରେ ଦଳୀୟ ରାଜନୀତିର

ଦୁର୍ବଳ ଦିଗଟି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରାଯାଇଛି। ଭୋଟ ପ୍ରଚାର ସମୟରେ ଘର ଘର ବୁଲୁଥିବା ଲୋକପ୍ରତିନିଧିମାନେ ପରବର୍ତ୍ତୀ ସମୟରେ ନିଜ ନିଜ ସ୍ୱାର୍ଥ ବଳୟରେ ବାନ୍ଧି ହୋଇଯାଆନ୍ତି ଓ ଦେଶ ପାଇଁ କୌଣସି ଉତ୍ତର ଦାୟିତ୍ୱ ଗ୍ରହଣ କରନ୍ତି ନାହିଁ। ଦେଶର ପ୍ରଗତି ବ୍ୟାହତ ହୁଏ ସତ ମାତ୍ର ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ସୁରକ୍ଷିତ ରହେ।

ସାମାଜିକ ସମସ୍ୟା ଭିତରେ ସହର ମଫସଲର ଦ୍ୱନ୍ଦ୍ୱ ପ୍ରଥମେ ଦୃଷ୍ଟି ଆକର୍ଷଣ କରିଥାଏ। 'ଫେରିଆ'ରେ ଗାଁକୁ ଫେରି ଗାନ୍ଧିନୀତି ଅନୁସରଣ କରିବାକୁ ସେ ଅହ୍ୱାନ ଦେଇଛନ୍ତି। 'ଭରସା'ରେ କଟକରୁ ନାୟକ ମୋହନ କଲିକତା ଯାଇଛି। 'ନଷ୍ଟ ଉର୍ବଶୀ'ର ଜ୍ଞାନୀନ୍ଦ୍ର ବମ୍ବେ ଚାଲିଯାଇଛି ନିଜ ସମସ୍ୟାରୁ ମୁକ୍ତି ପାଇବା ପାଇଁ। ମାତ୍ର କଟକ ହିଁ ତାଙ୍କର ଅଧିକାଂଶ ନାଟକର ମୁଖ୍ୟ ଅଭିନୟ ସ୍ଥଳ ଯେଉଁଠି ନଗରର ଚଳଣି ସହିତ ଗ୍ରାମ୍ୟ ମନ ଏକତ୍ର ସହାବସ୍ଥାନ କରିପାରନ୍ତି। 'ଶଙ୍ଖାସିନ୍ଦୂର'ରେ ଗ୍ରାମ୍ୟ ତରୁଣୀ ବାଣୀ ନିଜର ସରଳତା ନେଇ ପତି ଶରତଙ୍କୁ ସନ୍ଦେହ କରିଛି। ଗ୍ରାମର ବିଧବା ତୁଳସୀ ଦେବୀ ନିଜ ପୁଅ ଶରତର ଅଭିଭାବକ ଭାବରେ ସମୁଦି ରାସବିହାରୀଙ୍କୁ ଗ୍ରହଣ କରି ନେଇଛନ୍ତି।

ଶିକ୍ଷିତ ବେକାର ସମସ୍ୟା ସେ ଗ୍ରହଣ କରିଥିବା ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ବିଷୟ। 'ଭରସା'ର ମୋହନ ଯଦି ଚାକିରି ପାଇଥାଆନ୍ତା ହୁଏତ ସେ ନୀଳାକୁ ବିବାହ କରିବାକୁ ପଛାଇ ନ ଥାନ୍ତା। 'ଶଙ୍ଖାସିନ୍ଦୂର'ର ମୁରାରୀ ଓ ବ୍ରହ୍ମଚାରୀଙ୍କ କଣ୍ଠରେ ''ମନ ନିର୍ମଳ ହୃଦୟ ଖୋଲା ପକେଟ ଖାଲି'' ଭଳି ସଂଳାପ ଦେଇ ନାଟ୍ୟକାର ସେମାନଙ୍କର ଆପାତଃ ହାସ୍ୟକର ସଂଳାପ ଭିତରେ ଲୁଚିଥିବା ଦୈନ୍ୟ ଓ କାରୁଣ୍ୟକୁ ଦର୍ଶକ ନିକଟରେ ପରିବେଷଣ କରିଛନ୍ତି। 'ଘଟକ'ର ମୃଗାଙ୍କ ଚାକରି ନ ପାଇ ପ୍ରଜାପତି ଘଟସୂତ୍ର ଅଫିସ କରେ ଓ ତରୁଣୀ ମିତା ସେଠାରେ ଚାକରି କରେ। 'ସାଧନା'ର କିଶୋର ଦେଶରକ୍ଷା ବିଭାଗରେ ଚାକିରି ପାଇ ମଧ୍ୟ ସେଠାରେ ଯୋଗ ଦେବାକୁ ଭୟ କରେ। ଓଡ଼ିଶାର ଯୁବକମାନଙ୍କ ମଧ୍ୟରେ ଦେଶରକ୍ଷାକୁ ନେଇ ଯେଉଁ ଭୟ ଓ ଆଶଂକା ତାହା କିଶୋର ଚରିତ୍ର ମଧ୍ୟରେ ରୂପାୟିତ ହୋଇଛି।

ନାରୀଶିକ୍ଷା ଓ ନାରୀସମସ୍ୟାକୁ ମଧ୍ୟ ନାଟ୍ୟକାର ଖୁବ୍ ଗୁରୁତ୍ୱର ସହିତ ଚିତ୍ରଣ କରିଛନ୍ତି। 'ଭରସା'ର ନୀଳା ପାରମ୍ପରିକ ମହାରଣା ପରିବାରର କନ୍ୟା ମାତ୍ର ସେ ଶିକ୍ଷିତା। ତେଣୁ ଅର୍ଥ ଉପାର୍ଜନ କରିବା ପାଇଁ ସେ ଶ୍ରୀମତୀ ଦାସ କରିଥିବା ସାକ୍ଷାତକାରରେ ଯୋଗ ଦେଇ ସଫଳ ହୋଇଛି ଓ ଗୃହ ଶିକ୍ଷୟିତ୍ରୀ ଚାକିରି କରିବା ପାଇଁ କଲିକତା ଯିବାକୁ ସାହସ କରିଛି। 'ଶଙ୍ଖାସିନ୍ଦୂର'ର ମାଧବୀ ଶିକ୍ଷିତା 'ସାଧନା'ର ସାଧନା ଓ 'ଘଟକ'ର ମିତା ମଧ୍ୟ ଶିକ୍ଷା ଲାଭ କରିଛନ୍ତି। 'ପଥିକବନ୍ଧୁ'ରେ କାଞ୍ଚନ ସ୍ୱଳ୍ପଶିକ୍ଷିତା ହୋଇ ମଧ୍ୟ ହୋଟେଲ ବ୍ୟବସାୟ କରିଛି। କିନ୍ତୁ ଶିକ୍ଷିତା ନାରୀ ସମାଜର ଲକ୍ଷ୍ମଣଗାର ଡେଇଁବାର ସାହସ କରିପାରିନାହିଁ। ନୀଳା ବେଦୀରୁ ଉଠିଆସିବା ଦ୍ୱାରା ତା' ବାପା ମଧୁ ମହାରଣା ଅପମାନିତ ହୋଇଛନ୍ତି। 'ନଷ୍ଟ ଉର୍ବଶୀ'ର ଉର୍ବଶୀ ଗୋଟିଏ ରାତି ପାଇଁ ଜ୍ଞାନୀନ୍ଦ୍ରଙ୍କ ଘରେ ରହିଥିବାରୁ ତାକୁ ଅନେକ ଲାଞ୍ଛନା ସହିବାକୁ ପଡ଼ିଛି। କିନ୍ତୁ 'ଭରସା'ର ଶ୍ରୀମତୀ ଦାସ, 'ନଷ୍ଟ ଉର୍ବଶୀ'ର ମଣିଅପା ଓ 'ଶଙ୍ଖାସିନ୍ଦୂର'ର ଲଳିତା ଦେବୀଙ୍କ ଭଳି ଚରିତ୍ର ସ୍ୱେଚ୍ଛାଚାରିଣୀ। ସେମାନେ ନାଟକର

ଗତିପଥକୁ ଦ୍ୱନ୍ଦ୍ୱଶଂକୁଳ କରିଛନ୍ତି । ଛୋଟରାୟ ମହାଶୟ ସେମାନଙ୍କ ଚରିତ୍ର ଚିତ୍ରଣରେ ବେଶ୍ କୂର ହୋଇଛନ୍ତି ବୋଲି କୁହାଯାଇପାରେ । 'ଅଭାଗିନୀର ସ୍ୱର୍ଗ'ର ଶାନ୍ତିକୁ ନାଟ୍ୟକାର ତା'ର ପରିବାର ରୂପକ ସ୍ୱର୍ଗରେ ପହଞ୍ଚାଇ ନିଜର ପରମ୍ପରା ପ୍ରତି ଅନୁରକ୍ତିର ପରିଚୟ ଦେଇଛନ୍ତି ।

କେତେକ ସ୍ଥଳରେ ଛୋଟରାୟ ମହାଶୟ ନାରୀର ମହାନୀୟତା ପ୍ରକାଶ ପାଇଁ ପରିବେଶ ସୃଷ୍ଟି କରିଛନ୍ତି । ଯେମିତି 'ଶଙ୍ଖାସିନ୍ଦୂର'ର ଶକୁନ୍ତଳା ବାଈଙ୍କ କନ୍ୟା ମାଧବୀ । ପଙ୍କରୁ ଜନ୍ମ ହୋଇ ମଧ୍ୟ ପଙ୍କଜ ତୁଲ୍ୟ ତା'ର ବ୍ୟକ୍ତିତ୍ୱ ବିକଶିତ ହୋଇଛି ।

ମନସ୍ତାତ୍ତ୍ୱିକ ଚିତ୍ରଣରେ ମଧ୍ୟ ସେ ଖୁବ୍ ଦକ୍ଷତା ପ୍ରଦର୍ଶନ କରିଛନ୍ତି । 'ଶଙ୍ଖାସିନ୍ଦୂର'ର ରାସବିହାରୀ ବୟସ୍କ ମାତ୍ର ସେ ସନ୍ଦେହୀ । ନିଜର ଅତୀତର ଛାଇ ସେ ନିଜ ଜ୍ୱାଇଁଙ୍କ ଚରିତ୍ରରେ ଖୋଜି ବସନ୍ତି, ଫଳରେ ଝିଅର ବୈବାହିକ ଜୀବନରେ ଝଡ଼ ଉଠେ । ପିତାଙ୍କର ନିରାପଦ ଆଶ୍ରୟ ଛାଡ଼ି 'ଅଭାଗିନୀର ସ୍ୱର୍ଗ'ର ଗୀତା ପଦାକୁ ଗୋଡ଼ କାଢ଼େ ସତ ମାତ୍ର ସମାଜର କୌଣସି ଶକ୍ତି ତାକୁ ପିତୃଗୃହର ସମ୍ମାନ ଓ ସୁରକ୍ଷା ଦେଇପାରନ୍ତିନାହିଁ ।

ହାସ୍ୟରସ ପରିବେଷଣ ଗୋପାଳ ଛୋଟରାୟଙ୍କ ନାଟକରେ ଅନ୍ୟତମ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ସାଧାରଣ ମଣିଷଙ୍କର ଛୋଟ ବଡ଼ ତ୍ରୁଟିକୁ ସହଜ ଭାବରେ ପ୍ରକାଶ କରିବାରେ ତାଙ୍କର ସିଦ୍ଧି ଅନସ୍ୱୀକାର୍ଯ୍ୟ । 'ଶଙ୍ଖାସିନ୍ଦୂର'ର ମୁରାରୀ ଓ ବ୍ରହ୍ମଚାରୀ ଭଳି ଚରିତ୍ରମାନେ ହାସ୍ୟରସ ସୃଷ୍ଟି କରିବାରେ ସଫଳ । ସେମାନଙ୍କର ସଂଳାପରେ ମଧ୍ୟ ଅତି ସନ୍ତର୍ପଣରେ ଗୋଟିଏ ଗୋଟିଏ କଥାକୁ ବରମ୍ବାର କୁହାଯାଇ ହାସ୍ୟବ୍ୟଙ୍ଗ ସୃଷ୍ଟିର ପ୍ରୟାସ କରାଯାଇଛି । 'ଘଟକ'ର ପ୍ରତ୍ୟେକ ଚରିତ୍ର ନିଜ ଅଜାଣତରେ ଭାଷା ଓ ଭାବଭଙ୍ଗୀରେ ହାସ୍ୟ ସୃଷ୍ଟି କରିଛନ୍ତି ।

ତାଙ୍କର ହାସ୍ୟରସ ସୃଷ୍ଟିରେ ଅପୂର୍ବ ଦକ୍ଷତା ଥିଲା । ସ୍ନିଗ୍ଧ ସରସ ହାସ୍ୟ ସୃଷ୍ଟି ମାଧ୍ୟମରେ ସେ ସାଧାରଣ ଚରିତ୍ରମାନଙ୍କର ତ୍ରୁଟି ପ୍ରଦର୍ଶନ କରିଥିଲେ ଓ ସେମାନଙ୍କୁ ସୁଧାରିବାର ପ୍ରୟାସ ମଧ୍ୟ କରିଥିଲେ । ତେଣୁ ଏଗୁଡ଼ିକର ସ୍ୱର ବ୍ୟଙ୍ଗର ସ୍ୱର ଭଳି ତୀବ୍ର ନ ଥିଲା ବରଂ ତହିଁରେ ଥିଲା ଆଶ୍ୱାସନାର ଶୀତଳ ସ୍ପର୍ଶ । 'ହାସ୍ୟରସର ନାଟକ' ଶୀର୍ଷକ ଏକାଙ୍କୀ ସଂକଳନ ପାଇଁ ଗୋପାଳ ଛୋଟରାୟ ମର୍ଯ୍ୟାଦାଜନକ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବା କେବଳ ନାଟ୍ୟକାରଙ୍କ ପାଇଁ ନୁହେଁ ବରଂ ହାସ୍ୟରସର ସୃଷ୍ଟିକୁ ଗୌରବାନ୍ୱିତ କରିପାରିଛି ।

କେବଳ ହାସ୍ୟରସ ନୁହେଁ, ତାଙ୍କର ଚରିତ୍ରମାନେ ମୂଲ୍ୟବୋଧକୁ ଜାବୁଡ଼ି ଧରି ବହୁତ ଦୁଃଖ ମଧ୍ୟ ପାଇଛନ୍ତି । 'ଭରସା'ର ନୀଳା ଓ ମୀର୍ଣ୍ଣା ଏହି ଧରଣର ଚରିତ୍ର । ପ୍ରେମର ଗୁରୁତ୍ୱ ଉପଲବ୍ଧି ପାଇଁ ଜଣେ ଘର ଛାଡ଼ିଛି ଓ ଆଉ ଜଣେ ପତି ସୁହାଗିନୀ ନ ହୋଇପାରି ମଧ୍ୟ ପାଗଳ ପିତାଙ୍କ ଦାୟିତ୍ୱ ନେଇ ବଞ୍ଚିବାର ସଂଗ୍ରାମ ଜାରିରଖିଛି । କରୁଣ ରସ ମାଧ୍ୟମରେ ଚରିତ୍ରମାନେ ପ୍ରଭାବଶାଳୀ ଢଙ୍ଗରେ ଉପସ୍ଥାପିତ ହୋଇଥାଆନ୍ତି ।

ସେହିପରି ରାଜନୀତିର ପଶାପାଲିରେ ବ୍ୟକ୍ତି ଜୀବନ କିଭଳି ଅନ୍ତଃସାରଶୂନ୍ୟ ହୋଇ ଯାଉଛି ତାହା 'ଭରସା', 'ପରକଲମ' ଇତ୍ୟାଦିରେ ପ୍ରଦର୍ଶିତ ହୋଇଛି । ଅନେକ ସ୍ଥଳରେ ନାଟ୍ୟକାର ନିଜର ଚିନ୍ତାକୁ ନାୟକ ସଂଳାପରେ ଖଞ୍ଜି ନାଟକକୁ ବିଶ୍ୱାସଯୋଗ୍ୟ ମଧ୍ୟ କରାଇଛନ୍ତି ।

## ପ୍ରାଚୀନ ଗୀତିନାଟ୍ୟର ନାଟ୍ୟରୂପ ପ୍ରସ୍ତୁତି ଓ ଗୀତିନାଟ୍ୟ ରଚନା

ବେତାର ନାଟକ ସ୍ରଷ୍ଟା ଭାବରେ ଗୋପାଳ ଛୋଟରାୟ ଅଜସ୍ର ସିଦ୍ଧିର ଅଧିକାରୀ। ତାଙ୍କର ବେତାର ସହିତ ଦୀର୍ଘ ଦିନର ସମ୍ପର୍କ ଓଡ଼ିଶା ନାଟ୍ୟସାହିତ୍ୟକୁ ଋଦ୍ଧିମନ୍ତ କରିଛି। ୧୯୫୬ ମସିହା ଡିସେମ୍ବର ମାସ ୨୧ ତାରିଖରେ ସେ ଆକାଶବାଣୀରେ ଯୋଗ ଦେଇଥିଲେ। ମାତ୍ର ତା' ପୂର୍ବରୁ ସେ ବେତାର ପାଇଁ ଅସଂଖ୍ୟ ନାଟକ ଲେଖିଥିଲେ। ଅନେକ ଇଂରାଜୀ ଓ ବଙ୍ଗଳା ନାଟକର ଅନୁବାଦ କରି ସେ ବେତାରରେ ପ୍ରସାର କରାଇଥିଲେ। ସେଗୁଡ଼ିକ ଗୋପାଳ ବାବୁଙ୍କର ଆତ୍ମବିଶ୍ୱାସ ବଢ଼ାଇଥିଲା।

ଆକାଶବାଣୀ ଆରମ୍ଭରେ ଯେଉଁ ନାଟକମାନ ପରିବେଷିତ ହୋଇଥିଲା, ଅଭିନେତା ଓ ନିର୍ଦ୍ଦେଶକମାନଙ୍କର ଆଶଂକା ରହୁଥିଲା ଯେ ତାହା କେହି ଶୁଣୁଛନ୍ତି କି ନାହିଁ। କାରଣ ରେଡ଼ିଓରେ ଶୁଣୁଥିବା ଶ୍ରୋତାମାନଙ୍କ ସଂଖ୍ୟା ତଥା ସେମାନଙ୍କ ଆଗ୍ରହର କଳନା କରିବା ସମ୍ଭବ ନ ଥିଲା। ମାତ୍ର ଗୋପାଳ ଛୋଟରାୟଙ୍କର ନାଟକଗୁଡ଼ିକ ଶୁଣିବା ପାଇଁ ଓଡ଼ିଶାର ଜନସାଧାରଣ ଖୁବ୍ ଆଗ୍ରହୀ ଥିଲେ। ବିଶେଷକରି, ତାଙ୍କର ଧାରାବାହିକ ନାଟକଗୁଡ଼ିକ ସପ୍ତାହର ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ସମୟରେ ପ୍ରସାର ହେବା ବେଳକୁ ପରିବାର ତଥା ପଡ଼ୋଶୀର ପିଲା ବଡ଼ ସମସ୍ତେ ଏକତ୍ରିତ ହୋଇ ରେଡ଼ିଓ ସେଟ୍ ସମ୍ମୁଖରେ ଆଗ୍ରହରେ ବସି ରହୁଥିଲେ।

ସେ ସମୟରେ ସ୍ୱତନ୍ତ୍ର ଭାବରେ ବେତାର ପାଇଁ ନାଟକ ଲେଖିବା ଆରମ୍ଭ ହୋଇ ନ ଥିଲା। ଫଳରେ ମଞ୍ଚନାଟକର ଅଂଶବିଶେଷକୁ ରେଡ଼ିଓ ଉପଯୋଗୀ କରି ପ୍ରସାର କରାଯାଉଥିଲା। ରେଡ଼ିଓ କର୍ତ୍ତୃପକ୍ଷ ଗୋପାଳ ବାବୁଙ୍କର ନାଟକ ପ୍ରତି ସମର୍ପିତ ମନୋଭାବ ଦେଖି ତାଙ୍କୁ B.B.C Radio Plays ଓ How to write Radio Play ପୁସ୍ତକ ଦୁଇଖଣ୍ଡି ଦେଇଥିଲେ। ନୂତନ ଭାବରେ ରେଡ଼ିଓ ମାଧ୍ୟମ ପାଇଁ ନାଟକ ଆବଶ୍ୟକ ହେଉଥିବାରୁ ଗୋପାଳ ବାବୁ ଅଧିକ ସଂଖ୍ୟକ ନାଟକ ରଚନା ପାଇଁ ଆଗ୍ରହୀ ହୋଇଥିଲେ। ତାଙ୍କର ସଂଳାପ ଚାତୁରୀ, କଥାବସ୍ତୁର ପ୍ରାସଙ୍ଗିକତା ଓ ଚରିତ୍ର ଚିତ୍ରଣରେ ସାବଲୀଳତା ତାଙ୍କ ନାଟକଗୁଡ଼ିକୁ ଓଡ଼ିଆ ଜନସାଧାରଣଙ୍କର ମୁଖପାତ୍ରରେ ପରିଣତ କରିପାରିଛି।

କଟକ ଆକାଶବାଣୀରେ ଯୋଗ ଦେବା ପରେ ଗୋପାଳ ଛୋଟରାୟ ନିଜ ଭିତରେ ନାଟକ ଲେଖିବାର ପ୍ରେରଣା ଅନୁଭବ କରିଥିଲେ। କାରଣ: ବାରମ୍ବାର ବିଭିନ୍ନ ସ୍ୱତନ୍ତ୍ର ଉତ୍ସବ ସମୟରେ ଆକାଶୀବାଣୀ ପାଇଁ ନାଟକ ଲେଖିବା ତାଙ୍କର ଦାୟିତ୍ୱ ଭିତରେ ସାମିଲ ହୋଇଯାଇଥିଲା। ଆକାଶବାଣୀରେ ପ୍ରାଚୀନ ଗୀତିନାଟ୍ୟର ପୁନରୁଦ୍ଧାର କରିବାର ପ୍ରେରଣା ସେ କିଭଳି ପାଇଥିଲେ, ତାହା ସେ ତାଙ୍କର ଆତ୍ମଜୀବନୀ 'ପଥିକ'ରେ ଉଲ୍ଲେଖ କରିଛନ୍ତି।

ପ୍ରାଚୀନ ଗୀତିନାଟ୍ୟର ନାଟ୍ୟରୂପ ପ୍ରସ୍ତୁତି ଗୋପାଳ ବାବୁଙ୍କ ପ୍ରତି ଏକ ଆହ୍ୱାନ ଥିଲା। ୧୯୬୦ ମସିହା ନଭେମ୍ବର ମାସର କୌଣସି ଏକ ଦିନ ପୂର୍ବାହ୍ନ ୧୦ଟା ସମୟରେ ତତ୍କାଳୀନ ଆକାଶବାଣୀ କେନ୍ଦ୍ର ନିର୍ଦ୍ଦେଶକ ପି.ଭି. କୃଷ୍ଣମୂର୍ତ୍ତିଙ୍କ ଅଧ୍ୟକ୍ଷତାରେ ସବୁଦିନ ଭଳି ମିଟିଙ୍ଗ୍ ଅନୁଷ୍ଠିତ

ହୋଉଥାଏ। ନିର୍ଦ୍ଦେଶକଙ୍କ ସହିତ ସମସ୍ତ କାର୍ଯ୍ୟକ୍ରମ ନିଷ୍ପାଦକମାନେ ସେଠାରେ ଉପସ୍ଥିତ ଥିଲେ। ସଭା ଆରମ୍ଭରେ କୃଷ୍ଣମୂର୍ତ୍ତି ସାହେବ କଟକ ଆକାଶବାଣୀ କେନ୍ଦ୍ରରେ କେଉଁ ଅପେରାସବୁ ରେକର୍ଡ଼ିଂ ଅଛି ତାହା ଜାଣିବାକୁ ଚାହିଁଲେ। କାରଣ ସେଗୁଡ଼ିକ ପଠାଇବାକୁ କେନ୍ଦ୍ର ନିର୍ଦ୍ଦେଶକଙ୍କର ଚିଠି ଆସିଥିଲା। ଦଶପନ୍ଦର ମିନିଟ୍ ସଙ୍ଗୀତ ରୂପକ ବ୍ୟତୀତ ସେ ଧରଣର କୌଣସି ଗୀତିନାଟ୍ୟର ରେକର୍ଡ଼ିଂ  କଟକ ଷ୍ଟେସନରେ ନ ଥିଲା। ତେଣୁ ସେହି ମର୍ମରେ ଦିଲ୍ଲୀକୁ ଉତ୍ତର ଦେବାର ସ୍ଥିର ହେଲା। ଗୋପାଳ ବାବୁ ଆମର ଅପେରା ଅଛି ବୋଲି କହିଥିଲେ। ତାଙ୍କ ନିଜ ଭାଷାରେ - ''x x x ହାତପାଖରେ ଚେମ୍ବର୍ସ ଡିକ୍‌ସ୍‌ନାରୀ ଥୁଆ ହୋଇଥିଲା, ଖୋଲି ସମସ୍ତଙ୍କୁ ଦେଖାଇଲି। ଅପେରାର ଇଂଲିଶ ଅର୍ଥ ଲେଖା ହେଇଚି -  ମ୍ୟୁଜିକାଲ୍ ଡ୍ରାମା। କହିଲି, ଏଇ ଦେଖନ୍ତୁ - ଏଇ ଇଂଲିଶ ଅପେରା ଶବ୍ଦଟିର ଅର୍ଥ ସେଇ ଇଂଲିଶ୍‌ରେ ହେଲା - ମ୍ୟୁଜିକାଲ ଡ୍ରାମା - ଯାହାର ସିଧାସଳଖ ଓଡ଼ିଆ ଅର୍ଥ ହେଲା - ଗୀତିନାଟ୍ୟ - ମୁଁ ସେଇକଥା କହୁଛି - ଆମର ବହୁ ଅପେରା ଅର୍ଥାତ୍ ଗୀତିନାଟ୍ୟ ରହିଚି, ଆଉ ଏଇସବୁ ଗୀତିନାଟ୍ୟର ମୁଖ୍ୟ ସ୍ରଷ୍ଟା ହେଲେ - ଆମର ଗଣକବି ବୈଷ୍ଣବ ପାଣି।'' (ପଥିକ- ପୃ- ୧୭୧) ଗଣକବିଙ୍କ ରଚନାକୁ ବେତାର କେନ୍ଦ୍ରକୁ ଆଣିଲେ ବେତାର କେନ୍ଦ୍ରର ମର୍ଯ୍ୟାଦା ରହିବ ନାହିଁ ବୋଲି ମଧ୍ୟ ଆପତ୍ତି ଉଠିଲା। ମାତ୍ର ଗୋପାଳ ବାବୁ ଦ୍ୱିଗୁଣ ଉତ୍ସାହରେ ସେ ଦାୟିତ୍ୱ ନିର୍ବାହ କରିଥିଲେ। ବହୁ ଅସୁବିଧାର ସମ୍ମୁଖୀନ ହୋଇ ୧୯୬୦ ନଭେମ୍ବର ମାସ ୧୬ ତାରିଖରେ ବୈଷ୍ଣବ ପାଣିଙ୍କର 'ରଙ୍ଗସଭା' ଗୀତାଭିନୟ କଟକ ଆକାଶବାଣୀରୁ ପ୍ରଚାରିତ ହେଲା ଓ ପ୍ରାଣକୃଷ୍ଣ ପରିଜାଙ୍କ ଭଳି ବିଶିଷ୍ଟ ବ୍ୟକ୍ତିମାନେ କୃଷ୍ଣମୂର୍ତ୍ତି ମହାଶୟଙ୍କୁ ହୃଦୟଖୋଲି ପ୍ରଶଂସା କରିଥିଲେ। ପରବର୍ତ୍ତୀ ସମୟରେ ଏକାଧିକ ପୁରାତନ ଗୀତାଭିନୟ ନାଟ୍ୟକାର ଗୋପାଳ ଛୋଟରାୟ ଆକାଶବାଣୀ ଉପଯୋଗୀ କରି ପ୍ରସାରିତ କରିଥିଲେ। ଶ୍ରୋତାଙ୍କର ଆଗ୍ରହ ଫଳରେ ସେ ପ୍ରଥମ ଗୀତିନାଟ୍ୟ ରଚନା କରିଥିଲେ ଯାହାର ନାମ ଥିଲା 'ଶ୍ରୀ ଗଣେଶ'। 'ଶ୍ରୀ ଗଣେଶ' ପ୍ରସାରିତ ହେବା ପରେ ଶତାଧିକ ପ୍ରଶଂସାସୂଚକ ପତ୍ର ଆକାଶବାଣୀକୁ ଆସିଥିଲା। ଏହି ଗୀତିନାଟ୍ୟ ରେଡ଼ିଓରୁ ଶୁଣିବା ପରେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ସାହିତ୍ୟ ଓ କଳା ସମାଲୋଚିକା ଅମିତା ମଲ୍ଲିକ ଏହାର ଉଚ୍ଚ ପ୍ରଶଂସା କରି Times of India ରବିବାର ସଂଖ୍ୟାରେ ବିସ୍ତୃତ ଆଲୋଚନା କରିଥିଲେ। ଫଳରେ ପରବର୍ତ୍ତୀ ସମୟରେ ନାଟ୍ୟକାର ଛୋଟରାୟ ଏକାଧିକ ଗୀତିନାଟ୍ୟ ନିଜେ ରଚନା କରି ପ୍ରସାରିତ କରାଇଥିଲେ।

ଗୀତିନାଟକ ହେଉଛି ସଙ୍ଗୀତମୟ ନାଟକ। ଏହାର କଥାଭୂମି ସରଳ ଓ ସୁସଂଗଠିତ। ଛନ୍ଦୋବଦ୍ଧତା ଏହାର ଅନ୍ୟତମ ବୈଶିଷ୍ଟ୍ୟ। ଏହା ବିଭିନ୍ନ ଲୋକପ୍ରିୟ ରାଗରାଗିଣୀ ସମ୍ବଳିତ, ସାଧାରଣତଃ ପୌରାଣିକ, ଐତିହାସିକ ତଥା କିମ୍ବଦନ୍ତୀମୂଳକ କଥାବସ୍ତୁକୁ ନେଇ ଏହି ଗୀତିନାଟକ ରଚିତ। ଦର୍ଶକ ପୂର୍ବପରିଚିତ ହେତୁ ଚରିତ୍ରମାନଙ୍କୁ ସହଜରେ ଗ୍ରହଣ କରିନିଅନ୍ତି। ତେଣୁ ରସାସ୍ୱାଦନ ସହିତ ପରମ୍ପରା ସହିତ ଯୋଗସୂତ୍ର ସ୍ଥାପନ ଗୀତିନାଟକର ମୂଳ ବୈଶିଷ୍ଟ୍ୟ। ୧୯୪୦ରୁ ୧୯୬୦ ପର୍ଯ୍ୟନ୍ତ ଦୀର୍ଘ କୋଡ଼ିଏ ବର୍ଷକାଳ ପାରମ୍ପରିକ ଗୀତିନାଟ୍ୟର ପ୍ରଦର୍ଶନ ଊଣା ହୋଇଥିଲା। ମଞ୍ଚନାଟକର ବହୁଳ ପ୍ରସାର ସଙ୍ଗୀତମୟ ଗୀତିନାଟ୍ୟ ଓ ମୁକ୍ତମଞ୍ଚ ପାଇଁ ବାଧକ ହୋଇଥିଲା।

୧୯୬୦ରେ ବୈଷ୍ଣବ ପାଣିଙ୍କର 'ରଙ୍ଗସଭା' ପୁନର୍ବାର ବେତାର ଉପଯୋଗୀ ହୋଇ ପ୍ରସାରିତ ହେବା ଫଳରେ ପାରମ୍ପରିକ ଗୀତିନାଟ୍ୟର ପୁନରୁତ୍‌ଥାନ ହୋଇଥିଲା। ଯେଉଁ ସମୟରେ (୬୦ ପରେ) ଓଡ଼ିଶାରେ ଗୀତିନାଟକମାନ ପୁନର୍ବାର ଅସାଧାରଣ ଭାବେ ଲୋକପ୍ରିୟ ହୋଇଛି, ସେହି ସମୟରେ ଓଡ଼ିଶାରେ ନବନାଟକର ଯୁଗ ମଧ୍ୟ ଆରମ୍ଭ ହୋଇଛି। ତେଣୁ ନାଟକରେ ନାନାବିଧ ପରୀକ୍ଷା କରୁକରୁ ନାଟ୍ୟକାରମାନେ ଗୀତିନାଟ୍ୟର ବଳିଷ୍ଠ ସାଙ୍ଗିତିକତାକୁ ମଧ୍ୟ ଗ୍ରହଣ କରିନେଇଛନ୍ତି।

ନାଟ୍ୟକାର ଗୋପାଳ ଛୋଟରାୟ ବୈଷ୍ଣବ ପାଣିଙ୍କର 'ରଙ୍ଗସଭା', 'କର୍ଣ୍ଣବଧ', 'ଦକ୍ଷଯଜ୍ଞ', 'ପ୍ରହ୍ଲାଦ' ଓ 'ହରିଶ୍ଚନ୍ଦ୍ର', ବାଳକୃଷ୍ଣ ମହାନ୍ତିଙ୍କର 'ସୁଶୀଳ ମାଳତୀ', 'ବାଣା ପରାଜୟ' ଓ 'ଅମର ବିଳାସ', ବାବାଜୀ ବୈଷ୍ଣବଚରଣ ଦାସଙ୍କର 'ମାନଭଞ୍ଜନ'କୁ ବେତାର ଉପଯୋଗୀ ଗୀତିନାଟ୍ୟରେ ରୂପାନ୍ତରିତ କରିଛନ୍ତି। ତଥାକଥିତ ଗ୍ରାମ୍ୟ ଶବ୍ଦ ପ୍ରୟୋଗ ତଥା ଅନେକ ଗୌଣ ଚରିତ୍ରକୁ ବାଦ୍ ଦେଇ ଏଗୁଡ଼ିକ ରୁଚିଶୀଳ ଭାବରେ ପ୍ରଯୋଜିତ ହୋଇଛି। ଏତଦ୍‌ବ୍ୟତୀତ ସେ ଗଙ୍ଗାଧର ମେହେରଙ୍କର କାଳଜୟୀ ସୃଷ୍ଟି 'ତପସ୍ୱିନୀ' ତଥା ଫକୀରମୋହନଙ୍କର ନିତ୍ୟନୂତନ କାହାଣୀ 'ପେଟେଣ୍ଟ ମେଡିସିନ୍'କୁ ଗୀତିନାଟକ ରୂପରେ ଆକାଶବାଣୀରେ ପ୍ରସାରିତ କରିଛନ୍ତି। 'ପେଟେଣ୍ଟ ମେଡିସିନ'ର ନୂତନ ନାମକରଣ 'ଶ୍ରୀମତୀ ସମାର୍ଜନୀ' ତାଙ୍କୁ ଓଡ଼ିଶାର ଘରେ ଘରେ ପରିଚିତ କରାଇଛି।

ସେ ନିଜେ ଲେଖିଥିବା ପୌରାଣିକ ଗୀତିନାଟ୍ୟଗୁଡ଼ିକ ହେଉଛି - 'ଶ୍ରୀ ଗଣେଶ', 'ଜନ୍ମାଷ୍ଟମୀ', 'ମହିଷାମର୍ଦ୍ଦିନୀ', 'ରାମାୟଣ' ଓ 'ବିନ୍ଦୁସାଗର', କିମ୍ବଦନ୍ତୀ ଆଧାରରେ ରଚିତ ଗୀତିନାଟ୍ୟଗୁଡ଼ିକ ହେଉଛି - 'ନ ପାହୁ ରାତି ନ ମରୁ ପତି' ଓ 'ବୋଲେ ହୁଁ ଟି'। ଗୀତିନାଟ୍ୟର ପ୍ରଧାନ ସମ୍ପଦ ହେଉଛି ସାଙ୍ଗୀତିକତା। 'ଶ୍ରୀ ଗଣେଶ' ଗୀତିନାଟ୍ୟରେ ପାର୍ବତୀଙ୍କ ଉକ୍ତି -

''କାଳେ କାଳେ ଶିବ ହେ ତୁମ ନିଷ୍ଠୁର ଭାବ
ତେଜି ନ ପାରିଲି ହେଜି ନ ପାରିଲି
ନାରୀହନ୍ତା କାହିଁ ନ ପାଏ ଠାବ''...

ଏହି ଭଳି ସଙ୍ଗୀତରେ ଅନୁପ୍ରାସ, ଗୀତିନାଟ୍ୟ ଉପଯୋଗୀ ପାରମ୍ପରିକ ଶବ୍ଦ ସମୂହ ତଥା ଆଧୁନିକ ଯୁଗରୁଚିର ମଧୁରସମନ୍ୱୟ ଲକ୍ଷ୍ୟ କରାଯାଇପାରେ।

'ମହିଷାମର୍ଦ୍ଦିନୀ' ଛୋଟରାୟ ମହାଶୟଙ୍କର ଅନ୍ୟ ଏକ ବହୁଜନାଦୃତ ଗୀତିନାଟ୍ୟ, ଶ୍ରୀ ଶ୍ରୀ ସପ୍ତଶତୀ ଚଣ୍ଡୀ କଥାବସ୍ତୁ ଅନୁରୂପ ମହିଷାସୁରର ଦର୍ପ ଓ ଦେବୀଙ୍କ ଦ୍ୱାରା ତା'ର ସଂହାର ଏହାର ବିଷୟବସ୍ତୁ। ନାରଦ ଏହି ଗୀତିନାଟ୍ୟର ଅନ୍ୟତମ ମୁଖ୍ୟଚରିତ୍ର ଯିଏ ନାଟକର ଗତିଧାରାକୁ ନିୟନ୍ତ୍ରଣ କରିଛନ୍ତି। ମହିଷାସୁର ଦ୍ୱାରା ଉତ୍‌ପୀଡ଼ିତ ଦେବତାମାନଙ୍କର ଦୁର୍ଗତି ଓ ସେମାନଙ୍କର ପ୍ରାର୍ଥନା ଫଳରେ ଅନଳଗର୍ଭରୁ ସମ୍ଭୂତା ଦେବୀ ଦୁର୍ଗାଙ୍କ ବୈଶିଷ୍ଟ୍ୟକୁ ନାଟ୍ୟକାର ଖୁବ୍ ମାର୍ମିକ ଭାବରେ ସଙ୍ଗୀତାୟନ କରିଛନ୍ତି। ଦୁର୍ଗତିରୁ ତ୍ରାଣକରି ଦେବତାମାନଙ୍କୁ ସନ୍ତୋଷ ପ୍ରଦାନ କରିଥିବା ଦେବୀ ହେଉଛନ୍ତି ଦେବୀ ଦୁର୍ଗା।

'ସମ୍ପୂର୍ଣ୍ଣ ରାମାୟଣ'ର ବିଷୟବସ୍ତୁ ଉପେନ୍ଦ୍ର ଭଞ୍ଜଙ୍କର 'ବୈଦେହୀଶ ବିଳାସ' ଅନୁରୂପ ବେଦମତୀର ତପସ୍ୟା ଓ ଆତ୍ମବିସର୍ଜନ, ରାମ ସୀତା ଜନ୍ମ, ବନଗମନ, ସୀତାଚୋରି, ରାମ ରାବଣ ଯୁଦ୍ଧ, ରାମଚନ୍ଦ୍ରଙ୍କର ପ୍ରତ୍ୟାବର୍ତ୍ତନ ଓ ଅଭିଷେକରେ ଏହା ସମାପ୍ତ ହୋଇଅଛି। 'ବୈଦେହୀଶ ବିଳାସ'ର ଲୋକପ୍ରିୟ ସଙ୍ଗୀତ 'ବଢ଼ାଇ ଦେଲେ ପୟର, ଭାବଗ୍ରାହୀ ରଘୁବୀର'ର ସଂଯୋଜନା ନାଟ୍ୟକାରଙ୍କର ରୁଚିଶୀଳତା ତଥା ସାହିତ୍ୟାନୁରାଗର ପରିଚୟ ଦିଏ। ଅନ୍ୟାନ୍ୟ ଗୀତିନାଟ୍ୟଠାରୁ 'ସମ୍ପୂର୍ଣ୍ଣ ରାମାୟଣ'ର କଳେବର ସ୍ଫୀତ। ହନୁମାନଠାରୁ ଶ୍ରୀରାମଙ୍କ ମୁଦ୍ରିକା ସଙ୍କେତ ପାଇ ଆଶୋକ ବନରେ ବନ୍ଦିନୀ ସୀତାଙ୍କ ମୁଖର ସଙ୍ଗୀତ ପ୍ରଣିଧାନଯୋଗ୍ୟ-

''ତୋର ପାଇଲି ଦେଖାରେ ମୁଦ୍ରିକା
ମଣ୍ଡିଥିଲୁ ରାମ ଅଙ୍ଗୁଳି ରେଖା
ନବଦୁର୍ବାଦଳ ଶ୍ରୀଅଂଗ ଶୋଭା
ତହିଁ ଶୋଭୁଥିଲା ତୋ ରତ୍ନଆଭା
ଆସିଲୁ ଯେବେ ତୁ ପ୍ରଭୁଙ୍କୁ ମୋର
ନ ଆଣିଲୁ କିମ୍ବା ସଙ୍ଗେ ତୋହର।'' (ସଂପୂର୍ଣ୍ଣ ରାମାୟଣ - ପୃ ୧୧୩)

ଏହି ସଙ୍ଗୀତ ବିଶ୍ୱନାଥ ଖୁଣ୍ଟିଆଙ୍କର 'ବିଚିତ୍ର ରାମାୟଣ'ର ସୀତା ହନୁମାନ ଭେଟ ସ୍ମରଣ କରାଇଦିଏ।

'ଜନ୍ମାଷ୍ଟମୀ' ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଦ ଗୋପଲୀଳାର କୃଷ୍ଣଜନ୍ମ ପ୍ରସଙ୍ଗକୁ କେନ୍ଦ୍ର କରି ରଚିତ। କଂସର ବନ୍ଦୀଶାଳାରେ ବର୍ଷଣମୁଖର ରଜନୀରେ କୃଷ୍ଣ ଜନ୍ମ ହେଲେ। ପୁତ୍ରମୁଖ ଦର୍ଶନ କରି ବାସୁଦେବ ଓ ଦେବକୀ ଆବେଗରେ ଯେଉଁ ସଙ୍ଗୀତ ଗାଇଛନ୍ତି ତହିଁରେ ନାଟ୍ୟକାରଙ୍କର କୃତିତ୍ୱ ପ୍ରକାଶିତ ହୋଇଛି। ସତେ ଯେପରି ଶିଶୁକୃଷ୍ଣ ଯେ ସେମାନଙ୍କୁ ସକଳ ଦୁର୍ଦ୍ଦଶାରୁ ମୁକ୍ତ କରିବେ ତାହା ବାସୁଦେବ ଓ ଦେବକୀ ଜାଣିଛନ୍ତି। ସେହିପରି 'ନ ପାହୁ ରାତି ନ ମରୁ ପତି'ରେ ଅନସୂୟାଙ୍କର ପତିଭକ୍ତି, ଲକ୍ଷ୍ୟହୀରାର ଦୃଢ଼ ମାନସିକତା ଓ ଅନସୂୟାଙ୍କର ପତି ରୋଗଗ୍ରସ୍ତ ବିଷ୍ଣୁ ଦାସଙ୍କର ହୃଦୟ ପରିବର୍ତ୍ତନର କାହାଣୀକୁ ଛୋଟରାୟ ମହାଶୟ ଯେଉଁ ଭଳି ନାଟ୍ୟରୂପ ପ୍ରଦାନ କରିଛନ୍ତି ତାହା ବାସ୍ତବିକ ଅନନ୍ୟ। ନାଟ୍ୟଚରିତ୍ରମାନଙ୍କର ମନସ୍ତାତ୍ତ୍ୱିକ ଭାବନାର ଚମତ୍କାର ରୂପାୟନ ଏଥିରେ ଦୃଷ୍ଟିଗୋଚର ହୁଏ। ଗୀତିନାଟ୍ୟ 'ଶ୍ରୀଜଗନ୍ନାଥ'ରେ ବିଶ୍ୱାବସୁଙ୍କର ପ୍ରିୟ ନୀଳମାଧବ ଅରଣ୍ୟର ଅଗମ୍ୟ ସ୍ଥାନରୁ ନୀଳାଚଳର ଶ୍ରୀମନ୍ଦିରକୁ ଆସିବାର କାହାଣୀ ବର୍ଣ୍ଣିତ। ବିଶ୍ୱାବସୁଙ୍କୁ ପ୍ରଭୁ ନୀଳମାଧବଙ୍କ ଉକ୍ତି-

''ଶୁଣ ମୋ' ପ୍ରିୟ ଶବର ଏ ମୋର ବଚନରେ
କନ୍ଦମୂଳ ଖାଇବାକୁ ନାହିଁ ଆଉ ମନରେ
ତୁ ମୋର ଆଦ୍ୟ ସେବକ
ତୁ ମୋର ପ୍ରିୟ ପୂଜକ
ଅମୃତମଣୋହି ପାଇଁ ବଳିଲାଣି ମନରେ।'' (ଶ୍ରୀ ଜଗନ୍ନାଥ- ପୃ: ୧୫)

'ସଂପୂର୍ଣ୍ଣ ରାମାୟଣ'ରେ ରାବଣ ପ୍ରତିନାୟକ। ରାମଚନ୍ଦ୍ରଙ୍କର ଅବତାରତ୍ୱ ପ୍ରତିପାଦନ ପାଇଁ ରାବଣର ଚରିତ୍ର ହିଁ ଅଧିକ କ୍ରିୟାଶୀଳ। କିନ୍ତୁ ଇନ୍ଦ୍ରଜିତର ମୃତ୍ୟୁ ପରେ ରାବଣ କଣ୍ଠରେ ଯେଉଁ ସଂଳାପ ଖଞ୍ଜାଯାଇଛି, ତହିଁରେ ତା'ର ପିତୃତ୍ୱର ହାହାକାର ହିଁ ଆକର୍ଷଣୀୟ ହୋଇଛି। ସଂଳାପର ଯାଦୁକର ଗୋପାଳ ଛୋଟରାୟ ଗୀତିନାଟ୍ୟରେ ଅପୂର୍ବ ସଂଳାପ ସଂଯୋଜନା କରିଛନ୍ତି। ଦୂତ ଇନ୍ଦ୍ରଜିତ ମୃତ୍ୟୁର ଦୁଃସମ୍ବାଦ ଦେବାକୁ ଆସି ଫେରିଯାଇଛି। ରାବଣ କଣ୍ଠରେ- ''ମୁଁ ଲଙ୍କାପତି- ମୁଁ ବିଶ୍ୱବିଜୟୀ ରାବଣ- ବ୍ରହ୍ମାବର ଲାଭ ଦିନୁ ମୋର ଲକ୍ଷ୍ୟ ଥିଲା ତ୍ରିପୁର ବିଜୟ- କର୍ମ ଥିଲା ସୁଖ ସମ୍ଭୋଗ- ଧର୍ମ ଥିଲା ରାଜସିକ। ଦୁଃଖ ନାହିଁ, ଶୋକ ନାହିଁ, ଅନୁତାପ ନାହିଁ- ଏଇ କଥା ମୁଁ ରାଣୀ ମନ୍ଦୋଦରୀକୁ କହିଥିଲି। ମାତ୍ର ଏ ମୋର କ'ଣ ହେଉଚି ? ଇନ୍ଦ୍ରଜିତର ମୃତ୍ୟୁରେ କାହିଁକି ମୁଁ ଲକ୍ଷ୍ୟଭ୍ରଷ୍ଟ ହେଉଛି ? କର୍ମଭ୍ରଷ୍ଟ ହେଉଚି ?- ଧର୍ମଭ୍ରଷ୍ଟ ହେଉଚି ? ମୋ' ଭିତରର ରାକ୍ଷସ ରାବଣଟା ଏମିତି ଛିନ୍ନଭିନ୍ନ ହୋଇଯାଉଚି। ... ନା, ମୁଁ ପାରୁନାହିଁ। ଇନ୍ଦ୍ରଜିତର ମୃତ୍ୟୁକୁ ମୁଁ ସହିପାରୁନାହିଁ... ଇନ୍ଦ୍ରଜିତ, ପୁତ୍ର ମୋର ! ମାତା ତୋର ତୋତେ ବୀର ବେଶରେ ସଜାଇ ଯୁଦ୍ଧକୁ ପଠାଇଥିଲା- ମୁଁ ଚାହିଁ ବସିଥିଲି ତୋର ବିଜୟ ବାହୁଡ଼ା ପଥକୁ...ତୁ ଫେରିଲୁ ନାହିଁ ଇନ୍ଦ୍ରଜିତ...ଆମ କୋଳକୁ ତୁ ଆଉ ଫେରିଲୁ ନାହିଁ...''

(ସଂପୂର୍ଣ୍ଣ ରାମାୟଣ- ପୃ :୧୪୨)

ପୁରାଣ ଇତିହାସ, କିମ୍ବଦନ୍ତୀ ଭଳି ଲୋକକଥାକୁ କେନ୍ଦ୍ର କରି 'ବୋଲେ ହୁଁଟି' ଓ 'ଘର ବର ଦେଖା' ନାଟକ ଦ୍ୱୟ ରଚିତ। 'ବୋଲେ ହୁଁଟି' ଉତ୍କଳ କାହାଣୀର ଏକ କାହାଣୀ ଉପରେ ଆଧାରିତ। ଆମୂଳଚୂଳ ଗୀତିଧର୍ମୀ ନାଟକ, ସାଧବ ପରିବାରର ଆଭିଜାତ୍ୟ ସହିତ ବ୍ୟବସାୟ ବାଣିଜ୍ୟ କୌଶଳ, ସାଧବ ଘରଣୀର ସରଳ ବିଶ୍ୱାସ, ରାଜାପୁଅର ଲମ୍ପଟତା, ସର୍ବୋପରି ମାଲୁଣୀର ମଧ୍ୟସ୍ଥତାକୁ ନେଇ ଏହାର କଥାଭାଗ ପରିକଳ୍ପିତ। ଚରିତ୍ର ଉପଯୋଗୀ ସଙ୍ଗୀତ ସଂଯୋଜନା ଏହାର ଅନ୍ୟତମ ବୈଶିଷ୍ଟ୍ୟ। 'ଘର ବର ଦେଖା' ହାସ୍ୟରସାତ୍ମକ ଗୀତିନାଟକ ଯାହାକୁ ଫାର୍ଶ ମଧ୍ୟ କୁହାଯାଇପାରେ। ଉପସ୍ଥାପନା କୌଶଳ ଏହାକୁ ଲୋକପ୍ରିୟ କରିଛି। କିନ୍ତୁ ପୁରାଣ ଅବଲମ୍ବନରେ ରଚିତ ଗୀତିନାଟ୍ୟଗୁଡ଼ିକର ଗ୍ରାହକତା ଅଧିକ। କାରଣ ଚରିତ୍ରମାନେ ଦର୍ଶକମାନଙ୍କର ପୂର୍ବ ପରିଚିତ। ଏମାନେ ମୂଲ୍ୟବୋଧର ସୁରକ୍ଷା କରିଥାଆନ୍ତି। ଧର୍ମର ଜୟ ପାପର କ୍ଷୟ ଭଳି ଧାରଣା ଦର୍ଶକମାନଙ୍କୁ ପ୍ରଭାବିତ କରିବାର କ୍ଷମତା ରଖେ। ପରିଶେଷରେ ସଙ୍ଗୀତର ଶୋଭନ ସଂଯୋଗ ଗୀତିନାଟ୍ୟଗୁଡ଼ିକୁ ଲୋକପ୍ରିୟ ତଥା ପରିବେଶ ଉପଯୋଗୀ କରିପାରେ। ଗୋପାଳ ଛୋଟରାୟ ଏକକ ପ୍ରଚେଷ୍ଟାରେ ପ୍ରଚୀନ ଗୀତିନାଟ୍ୟର ପୁନରୁଦ୍ଧାର କରିଛନ୍ତି ଯାହା କିଞ୍ଚିତ୍ ପରବର୍ତ୍ତୀ ସମୟରେ ନବନାଟକ ଧାରାରେ ଗୁରୁତ୍ୱପୂର୍ଣ୍ଣ ଭାବେ ପ୍ରଯୁକ୍ତ ହୋଇ ନାଟକକୁ ପରମ୍ପରା ସହିତ ଜଡ଼ିତ କରି ରଖିପାରିଛି।

## ପୌରାଣିକ ନାଟକ

ପୁରାଣମାନ ଯୁଗ ଯୁଗ ଧରି ମୂଲ୍ୟବୋଧର ସୁରକ୍ଷା କରିଥାଆନ୍ତି । ଏଗୁଡ଼ିକର ଆବେଦନ ଚିରନ୍ତନ । ପୁରାଣର କାହାଣୀମାନଙ୍କୁ ନେଇ ଯୁଗ ଯୁଗ ଧରି ଅନେକ କାବ୍ୟ, ନାଟକ, ଗଳ୍ପ ଓ ଉପନ୍ୟାସମାନ ରଚିତ ହୋଇଛି । ଗୋଟିଏ ଗୋଟିଏ ଆକର୍ଷଣୀୟ କାହାଣୀ ବିଭିନ୍ନ ସମୟରେ ଏକାଧିକ ଲେଖକମାନଙ୍କ ଦ୍ୱାରା ଭିନ୍ନ ଭିନ୍ନ ଭାବରେ ରୂପ ପାଇଛି । ଗୋପାଳ ଛୋଟରାୟ ପୁରାଣର ଏହି ସାର୍ବଜନୀନ ଆବେଦନକୁ ଗୁରୁତ୍ୱ ଦେଇ ପୌରାଣିକ ନାଟକମାନ ରଚନା କରିଛନ୍ତି । ସେ ମୁଖ୍ୟତଃ ରାମାୟଣ, ମହାଭାରତ, ଭାଗବତ, ଦେବୀ ଭାଗବତ ଏବଂ ସପ୍ତଶତୀ ଚଣ୍ଡୀ ପ୍ରଭୃତିରୁ ନିଜର ନାଟକ ନିମନ୍ତେ ଉପାଦାନ ସଂଗ୍ରହ କରିଛନ୍ତି । ରାମାୟଣ ପରମ୍ପରାରେ ସେ ରଚନା କରିଛନ୍ତି 'ରାମ ରାବଣ', 'ସେତୁବନ୍ଧ', 'ପ୍ରଜାନୁରଂଜନ' ଓ 'ଅନ୍ତିମଦର୍ଶନ' । 'ରାମରାବଣ' ୨୨/୫/୬୦ରେ ଆକାଶବାଣୀ, କଟକରେ ପ୍ରଚାରିତ ଯେଉଁଥିରେ ରାବଣର ଚାରିତ୍ରିକ ମହତ୍ତ୍ୱ ଫୁଟି ଉଠିଛି । 'ସେତୁବନ୍ଧ' ୨୯/୬/୬୫ରେ ଆକାଶବାଣୀରେ ପ୍ରଚାରିତ । ଏଥିରେ ସେତୁବନ୍ଧ ପ୍ରତିଷ୍ଠା କାଳରେ ରାବଣର ପୌରୋହିତ୍ୟ ଘଟଣା ବର୍ଣ୍ଣିତ । 'ପ୍ରଜାନୁରଂଜନ' ୩୦/୭/୬୬ରେ ପ୍ରଚାରିତ ଯେଉଁଥିରେ ଲୋକାପବାଦ ଭୟରେ ରାମଚନ୍ଦ୍ରଙ୍କ ଦ୍ୱାରା ସୀତାଙ୍କ ନିର୍ବାସନ ପ୍ରସଙ୍ଗ ବର୍ଣ୍ଣିତ । 'ଅନ୍ତିମଦର୍ଶନ' ୨୦/୧୨/୭୯ରେ ଆକାଶବାଣୀରେ ପ୍ରସାରିତ । ଅପମାନିତା ସୀତାଙ୍କର ପାତାଳ ପ୍ରବେଶ ଘଟଣା ଏଥିରେ ପ୍ରକାଶିତ । ଏହି ନାଟକଗୁଡ଼ିକର ପ୍ରସାର ମଧ୍ୟରେ ଦୀର୍ଘ ବ୍ୟବଧାନ ଥିଲେ ହେଁ ଏଗୁଡ଼ିକରେ ଭାବଐକ୍ୟ ସୁରକ୍ଷିତ । ମହାଭାରତର କାହାଣୀ ନେଇ 'ଭୀଷ୍ମପ୍ରତିଜ୍ଞା', 'ଗାନ୍ଧାରୀ', 'ହସ୍ତିନାପୁର', 'ଉରୁଭଙ୍ଗ' ଓ 'ଅସ୍ତ୍ର ପରୀକ୍ଷା' ନାଟକମାନ ପରିକଳ୍ପିତ । 'ଭୀଷ୍ମପ୍ରତିଜ୍ଞା'ରେ ଭୀଷ୍ମଙ୍କର ଚାରିତ୍ରିକ ଦୃଢ଼ତା ଓ 'ଗାନ୍ଧାରୀ'ରେ ଗାନ୍ଧାରୀଙ୍କର ଦୃଢ଼ ବ୍ୟକ୍ତିତ୍ୱର ପରାକାଷ୍ଠା ପ୍ରକାଶିତ । 'ଉରୁଭଙ୍ଗ' ମାନଗୋବିନ୍ଦ ଦୁର୍ଯ୍ୟୋଧନର ଉରୁଭଙ୍ଗ ସମ୍ପର୍କୀୟ କରୁଣରସାଶ୍ରୟୀ କାହାଣୀ ଓ ଏକଲବ୍ୟର ଅସ୍ତ୍ରଶିକ୍ଷା 'ଅସ୍ତ୍ର ପରୀକ୍ଷା' ନାଟକର ଉପଜୀବ୍ୟ । ସେହିପରି ଦକ୍ଷଯଜ୍ଞରେ ଅପମାନିତା ସତୀଙ୍କର ଆତ୍ମାହୂତିକୁ ନେଇ 'ଶୈଳସୁତା' (୨୭/୭/୬୮ରେ ପ୍ରସାରିତ) । 'ଦେବୀ ଓ ଦାନବ' ମହିଷାସୁର ନିଧନ କାହାଣୀକୁ ନେଇ ୮/୧୦/୬୨ରେ ପ୍ରସାରିତ । ଦୁର୍ଗାଙ୍କର ଶକ୍ତି ସ୍ୱରୂପ ପ୍ରଦର୍ଶନ ନିମିତ୍ତ ୧୦/୧୦/୫୯ରେ 'ଦଶଭୁଜା' ନାଟକ ଆକାଶବାଣୀରେ ପ୍ରସାରିତ ହୋଇ ନାଟ୍ୟକାରଙ୍କର ଲୋକପ୍ରିୟତାକୁ ବହୁଗୁଣିତ କରିଛି । ବଲାଙ୍ଗିରର ନୃସିଂହନାଥଙ୍କୁ ନେଇ ୨୪/୧୧/୭୩ରେ 'ନୃସିଂହନାଥ' ନାଟକ ରଚିତ ଓ ପ୍ରସାରିତ । ଏତଦ୍‌ବ୍ୟତୀତ 'ଶ୍ରୀଗୁଣ୍ଡିଚା', 'ସତୀ ଓ ଉର୍ବଶୀ', 'ବାଣା ପରାଜୟ', 'ଜନ୍ମାଷ୍ଟମୀ', 'ହଂସଦୂତ' ଭଳି ନାଟକ ତାଙ୍କର ପୁରାଣ କିମ୍ବଦନ୍ତୀ ଓ ଲୋକକଥାକୁ ପୁନରୁଜ୍ଜୀବିତ କରିବାର ଆଗ୍ରହରୁ ଜନ୍ମ ନେଇଛି ।

ପୁରାଣ ପରମ୍ପରା ସୁରକ୍ଷିତ ରଖେ । ପୌରାଣିକ ନାଟକରେ 'ଧର୍ମର ଜୟ ପାପର କ୍ଷୟ' କଥାଟି ସ୍ପଷ୍ଟ ହୋଇ ଦିଶିଯାଏ । ମହିଷାସୁର ପ୍ରବଳ ପ୍ରତାପୀ ମାତ୍ର ପରନାରୀ ଉପରେ ପାପଦୃଷ୍ଟି

ପାତ କରି ହିଁ ସେ ନିଜର ସର୍ବନାଶକୁ ଡାକିଆଣିଛି। ମହିଷାସୁରର ପତ୍ନୀ ଚନ୍ଦ୍ରାବତୀ ନିଜ ସ୍ୱାମୀଙ୍କୁ ଅନ୍ୟାୟରୁ ନିବର୍ତ୍ତାଇବାକୁ ଚେଷ୍ଟିତା। ସେ ଜାଣେ ଯେ ଅଜ୍ଞାତକୁଳଶୀଳା ନାରୀ ଲାଭ ପାଇଁ ଇଚ୍ଛା ମହିଷାସୁରର ବିନାଶର କାରଣ ହେବ। ଚନ୍ଦ୍ରାବତୀ ମହିଷାସୁରକୁ କହେ-

''କରୁଛି ମିନତି ହେ ଦନୁଜପତି
ଦାସୀ ମନା ବାରେ ମାନ ହେ
କୁଳହୀନା ନାରୀ ନୁହେଁ ତ କାହାରି
ନ ବଳା ତା'ଠାରେ ମନ ହେ'' (ମହିଷାମର୍ଦ୍ଦିନୀ -ପୃ :୨୫)

'ଶ୍ରୀଗୁଣ୍ଡିଚା' ନାଟକରେ ଜଗନ୍ନାଥଙ୍କର ନିତ୍ୟ ନୈମିତ୍ତିକ ପୂଜାବିଧି ସଙ୍ଗେ ଜଗନ୍ନାଥଙ୍କର ଯାନିଯାତ୍ରା ସମ୍ପର୍କରେ ମଧ୍ୟ ଉଲ୍ଲେଖ କରାଯାଇଛି। 'ବାଣା ପରାଜୟ' ନାଟକରେ ଗ୍ରାମ ସାମାଜିକ ଜୀବନର ସୁନ୍ଦର ଚିତ୍ର ଫୁଟି ଉଠିଛି। ଉଷା ଓ ଅନିରୁଦ୍ଧଙ୍କର ଗୋପନ ପ୍ରଣୟର ବାର୍ତ୍ତା ପାଇଁ ବାଣାସୁର ତାକୁ ବନ୍ଦୀ କରିବାକୁ ଆଦେଶ ଦିଅନ୍ତି। ଏ ନିଷ୍ଠୁର ଆଦେଶରେ ବାଣାସୁରଙ୍କ ପତ୍ନୀ ମନୋରମା ବିଳାପ କରିଛନ୍ତି - ସେ ବାଣାସୁରଙ୍କ ନିକଟରେ ନିବେଦନ କରନ୍ତି-

ନାଥ ହେ ଦିଅ କ୍ଷମା ଏଥର,
ଦୁହିତା ମୋହରି ଅତି ସୁକୁମାରୀ
ତା ପ୍ରତି ନ ହୁଅ ଏତେ ନିଷ୍ଠୁର
x x x
ଦଣ୍ଡିବାର ଶକ୍ତି ଥାଏ ଯା'ର ତା'ର, କ୍ଷମା ଦେବାଟି ଉଚିତ ବେଭାର।

'ଭୀଷ୍ମପ୍ରତିଜ୍ଞା' ମହାଭାରତ କାହାଣୀ। ଗଙ୍ଗାଙ୍କର ନିଷ୍ଠୁରତା ପାଇଁ ଶାନ୍ତନୁଙ୍କର ସାତଗୋଟି ସନ୍ତାନ ଜନ୍ମ ମାତ୍ରେ ମୃତ୍ୟୁ ମୁଖରେ ପଡ଼ିଛନ୍ତି। ତେଣୁ ସେ ନିଜର ନିରବତାକୁ ଦୋଷ ଦେଇଛନ୍ତି ଓ ପ୍ରତିବାଦ କରି ଭୀଷ୍ମଙ୍କୁ ପାଇଛନ୍ତି। ମାତ୍ର ଗଙ୍ଗା ତାଙ୍କୁ ଛାଡ଼ି ଚାଲି ଯାଇଛନ୍ତି। ସେହି ଭୀଷ୍ମ ଆଦ୍ୟ ଯୌବନରେ ପିତାଙ୍କ ଆନନ୍ଦ ପାଇଁ ଆଜୀବନ ଅବିବାହିତ ରହିବାର ଭୀଷଣ ପ୍ରତିଜ୍ଞା କରିବସିଛନ୍ତି। ଗୋପାଳ ଛୋଟରାୟଙ୍କ ଭାଷାରେ-

''ପିତାର ଦୁଃଖ ଯଦି ପୁତ୍ର ଘୁଞ୍ଚାଇ ନ ପାରେ- ତା'ହେଲେ ପୁତ୍ର, ଏଇ ଶବ୍ଦ ଏ ସମାଜରୁ ଉଠିଯିବା ଉଚିତ। x x x ମୁଁ ଏଇ ପୁଣ୍ୟତୋୟା ସୁରଧୂନୀ ଜାହ୍ନବୀ କୂଳରେ ଠିଆ ହୋଇ ଜାହ୍ନବୀର ଜଳ ସ୍ପର୍ଶ କରି ପୁଣି ଥରେ ଶପଥ କରୁଛି ଯେ ମୁଁ ଆଜୀବନ ବ୍ରହ୍ମଚାରୀ ରହିବି। ଏ ମୋର ଭୀଷ୍ମ ପ୍ରତିଜ୍ଞା'' - (ଭୀଷ୍ମପ୍ରତିଜ୍ଞା)

ଏହିଭଳି ସଙ୍ଗୀତମୟ ଅଥଚ ସଂଳାପର ଯାଦୁକରୀ ପ୍ରଭାବ ଥିବା ନାଟକମାନ ତାଙ୍କୁ ଆକାଶବାଣୀ କଟକ କେନ୍ଦ୍ରର ଅନ୍ୟତମ ପ୍ରମୁଖ ନାଟ୍ୟକାର ସଜାଇ ଦେଇଛି। ଗୋପାଳ ଛୋଟରାୟ ଓ ଆକାଶବାଣୀ କଟକ ହୋଇଯାଇଛନ୍ତି ଏକ ଓ ଅଭିନ୍ନ।

## ଗଳ୍ପ, ଉପନ୍ୟାସର ନାଟ୍ୟରୂପ

ସମାଜରେ ଯାହା କିଛି ପରିବର୍ତ୍ତନ ଘଟେ ସାହିତ୍ୟରେ ତା'ର ପ୍ରତିଫଳନ ଦେଖାଯାଏ। ଗଳ୍ପ ବା ଉପନ୍ୟାସ ଏହି ପ୍ରତିଫଳନର ଚିତ୍ର ଖୁବ୍ ଶୀଘ୍ର ଧରିରଖିପାରନ୍ତି କାରଣ ଏଗୁଡ଼ିକ ଲେଖକ ଓ ପାଠକର ଦ୍ୱିପାକ୍ଷିକ ଚୁକ୍ତି ଭିତରେ ସୀମିତ। ନାଟକରେ ସାଧାରଣତଃ ଏସବୁର ଚିତ୍ର ଟିକିଏ ବିଳମ୍ବରେ ପରିବେଷିତ ହୁଏ। ଏହାର ଏକାଧିକ କାରଣ ରହିଛି। ନାଟକ ଏଭଳି ଏକ ଶକ୍ତିଶାଳୀ ଗଣମାଧ୍ୟମ ଯାହା ଖୁବ୍ ଶୀଘ୍ର ଜନମତକୁ ପ୍ରଭାବିତ କରିପାରେ। ପୁଣି ଏତାଦୃଶ କୌଣସି ବୈପ୍ଳବିକ ଭାବଧାରାକୁ ନେଇ ନାଟକ ରଚନା ତଥା ଅଭିନୟ ପାଇଁ ନାଟ୍ୟକାର, ପ୍ରଯୋଜକ, ନିର୍ଦ୍ଦେଶକ ସମସ୍ତେ ସାହସ କରିପାରନ୍ତିନାହିଁ। ତେଣୁ ନାଟକ ଜଗତରେ ସାମାଜିକ ସମସ୍ୟାମାନ ଗୁରୁତ୍ୱପୂର୍ଣ୍ଣ ଭାବରେ ଉପସ୍ଥାପିତ ହେଉଥିଲେ ହେଁ କିଞ୍ଚିତ ବିଳମ୍ବରେ ପରିବେଷିତ ହୋଇଥାଏ। ତେଣୁ ସଚେତନ ଭାବରେ ସମୟ ପରିବର୍ତ୍ତନ ସମ୍ପର୍କରେ ଖବର ରଖୁଥିବା ପ୍ରତିଭାଧର ନାଟ୍ୟକାରଗଣ କୌଣସି ଉଚ୍ଚକୋଟିର ଗଳ୍ପ ବା ଉପନ୍ୟାସକୁ ନାଟ୍ୟରୂପ ଦେବା ପାଇଁ ଆଗ୍ରହ ପ୍ରକାଶ କରିଥାଆନ୍ତି। ଉଦାହାରଣ ସ୍ୱରୂପ, ଫକୀରମୋହନଙ୍କର ନିତ୍ୟନୂତନ ଗଳ୍ପ 'ପେଟେଣ୍ଟ ମେଡିସିନ୍' ଗୋବିନ୍ଦ ଶୂରଦେଓଙ୍କଠାରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ବାରମ୍ବାର ନାଟ୍ୟରୂପରେ ପରିବେଷିତ ହୋଇଆସୁଅଛି।

ଗଳ୍ପ ବା ଉପନ୍ୟାସର ନାଟ୍ୟରୂପ ଦେବା ପାଇଁ ନାଟ୍ୟକାରଙ୍କୁ କେତୋଟି ବିଷୟ ପ୍ରତି ଗୁରୁତ୍ୱ ଦେବାକୁ ହୋଇଥାଏ। ପ୍ରଥମେ କାହାଣୀର ନୂତନତ୍ୱ, ସମସ୍ୟା ଉତ୍‌ଥାପନରେ ଅନ୍ତରଙ୍ଗତା, ଚରିତ୍ରମାନଙ୍କର ଗୁରୁତ୍ୱ ଓ ଶେଷରେ ଗାଳ୍ପିକ ବା ଔପନ୍ୟାସିକଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ। ଚରିତ୍ର ତଥା ଲେଖକର ମାନସିକତା ସହିତ ଏକାତ୍ମ ନ ହେଲେ ନାଟ୍ୟରୂପଟି ଖୁବ୍ ଜୀବନ୍ତ ହୋଇପାରେ ନାହିଁ। ସତେ ଯେପରି ଦର୍ଶକଟିଏ ତା'ର ପରିଚିତ ଚରିତ୍ରମାନଙ୍କର ସମସ୍ତ ବୈଶିଷ୍ଟ୍ୟ ସହିତ ରଙ୍ଗମଞ୍ଚରେ ଦେଖିବାକୁ ଚାହେଁ। ଗୋପାଳ ଛୋଟରାୟ ଏହିଭଳି ଦୁରୂହ କାର୍ଯ୍ୟ ବାରମ୍ବାର କରିଛନ୍ତି ଓ ତହିଁରେ ସଫଳ ମଧ୍ୟ ହୋଇଛନ୍ତି। ଏହା ତାଙ୍କର ବହୁପାଠିତା, ସାହିତ୍ୟ ପ୍ରତି ଶ୍ରଦ୍ଧା ତଥା ଦାୟବଦ୍ଧତାର ପରିଚାୟକ।

ଉପନ୍ୟାସଟି ନାଟକରେ ରୂପାନ୍ତରିତ ହେଲେ ତହିଁରେ ଥିବା ବର୍ଣ୍ଣନାତ୍ମକତା ଊଣା ହୁଏ ଓ ତାହାର ଗୁରୁତ୍ୱପୂର୍ଣ୍ଣ ମନେ ହେଉ ନ ଥିବା କେତେକ ଚରିତ୍ର ମଧ୍ୟ ବାଦ୍ ପଡ଼ିଯାଆନ୍ତି। କିନ୍ତୁ ବଡ଼ କଥା ହେଲା ଉପନ୍ୟାସ ବା ଗଳ୍ପର ଆତ୍ମିକ ଦିଗ ଓ ବାର୍ତ୍ତାଟି ଅକ୍ଷୁର୍ଣ୍ଣ ରଖିବାର କଳାକୌଶଳ। ୧୯୫୭ରୁ ଏ ପର୍ଯ୍ୟନ୍ତ ସେ କେତୋଟି ସଫଳ ତଥା ଚିରନ୍ତନ ମୂଲ୍ୟବୋଧ ଥିବା ଗଳ୍ପ ଉପନ୍ୟାସର ନାଟ୍ୟରୂପ ପ୍ରସ୍ତୁତ କରିଛନ୍ତି। ଏଗୁଡ଼ିକର ସାଫଲ୍ୟ ଅନେକ ସମୟରେ ଏଭଳି ନାଟ୍ୟରୂପକୁ ସ୍ୱତନ୍ତ୍ର ନାଟ୍ୟକର ମର୍ଯ୍ୟାଦା ମଧ୍ୟ ପ୍ରଦାନ କରିଛି।

'ଝଂଜା' ଭଳି ବିପୁଳକାୟ ଉପନ୍ୟାସକୁ ସେ ତିନୋଟି ଅଙ୍କ ଓ ପନ୍ଦରଟି ଦୃଶ୍ୟରେ ସୀମିତ କରି ଦେଇଛନ୍ତି। ନାୟିକା କ୍ଷଣପ୍ରଭାର ବୈବାହିକ ଜୀବନ, ଭାଗ୍ୟର ବିପର୍ଯ୍ୟୟ, ଅଭାବ

ଇତ୍ୟାଦି ପ୍ରଦର୍ଶନ କରିବା ପାଇଁ ଉପନ୍ୟାସରେ ଦୀର୍ଘ ବର୍ଣ୍ଣନା ଥିବା ସମୟରେ ନାଟକରେ ତାହା ଘଟିନାହିଁ । କ୍ଷଣପ୍ରଭା ଚାକିରି କରିବାକୁ ଯିବା ପାଇଁ ତୁଷାରକାନ୍ତିକୁ ଅନୁମତି ମାଗିବା ଘଟଣାରୁ ନାଟକୀୟ ଭାବେ ତାହା ଆରମ୍ଭ ହୋଇଛି । ଅନେକ କ୍ଷୁଦ୍ର ଚରିତ୍ରକୁ ନାଟକରେ ଅନାବଶ୍ୟକ ମନେକରି ସ୍ଥାନିତ କରାଯାଇନାହିଁ ଓ ଅନେକ ଚରିତ୍ରର ଗୁରୁତ୍ୱ ବୃଦ୍ଧି ପାଇଛି । ମାତ୍ର 'ଝଂଜା' ଯେଉଁଭଳି ଦୁଇଟି ସଂଗ୍ରାମରତ ଚରିତ୍ରର ମନସ୍ତତ୍ତ୍ୱକୁ ନେଇ ଗତିଶୀଳ, ଆଦର୍ଶ ଓ ବାସ୍ତବର ଦ୍ୱନ୍ଦ୍ୱକୁ ନେଇ କ୍ରମପ୍ରସାରିତ, ନାଟ୍ୟରୂପ ଭାବରେ ତାହା ଅନୁରୂପ ଶକ୍ତିଶାଳୀ ହୋଇ ପ୍ରଚାରିତ ହୋଇଛି । ଶାଣିତ ସଂଳାପ ସାହାଯ୍ୟରେ 'ଝଂଜା' ବର୍ଣ୍ଣନାତ୍ମକତା ବ୍ୟଞ୍ଜନାରେ ରୂପାନ୍ତରିତ ହୋଇପାରିଛି । ବନ୍ଧୁ ଦୁଷ୍ମନ୍ତ ବାବୁଙ୍କ 'ଅରକ୍ଷ ନିବାସ'ର ଦାୟିତ୍ୱ ନେବା ପରେ ସେ ଏକ ବୃହତ୍ତର ପରିବେଶ ଆଡ଼କୁ ଗତି କରିଛି ସତ ମାତ୍ର ତା'ର ପତ୍ନୀତ୍ୱର ମର୍ଯ୍ୟାଦା କ୍ଷୁର୍ଣ୍ଣ ହୋଇଛି । ଦେବୀର ଆସନରେ ଅଧିଷ୍ଠିତ ହୋଇ ମଧ୍ୟ ନିନ୍ଦା ଓ ଅପମାନରେ ସେ କ୍ଷତବିକ୍ଷତ ହୋଇଛି । ଗୋଟିଏ ବାକ୍ୟରେ କହିଲେ ଗୋପାଳ ଛୋଟରାୟଙ୍କ କୁଶଳୀ ଲେଖନୀ ସ୍ୱର୍ଶରେ 'ଝଂଜା'ର ଆବେଦନ ବହୁଗୁଣିତ ହୋଇଛି । କାହ୍ନୁଚରଣଙ୍କ ମୂଳବକ୍ତବ୍ୟ କ୍ଷୁର୍ଣ୍ଣ ନ ହୋଇ ବିକଶିତ ହୋଇପାରିଛି । ଏହା ୨୯/୯/୧୯୬୯ରେ ଆକାଶବାଣୀ କଟକ ଦ୍ୱାରା ପ୍ରଥମେ ପ୍ରଚାରିତ ହୋଇଥିଲା ।

'ଅମଡ଼ାବାଟ' ୧୯୫୮ରେ ଅନ୍ନପୂର୍ଣ୍ଣା ମଞ୍ଚରେ ଦୀର୍ଘଦିନ ଅଭିନୀତ ହୋଇଥିଲା । ଏହା ଔପନ୍ୟାସିକା ବସନ୍ତ କୁମାରୀ ପଟ୍ଟନାୟକଙ୍କର ଲୋକପ୍ରିୟ ଉପନ୍ୟାସ 'ଅମଡ଼ାବାଟ'ର ନାଟ୍ୟରୂପ । ମଧ୍ୟବିତ୍ତ ପରିବାରର ମୂଲ୍ୟବୋଧପିଣ୍ଡିତ ଜୀବନ, ପାରସ୍ପରିକ ସମ୍ପର୍କ, ଉଚ୍ଚଶିକ୍ଷା, ଉପାର୍ଜନକ୍ଷମତା ଓ ପରିବାର ପ୍ରତି ଦାୟବଦ୍ଧତା ସହିତ ନାରୀ ଜୀବନର ତ୍ୟାଗ ଓ ସହନଶୀଳତା ଏଥିରେ ରୂପାୟିତ ହୋଇଛି । ସ୍ପଷ୍ଟବାଦିନୀ ମାୟା ଭାଉଜ କାବେରୀର ଛଳନାକୁ ବୁଝିପାରିଛି । ବୁଝିପାରିଛି ଭାଇର ଅସହାୟତା ଓ ବାପା ମାଆଙ୍କର ନିରବତାର ସ୍ୱରୂପ । ତେଣୁ ବାପା ମାଆଙ୍କୁ ଆନନ୍ଦ ଦେବା ପାଇଁ ସେ ଦରିଦ୍ର ପରିବାରରେ ବିବାହ କରିଛି ଓ ଦାୟିତ୍ୱବତୀ ବଧୂର ଭୂମିକା ତୁଲାଇଛି । ପରିଶେଷରେ ତ୍ୟାଗର ଜୟ ଉଦ୍‌ଘୋଷିତ ହୋଇଛି । କାବେରୀକୁ ତ୍ରୁଟି ସଂଶୋଧନ ପାଇଁ ସୁଯୋଗ ମିଳିଛି । ଏକ ପକ୍ଷରେ ରୁଗ୍‌ଣ ପିତା ଓ ଅପରପକ୍ଷରେ ରୁଗ୍‌ଣା ଶାଶୁ । କିଏ ମାୟା ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ? ଏହିଭଳି ପ୍ରଶ୍ନବାଚୀ ଭିତରେ ଉପନ୍ୟାସ ଶେଷ ହୋଇଛି ମାତ୍ର ଛୋଟରାୟ ମହାଶୟ ରଙ୍ଗମଞ୍ଚର ପ୍ରଯୋଜନ ଦୃଷ୍ଟିରୁ ସେ ଦାୟିତ୍ୱଟି ନିଜ ଉପରକୁ ନେଇ ଦର୍ଶକମାନଙ୍କୁ ଏକ ଆଦର୍ଶପିଣ୍ଡିତ ପରିଣତି ପ୍ରଦାନ କରିଛନ୍ତି । ବାପାଙ୍କ ଦାୟିତ୍ୱ ଭଗବାନଙ୍କ ଉପରେ ଛାଡ଼ି ଶାଶୁଘରକୁ ତା'ର ସ୍ୱର୍ଗ ବୋଲି ମାନିନେଇଛି । ଭାରତୀୟ ନାରୀର ଆଦର୍ଶ ଓ ତ୍ୟାଗର ପରମ୍ପରାକୁ ଜୀବନ୍ତ ରଖିବା ପାଇଁ ଛୋଟରାୟ ମହାଶୟ ଏତାଦୃଶ ପରିଣତି ସୃଷ୍ଟି କରିଛନ୍ତି । ମାୟାର ଚରିତ୍ର, ଯାହା ବସନ୍ତ କୁମାରୀ ସୃଷ୍ଟି କରିଥିଲେ ତାହା ନାଟ୍ୟକାର ଛୋଟରାୟଙ୍କ କଲମରେ ଆହୁରି ପରିଚ୍ଛନ୍ନ ବଳିଷ୍ଠ ତଥା ମର୍ମସ୍ପର୍ଶୀ ହୋଇପାରିଛି । ନାଟକରେ ଗତି ତଥା ନାଟକୀୟତା ଆନୟନ ପାଇଁ ସେ କାବେରୀର ଭାଇ, ମିନିବୋଉ, ପ୍ରଭାସ, ଇନ୍ଦୁମତୀ, ଦମୟନ୍ତୀ, ମାଳ ଦେଈ,

ବିଳୁବୋଉ ଖୁଡ଼ୀ ଓ ଚିତ୍ତରଞ୍ଜନ ପ୍ରଭୃତି ଗୌଣ ଚରିତ୍ରକୁ ବାଦ୍ ଦେଇଛନ୍ତି ଓ ସଦାନନ୍ଦ, ସୀତାବୋଉ ଓ ରାଧା ଭଳି ତିନୋଟି ନୂତନ ଚରିତ୍ର ସୃଷ୍ଟି କରିଛନ୍ତି । ସଦାନନ୍ଦ ମାୟା ବିବାହର ମଧ୍ୟସ୍ଥି ଭାବରେ ନିଜର କଥାବାର୍ତ୍ତାର ଶୈଳୀ ଓ ଚତୁରତା ନେଇ ହାସ୍ୟରସ ସୃଷ୍ଟିର ସହାୟକ ହୋଇଛି । ପାରିବାରିକ ଜୀବନର ଛୋଟବଡ଼ ଖୁସି, ମାୟା ଓ ତା'ର ଭାଇ ଭଉଣୀମାନଙ୍କ ଭିତରେ ହାସ ପରିହାସ ଓଡ଼ିଆ ଘରର ନିଛକ ଚିତ୍ର ଉପସ୍ଥାପିତ କରିଥାଏ ।

ତିନୋଟି ମାତ୍ର ଦୃଶ୍ୟସଜ୍ଜା (ପୀତାମ୍ବର ବାବୁଙ୍କ ଘର, ମାୟାର ଶାଶୁଘର ଓ କାବେରୀର ନୂଆଘର) ଭିତରେ ନାଟକଟି ସୀମିତ । ଅର୍ଥାତ ଛୋଟରାୟ ମହାଶୟ ନାଟକର ସୀମିତ ପରିସର ଆବଶ୍ୟକତା ସମ୍ପର୍କରେ ସଚେତନ ଥାଇ ଏହି ନାଟ୍ୟରୂପ ପ୍ରସ୍ତୁତ କରିଛନ୍ତି ।

ଉପେନ୍ଦ୍ର କିଶୋର ଦାସଙ୍କ ଲୋକପ୍ରିୟ ଉପନ୍ୟାସ 'ମଲାଜହ୍ନ'କୁ ଗୋପାଳ ଛୋଟରାୟ ୧୯୬୦ରେ ନାଟ୍ୟରୂପ ପ୍ରଦାନ କରିଥିଲେ । ଏହା ପ୍ରଥମେ ଶ୍ରୀରାମଚନ୍ଦ୍ର ମେଡିକାଲ କଲେଜ୍‌ର ନାଟ୍ୟସଂସ୍ଥାରେ ଅଭିନୀତ ହୋଇ ଉଚ୍ଚପ୍ରଶଂସିତ ହେବା ପରେ ଜନତା ରଙ୍ଗମଞ୍ଚରେ ଶତାଧିକ ରଜନୀ ଅଭିନୀତ ହୋଇଥିଲା । ସତୀ ଓ ନାଥନନା 'ମଲାଜହ୍ନ'ର କେନ୍ଦ୍ରୀୟ ଚରିତ୍ର । ଏହି ଉପନ୍ୟାସକୁ ନାଟ୍ୟକାର ତିନୋଟି ଅଙ୍କ ଓ ତେଇଶିଟି ଦୃଶ୍ୟରେ ବିନ୍ୟସ୍ତ କରିଛନ୍ତି । ନାଟକରେ ଉପନ୍ୟାସର କାହାଣୀକୁ ଯଥାସମ୍ଭବ ଅବିକଳ ରଖିବାର ଚେଷ୍ଟା କରାଯାଇଛି ଯଦିଚ ନାଟକର ଗତିରେ ବେଗ ଆଣିବାକୁ ଯାଇ ଛୋଟରାୟ ମହାଶୟ ନରହରି ମିଶ୍ରଙ୍କ ସହିତ ଘରର ଦାସୀର ଅନୈତିକ ସମ୍ପର୍କର ସୂଚନା ଦେଇଛନ୍ତି । ଯାହା କି ସତୀର ନାରୀତ୍ୱକୁ ଅପମାନିତ କରିଛି । ନରହରି ମିଶ୍ର ଚରିତ୍ରକୁ ସେ ଅତ୍ୟାଚାରୀ ଓ ଲମ୍ପଟ ଚରିତ୍ର ଭାବରେ ଚିତ୍ରଣ କରି ଦର୍ଶକମାନଙ୍କର ସତୀ ପ୍ରତି ସହାନୁଭୂତିକୁ ଆହୁରି ବଳିଷ୍ଠ କରିଛନ୍ତି । ଉପନ୍ୟାସର ଶେଷ ସୂଚନାତ୍ମକ ହୋଇଛି । ସତୀ ଆଗରେ ନଈ ଦେଖି ଅଟକିଛି । ହୁଏତ ସେ ନଈ ତା'ର ଶେଷ ଆଶ୍ରୟ ହୋଇପାରେ । ମାତ୍ର ନାଟକରେ ସତୀର ଆତ୍ମହତ୍ୟାର ସ୍ପଷ୍ଟ ସୂଚନା ରହିଛି ।

'ପ୍ରତିଭା' ଡଃ ହରେକୃଷ୍ଣ ମହତାବଙ୍କ ରଚିତ ଉପନ୍ୟାସ, ଯାହା ୧୯୬୦ରେ ଗୋପାଳ ଛୋଟରାୟଙ୍କ ଦ୍ୱାରା ନାଟ୍ୟରୂପ ପରିଗ୍ରହ କରି ଜନତା ରଙ୍ଗମଞ୍ଚରେ ସଫଳତାର ସହିତ ଅଭିନୀତ ହୋଇଥିଲା । ଅସହଯୋଗ ଆନ୍ଦୋଳନ ପୃଷ୍ଠଭୂମିରେ 'ପ୍ରତିଭା' ଉପନ୍ୟାସର ପ୍ରାଣ ପ୍ରତିଷ୍ଠା । ଏହି ସ୍ଥୂଳକାୟ ଉପନ୍ୟାସରେ ଅନେକ ଗୌଣ ଚରିତ୍ରର ସମାବେଶ । ନାଟକରେ ଛୋଟରାୟ ମହାଶୟ ଉଣେଇଶିଟି ଚରିତ୍ର ବ୍ୟବହାର କରିଛନ୍ତି । ଉପନ୍ୟାସରେ ଜମିଦାର ବୋହୂ ପ୍ରତିଭା ସହିତ ପ୍ରଜାମେଳିର ସର୍ଦ୍ଦାର ସହିତ 'ରାମା' ନାମକ ଚରିତ୍ର ସଂଯୋଗ ରକ୍ଷା କରିଥିଲା । ନାଟ୍ୟକାର ତତ୍‌କାଳୀନ ପାରିବାରିକ ପରିବେଶକୁ ଦୃଷ୍ଟିରେ ରଖି 'ରାମା' ପରିବର୍ତ୍ତେ 'ମାଣିକ' ନାମକ ଚରିତ୍ର ସୃଷ୍ଟି କରିଛନ୍ତି । ଉପନ୍ୟାସରେ ଜମିଦାର ରାମହରିଙ୍କ ପରିବାରରେ ନାଟ୍ୟକାର ଗୌରୀ ନାମକ ଚରିତ୍ର ସଂଯୋଜନା କରି ତାକୁ ପ୍ରତିଭାର ନଣନ୍ଦ ଭାବରେ ଉପସ୍ଥାପନା କରିଛନ୍ତି । ମାଣିକ ଜମିଦାର ପୁତ୍ର ନବୀନଙ୍କ ପାଇଁ କନ୍ୟା ଦେଖି ଫେରିବା ପରଠାରୁ ନାଟକ ଆରମ୍ଭ ହୋଇଛି । ଅପୁଛି ଦେଇ ନାମ୍ନୀ ଗ୍ରାମ୍ୟ କିଶୋରୀକୁ 'ପ୍ରତିଭା' ନାମ ଦେଇ ତା'ର ପ୍ରତିଭାକୁ

ଚିହ୍ନିଥିବା ପ୍ରଥମ ଯୁବକ ହେଉଛନ୍ତି ମହେନ୍ଦ୍ର ବାବୁ। ପ୍ରତିଭା ନବୀନ ବାବୁଙ୍କୁ ବିବାହ କରିବା ପରେ ମଧ୍ଯ ସ୍ୱାମୀସୁଖ ପାଇନାହିଁ, କାରଣ ଜମିଦାର ପୁତ୍ର ନବୀନ ଦେଶ ସ୍ୱାଧୀନ ହେବା ପୂର୍ବରୁ ମାତୃଭୂମି ପାଇଁ ସ୍ୱେଚ୍ଛାରେ ପାରିବାରିକ ସୁଖ ଆନନ୍ଦରୁ ଦୂରେଇ ରହି ବିପ୍ଳବକୁ ଆଗେଇ ନେଇଛନ୍ତି। ମହେନ୍ଦ୍ର ବାବୁ ଡିପୋଟି ଚାକିରି କରିବା ପାଇଁ ନବୀନ ପ୍ରଭୃତି ସତ୍ୟାଗ୍ରହୀଙ୍କୁ ପାଦରେ ଦଳି ସାକ୍ଷତକାର ଦେବାକୁ ଯାଇଛନ୍ତି। ପ୍ରତିଭା ମହେନ୍ଦ୍ର ବାବୁଙ୍କ ସଂସ୍ପର୍ଶରେ ଆସି ବିପ୍ଳବର ଆଦ୍ୟ ପରିଚୟ ପାଇଥିଲା। ବିବାହିତା ପ୍ରତିଭା ସ୍ୱାମୀଙ୍କ ଆଦର୍ଶରେ ଅନୁପ୍ରାଣିତା ହୋଇ ଜମିଦାର ଉଆସରେ ଅବଗୁଣ୍ଠନ ଭିତରେ ରହି ମଧ୍ୟ ବିପ୍ଳବର ନେତୃତ୍ୱ ନେଇଛି। ଉପନ୍ୟାସର ପ୍ରତିଭା ଶ୍ୱଶୁର ରାମହରିଙ୍କର ପ୍ରଜାଙ୍କ ପ୍ରତି ହେଉଥିବା ଅତ୍ୟାଚାର ଦେଖି ପ୍ରତିବାଦ କରିନାହିଁ, ମାତ୍ର ନାଟକର ସୀମିତ ପରିସରରେ ପ୍ରତିଭା ଶ୍ୱଶୁରଙ୍କୁ ଚେତାବନୀ ଦେଇଛି। ପରିଣତିରେ ଗ୍ରାମରେ ସଭା ଆୟୋଜିତ ହୋଇଛି ଯେଉଁଠି ଶାନ୍ତିଶୃଙ୍ଖଳା ରକ୍ଷାର ଦାୟିତ୍ୱ ମହେନ୍ଦ୍ର ବାବୁଙ୍କୁ ସରକାର ପ୍ରଦାନ କରିଛନ୍ତି। ପ୍ରତିଭା ଶ୍ୱଶୁରଙ୍କ ବାରଣ ନ ମାନି ସଭାରେ ଭାଷଣ ଦେଇଛି। ମହେନ୍ଦ୍ର ପ୍ରତିଭାର ଏତାଦୃଶ ପରିବର୍ତ୍ତନରେ ଆଶ୍ଚର୍ଯ୍ୟ ପ୍ରକଟ କରିବା ବେଳେ ନବୀନ ଜେଲ୍‌ରୁ ଫେରି ନିଜର ଅର୍ଦ୍ଧଶିକ୍ଷିତା ପତ୍ନୀର ଦୃଢ଼ମନୋବଳ ଦେଖି ଅଭିଭୂତ ହୋଇଛନ୍ତି।

'ପ୍ରତିଭା' ଉପନ୍ୟାସ ସ୍ୱାଧୀନତା ପୂର୍ବରୁ ରଚିତ। ହୁଏତ ଡଃ ହରେକୃଷ୍ଣ ମହାତାବଙ୍କ ମନରେ ଏହିଭଳି ଏକ କିଶୋରୀ ନାୟିକାର ଫିକାଛବି ଥାଇପାରେ ମାତ୍ର ତା ଭିତରେ ଦେଶପ୍ରେମ, ଅସବର୍ଣ୍ଣ ପାଇଁ ଆନ୍ତରିକତା ତଥା ବିଦ୍ରୋହିଣୀର ଭାବନା ସୃଷ୍ଟି କରି ତାକୁ ଗଢ଼ିବା ପାଇଁ ତାଙ୍କୁ ବେଶ୍ ମନୋବଳ ସଂଗ୍ରହ କରିବାକୁ ପଡ଼ିଥିବ, ମାତ୍ର ୧୯୬୦ବେଳକୁ ସ୍ୱାଧୀନ ଭାରତରେ ନିଃଶ୍ୱାସ ମାରୁଥିବା ଗୋପାଳ ବାବୁଙ୍କର ଏଭଳି ଆସୁବିଧା ନ ଥିଲା। ଅଧିକନ୍ତୁ ତାଙ୍କ ଆଗରେ ପ୍ରତିଭା ଭଳି ଅନନ୍ୟା ନାୟିକାର ପରିଚ୍ଛନ୍ନ ଛବି ଥିଲା ଓ ଦେଶପ୍ରେମ, ଦେଶଦ୍ରୋହୀମାନଙ୍କ ପ୍ରତି ବ୍ୟଙ୍ଗ ବିଦ୍ରୂପ ତଥା ନାରୀର ବିଦ୍ରୋହୀସତ୍ତାରେ ଚିତ୍ରଣ ପାଇଁ ଦମ୍ଭ ଥିଲା। 'ପ୍ରତିଭା' ନାଟକ ଗୋପାଳ ଛୋଟରାୟଙ୍କର ନାଟ୍ୟପ୍ରତିଭାର ଅନ୍ୟତମ ଉଜ୍ଜ୍ୱଳ ଆଲେଖ୍ୟ।

୧୯୫୭ଠାରୁ ୧୯୬୦ ମଧ୍ୟରେ ଗୋପାଳ ଛୋଟରାୟ ଏହିଭଳି ଅନେକ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର ନାଟ୍ୟରୂପ ଦେଇଛନ୍ତି। ମୌଳିକ ଗଳ୍ପ ବା ଉପନ୍ୟାସ ରଚନାଠାରୁ ଏହା ବେଶ୍ ଆୟାସସାଧ୍ୟ ବ୍ୟାପାର। ନାଟକୀୟ ଉପସ୍ଥାପନ ଶୈଳୀ, ମଞ୍ଚସଜ୍ଜା ଓ ମଞ୍ଚକଳା ସମ୍ପର୍କୀୟ ବିଶେଷ ଜ୍ଞାନ ନ ଥିଲେ ଏଭଳି କାର୍ଯ୍ୟ କରିବା ସମ୍ଭବ ନୁହେଁ। ଅପରପକ୍ଷରେ ମୂଳ କାହାଣୀର ମଞ୍ଚ ସମ୍ପର୍କରେ ଅବଗତ ହେବା, ନାଟ୍ୟରୂପ ପ୍ରଦାନ ସମୟ ପର୍ଯ୍ୟନ୍ତ ଅନୁରୂପ କାହାଣୀ ଉପରେ ପର୍ଯ୍ୟବସିତ ନାଟକ ରଚିତ ହୋଇ ନ ଥିବା ହୃଦ୍‌ବୋଧ କରିବା ପରେ ହିଁ ଏଭଳି ଦାୟିତ୍ୱ ନେବାକୁ ପଡ଼ିଥାଏ। ନାଟକ, ରଙ୍ଗମଞ୍ଚ ଓ ଚଳଚ୍ଚିତ୍ର ସମ୍ପର୍କରେ ଯଥେଷ୍ଟ ଧାରଣା ଥିବା ନାଟ୍ୟକାର ଛୋଟରାୟ ମହାଶୟ ଏହି ଗୁରୁଦାୟିତ୍ୱ ନିଷ୍ଠାର ସହିତ ସମ୍ପନ୍ନ କରିପାରିଛନ୍ତି। ସଂଳାପ ଲେଖକ ଭାବରେ ତାଙ୍କର ଅସାମାନ୍ୟ କୃତିତ୍ୱ ରହିଥିଲା। ତେଣୁ କାହାଣୀରେ ଉତ୍‌କଣ୍ଠା ଓ ସଂଘାତ (Suspence & shock) ସୃଷ୍ଟି କରି ସେ ଉପନ୍ୟାସର ବିରାଟ କ୍ୟାନ୍‌ଭାସକୁ ଜୀବନ୍ତ ନାଟକର କ୍ଷୁଦ୍ର ଅବୟବରେ ପରିଣତ କରିପାରିଛନ୍ତି, ଯାହା ଉପନ୍ୟାସର ବାର୍ତ୍ତାକୁ ଧରି ରଖିପାରିଛି।

ବ୍ୟାସକବି ଫକୀରମୋହନଙ୍କର କାଳଜୟୀ ସୃଷ୍ଟି 'ପେଟେଣ୍ଟ ମେଡିସିନ୍'କୁ 'ଶ୍ରୀମତୀ ସମାର୍ଜନୀ' ଗୀତିନାଟକରେ ପରିଣତି କରିବା ପରେ ମଧ୍ୟ ସେ ପୁନର୍ବାର ତା'ର ନାଟ୍ୟରୂପ ପ୍ରସ୍ତୁତ କରିଛନ୍ତି। ସତେ ଯେପରି ସୁଲୋଚନା ଓ ଚନ୍ଦ୍ରମଣି ବାବୁ ନାଟ୍ୟକାରଙ୍କୁ ଦୀର୍ଘ ଦିନ ଘାରିଛନ୍ତି। ତେଣୁ ନବେ ଦଶକରେ ସେ 'ପେଟେଣ୍ଟ ମେଡିସିନ୍'ର ପୂର୍ଣ୍ଣାଙ୍ଗ ନାଟ୍ୟରୂପ ପ୍ରଦାନ କରିଛନ୍ତି ଯାହାର ଶୀର୍ଷକ ହେଉଛି 'ବାବୁ ଚନ୍ଦ୍ରମଣି'।

ଗଳ୍ପ ଓ ଉପନ୍ୟାସର ନାଟ୍ୟରୂପ ପ୍ରସ୍ତୁତ କରି ସେ ନିରବ ରହିନାହାନ୍ତି। ପ୍ରଥମ ଓଡ଼ିଆ ଆଧୁନିକ ନାଟକ ଜଗନ୍ମୋହନ ଲାଲାଙ୍କ 'ବାବାଜୀ'(୧୮୭୭)କୁ ସେ ନାଟ୍ୟରୂପ ମଧ୍ୟ ଦେଇଛନ୍ତି। 'ବାବାଜୀ' ନିଜର ଟାଣପଣ ନେଇ ଅନେକ ସ୍ରଷ୍ଟାଙ୍କ ହାତର ସ୍ପର୍ଶରେ ଘଷିମାଜି ହୋଇ ସମୟୋପଯୋଗୀ ହୋଇଛି। 'ବାବାଜୀ'କୁ ନୂତନ ଭାବରେ ନାଟ୍ୟରୂପ ପ୍ରଦାନ କରିବା ସମୟରେ 'ନିଜକଥା'ରେ ନାଟ୍ୟକାର ଲେଖିଛନ୍ତି, ''କଟକ ଦୂରଦର୍ଶନ କେନ୍ଦ୍ର ପ୍ରଥମ ଓଡ଼ିଆ ନାଟକ 'ବାବାଜୀ'ର ଏକ ଗୀତିଧର୍ମୀ ନାଟ୍ୟରୂପାନ୍ତର ଚାହିଁଲେ। ମୂଳ 'ବାବାଜୀ' ନାଟକରେ ମାତ୍ର ଦୁଇଗୋଟି ଭଜନ ବ୍ୟତୀତ ଅନ୍ୟ କିଛି ଗୀତ ନାହିଁ। ପ୍ରାୟ ଗୀତିନାଟ୍ୟ ଢଙ୍ଗରେ ଏହି ଗୀତିଧର୍ମୀ ରୂପାନ୍ତରକୁ ମୁଁ ଉତ୍ସାହଜନକ ବୋଧ କଲି। କିନ୍ତୁ ଦେଖାଗଲା ମୂଳ ନାଟକର ପ୍ରାୟ ଦୁଇ ତୃତୀୟାଂଶ ବର୍ଣ୍ଣନାଧର୍ମୀ ହୋଇଛି। ଅର୍ଥାତ୍ ନାଟକର ଗଳ୍ପ ସମ୍ପର୍କୀୟ ଯେଉଁସବୁ ନାଟକୀୟ ଘଟଣା ଅତୀତରେ ଘଟିଯାଇଛି, ସେ ସବୁକୁ ନାଟକ ଅଙ୍କରେ ସ୍ଥାନ ଦିଆ ନ ଯାଇ କେବଳ ସଂଳାପ ଦ୍ୱାରା ବର୍ଣ୍ଣନା କରାଯାଇଚି। ଏହା ଦ୍ୱାରା ନାଟକଟିର ଅଭିନୟ ଦର୍ଶକମାନଙ୍କର ହୃଦୟଗ୍ରାହୀ ହୋଇ ନ ପାରିବାର ଆଶଂକା ଅନୁଭୂତ ହେବା ସ୍ୱାଭାବିକ। ଏହି ବିଚାରରେ ବର୍ତ୍ତମାନ ଏଇ ନବ ନାଟ୍ୟରୂପରେ ଉପରୋକ୍ତ ବର୍ଣ୍ଣନାଧର୍ମୀ ଦୃଶ୍ୟ ସବୁକୁ ଘଟଣାଧର୍ମୀ (action-oriented) ଦୃଶ୍ୟରେ ରୂପାନ୍ତରିତ କରାଯାଇଛି। ଏହି ପ୍ରକ୍ରିୟାର ମୂଳନାଟକ ଅପେକ୍ଷା ନବନାଟ୍ୟ ରୂପର କଳେବର ତ ବୃଦ୍ଧିପାଇଚି - ଯେଉଁସବୁ ଚରିତ୍ର ଅନ୍ତରାଳରେ ରହି ଯାଇଥିଲେ, ସେମାନେ ଦୃଶ୍ୟମାନ ହୋଇଛନ୍ତି।'' (ବାବଜୀ ନାଟ୍ୟରୂପ - ନିଜକଥା)

ମୂଳ ସଂଳାପକୁ ଖୁବ୍ ସଚେତନ ଭାବରେ ଗୋପାଳ ଛୋଟରାୟ ମାର୍ଜନା କରିଛନ୍ତି। ମୂଳରୁ ଶେଷ ପର୍ଯ୍ୟନ୍ତ ନାଟକୀୟ ପରିବେଶ ସୃଷ୍ଟି କରି ଉତ୍କଣ୍ଠା ରକ୍ଷା କରିବାକୁ ସେ ଚେଷ୍ଟା କରିଛନ୍ତି। କେତେକ ପାତ୍ରୋପଯୋଗୀ ଗୀତାଂଶ ସୃଷ୍ଟି କରି ସେ ବର୍ଣ୍ଣନାକୁ ବ୍ୟଞ୍ଜନାରେ ପରିଣତ କରିଛନ୍ତି ଓ ଘଟଣାମାନେ ଘଟୁଥିବାର ଅନୁଭବ ଆଣି ଦେଇଛନ୍ତି। ନାଟକର ଯୁଗୋପଯୋଗୀ ନାଟ୍ୟରୂପ ପ୍ରଦାନ ତାଙ୍କ ସାହିତ୍ୟିକ କୃତିତ୍ୱର ଅନ୍ୟ ଏକ ଦିଗନ୍ତ।

## ଶିଶୁ ଉପଯୋଗୀ ନାଟ୍ୟସ୍ରଷ୍ଟା

ନାଟ୍ୟକାର ଗୋପାଳ ଛୋଟରାୟ ଅନେକ ଶିଶୁ ନାଟକ ରଚନା କରିଛନ୍ତି। ଆକାଶବାଣୀର ଆବଶ୍ୟକତା ହେତୁ ମୁଖ୍ୟତଃ ଏଗୁଡ଼ିକ ସୃଷ୍ଟି ହୋଇଛି। 'ବଣଜଙ୍ଗଲର ବନ୍ଧୁ', 'ବାପପୁଅ', 'ଫୁଟ୍‌ବଲ-ଭଲ୍ଲିବଲ', 'ଛେନାପୋଡ଼ ପିଠା', 'ବନ୍ଧୁକ ଗଲା ଯୁଦ୍ଧକୁ', 'ବୋକାରାଜା-

ବୋକାମନ୍ତ୍ରୀ' ଓ 'ମହୁମାଛି' ଏହି ଶ୍ରେଣୀର ନାଟକ। ହାଲୁକା ମନୋରଞ୍ଜନଧର୍ମୀ ଏହି ନାଟକଗୁଡ଼ିକ ଶିଶୁମାନଙ୍କର ସୃଜନ ଶକ୍ତି ବୃଦ୍ଧିରେ ସହାୟକ ହେବା ସହିତ ସେମାନଙ୍କୁ ବିଭିନ୍ନ ବିଷୟ ସମ୍ପର୍କରେ ଜ୍ଞାନ ପ୍ରଦାନ କରିଥାଏ।

ଶିଶୁଉପଯୋଗୀ ନାଟକ ସୃଷ୍ଟି ପାଇଁ ଗୋପାଳ ଛୋଟରାୟଙ୍କର ନାଟକ ରଚନାର ପ୍ରଚୁର ଅଭିଜ୍ଞତା ଥିଲା। ସେଥିପାଇଁ ହୁଏତ ସେ ଏଭଳି ଶିଶୁନାଟକ ରଚନା ପାଇଁ ଆଗ୍ରହୀ ହୋଇଥିଲେ। ଭାଷା ପ୍ରୟୋଗରେ ସଚେତନ ଶିଳ୍ପୀ ଚରିତ୍ର ଉପଯୋଗୀ ସଂଳାପ ପ୍ରୟୋଗରେ ନିଜର ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି।

ତାଙ୍କର ମହିଳା ମଧ୍ୟବୟସ୍କା, ବେଣୀବନ୍ଧନୀ, ମକଦ୍ଦମା ଦେଖାଦେଖି ବା ପ୍ରଜାପତି ନିର୍ବନ୍ଧ ଅଫିସ୍ ଭଳି ନାଟକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ବାରମ୍ବାର ଅଭିନୀତ ହୋଇଥାଏ। ଏଗୁଡ଼ିକ ଶିଶୁ ନାଟକ ନ ହେଲେ ହେଁ ଶିଶୁସୁଲଭ ସରଳ ହାସ୍ୟରସ ପରିବେଷଣରେ ସ୍ୱତନ୍ତ୍ର ଯାହା ଶିଶୁ ଓ କିଶୋରମାନଙ୍କର ଆଗ୍ରହ ଉଦ୍ଦୀପକ ହୋଇଥାଏ।

## ହାସ୍ୟରସ ନାଟକର ସ୍ରଷ୍ଟା

ଗୋପାଳ ଛୋଟରାୟ ହାସ୍ୟରସକୁ ମୂଳ ଉପାଦାନ ଭାବେ ଗ୍ରହଣ କରି ଅନେକ ନାଟକ ରଚନା କରିଛନ୍ତି। ଦଶଗୋଟି ଏକାଙ୍କିକାର ସମନ୍ୱୟରେ ପ୍ରକାଶିତ 'ହାସ୍ୟରସର ନାଟକ' ପୁସ୍ତକ ପାଇଁ ସେ ୧୯୮୨ରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି। ହାସ୍ୟରସକୁ ଇଂରାଜୀରେ Wit, humour ଓ Satire ଭାବରେ ବିଭାଜିତ କରାଯାଇଛି। ଉଇଟ୍ ମଧ୍ୟରେ ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତିତା ଥାଏ। ହିଉମର୍ ନିଛକ ହାସ୍ୟରସ ଓ ସାଟାୟାର ହେଉଛି ବ୍ୟଙ୍ଗ। ହିଉମର୍ ବା ହାସ୍ୟରସକୁ ଆମେ (laugh with) ଓ Satireକୁ (laugh at) ବୋଲି କହିଥାଉ। ଅର୍ଥାତ୍ ହାସ୍ୟରସ ଯେଉଁ ଚରିତ୍ର ପାଇଁ ପ୍ରକାଶିତ ହୁଏ ସେ ଚରିତ୍ର ଦର୍ଶକମାନଙ୍କ ସହିତ ନିଜେ ହସେ, ମାତ୍ର ବ୍ୟଙ୍ଗରେ ଆମେ ଚରିତ୍ର ସମ୍ପର୍କରେ କିଛି କହି/ଲେଖି ଆନନ୍ଦିତ ହେବା ସମୟରେ ଚରିତ୍ରଟି ଦୟନୀୟ ଦେଖାଯାଏ। ନାଟକରେ ହାସ୍ୟରସ ଓ ବ୍ୟଙ୍ଗର ମଧୁର ସମନ୍ୱୟ ଦୃଷ୍ଟିଗୋଚର ହୁଏ, କାରଣ ହାସ୍ୟରସରେ ଯେଉଁ ସହାନୁଭୂତି ଚରିତ୍ର ପାଇଁ ରହିଥାଏ ତାହା ସମାଜିକ ବିଧିବ୍ୟବସ୍ଥା ପାଇଁ ବ୍ୟଙ୍ଗରେ ରୂପାନ୍ତରିତ ହୋଇଥାଏ। ହାସ୍ୟରସ ଓ ବ୍ୟଙ୍ଗର ସୁଷମ ସମନ୍ୱୟରେ ଫକୀରମୋହନଙ୍କ ଗଳ୍ପଗୁଡ଼ିକ ବେଶ୍ ଜୀବନ୍ତ। କାନ୍ତକବି ଲକ୍ଷ୍ମୀକାନ୍ତ ଓ ନାଟ୍ୟକାର ଉଦୟନାଥ ମିଶ୍ର ହାସ୍ୟରସ ସୃଷ୍ଟିରେ ନିଜନିଜର ଦକ୍ଷତାର ପରିଚୟ ଦେଇଛନ୍ତି।

ପାରମ୍ପରିକ ଓଡ଼ିଆ ଯାତ୍ରାରେ ଦର୍ଶକମାନଙ୍କର ଉତ୍‌କଣ୍ଠାକୁ ଧରିରଖିବା ପାଇଁ ଫାର୍ଶ ଓ ପ୍ରହସନମାନ ମୁଖ୍ୟ ନାଟକ ମଝିରେ ଖଞ୍ଜିଦିଆଯାଇଥିଲା ଯଦିଚ ଅନେକତ୍ର ଏଗୁଡ଼ିକ ନାଟକଠାରୁ ବିଚ୍ଛିନ୍ନ ଥିଲା। ଏହି ପ୍ରହସନରେ ପରିବେଷିତ ହାସ୍ୟରସ ସାଧାରଣତଃ ସ୍ଥୁଳ ହାସ୍ୟରସ। ବିକୃତ ଅଂଗଭଙ୍ଗୀ, ଅଶ୍ଳୀଳ ସଂଳାପ ଇତ୍ୟାଦିକୁ ନେଇ ଏହା ଗ୍ରାମ୍ୟ ଦର୍ଶକଙ୍କର ମନୋରଞ୍ଜନ କରିପାରୁଥିଲା। କ୍ରମେ ନାଟକରେ ପରିବେଷିତ ହାସ୍ୟରସରେ ସ୍ନିଗ୍ଧତା ସହିତ ଶାଣିତ ଅନ୍ତର୍ଦୃଷ୍ଟି

ସଂଯୁକ୍ତ ହେଲା ଓ ନାଟକରେ ହାସ୍ୟରସକୁ ଯଥୋଚିତ ମର୍ଯ୍ୟାଦା ପ୍ରଦାନ କରାଗଲା । ରାମଶଙ୍କର ରାୟଙ୍କର 'କଳିକାଳ' ଓ 'ବୁଢ଼ାବର', ଉଦୟନାଥ ମିଶ୍ରଙ୍କର 'କୋଇଲା କମ୍ପାନୀ' ଭଳି ନାଟକରେ ଲଘୁହାସ୍ୟ ଉପସ୍ଥାପନର ପ୍ରୟାସ କରାଯାଇଛି । ଏହି ଧାରାରେ ଗୋପାଳ ଛୋଟରାୟ ଅନେକ ଲଘୁ ନାଟକ ରଚନା କରିଛନ୍ତି ମାତ୍ର ଏହି ପର୍ଯ୍ୟାୟରେ ତାଙ୍କର ବିଶିଷ୍ଟ କୃତି 'ହାସ୍ୟରସର ନାଟକ' ଆଲୋଚିତ ହେବ ।

ବିୟୋଗାନ୍ତକ ନାଟକ ଦର୍ଶକ ମନରେ ଦୀର୍ଘସ୍ଥାୟୀ ପ୍ରଭାବ ପକାଇବାର ସମର୍ଥ ମାତ୍ର ହାସ୍ୟରସରେ ସାଧାରଣ ନରନାରୀଙ୍କର ଛୋଟ ଛୋଟ ମତଭେଦ, ପାରିବାରିକ ଜୀବନର ବିସଙ୍ଗତି, ପ୍ରେମ ଓ ବିବାହ, ଗ୍ରାମ୍ୟ ଜୀବନର କଳିଗୋଳ, ମାଲିମକଦ୍ଦମା, ଶିକ୍ଷା ସମ୍ପର୍କୀୟ ମନୋଭାବ ଇତ୍ୟାଦିକୁ ଖୁବ୍ ସମ୍ବେଦନଶୀଳ ଭାବରେ ରୂପ ଦିଆଯାଏ ଯେଉଁଥିରେ ନାୟକ ଓ ପ୍ରତିନାୟକ ଉଭୟଙ୍କ ପାଇଁ ସହାନୁଭୂତି ପ୍ରକାଶିତ ହୁଏ ।

ହାସ୍ୟରସର ନାଟକରେ *ବନନାସିକା, ଶେଷପର୍ଯ୍ୟନ୍ତ, ଜାଲ, ନାମମାହାତ୍ମ୍ୟ, କରୁଣାନିଧି, ମକଦ୍ଦମା, ବେଣୀବନ୍ଧନୀ, ମହିଳା ମଧ୍ୟବୟସ୍କା, ଦେଖାଦେଖି ଓ ଡାକ୍ତର ଜ୍ଵାଇଁ* ଶୀର୍ଷକର ଦଶଗୋଟି ଏକାଙ୍କିକା ରହିଛି । 'ବନନାସିକା'ର ଅର୍ଥ ହେଉଛି ସୁନ୍ଦରୀ ଚଳଚ୍ଚିତ୍ର ନାୟିକା ବନବାଳାଙ୍କ ନାସିକା ଭଳି ନାସିକା - ଅର୍ଥାତ୍ ଏହିଭଳି ସୁନ୍ଦର ନାସିକା ବିଶିଷ୍ଟ ତରୁଣୀକୁ ବିବାହ କରିବା ପାଇଁ କଲେଜ ପଢୁଆ ଯୁବକ ଆନନ୍ଦ ଆଗ୍ରହୀ ଓ ସେଥିପାଇଁ ସେ ଖବରକାଗଜରେ ବିଜ୍ଞାପନ ମଧ୍ୟ ଦେଇଛି । ଘଟଣାଟି ଆରମ୍ଭ ହୋଇଛି ନାସିକା ସମ୍ପର୍କୀୟ ଏକ ପ୍ରବନ୍ଧ ରଚନାରୁ ପ୍ରାଥମିକ ପର୍ଯ୍ୟାୟରେ କଲେଜ ପଢୁଆ ଯୁବକ ଖବରକାଗଜ ବା ପତ୍ରପତ୍ରିକାରେ ପ୍ରବନ୍ଧ ଲେଖି ନିଜକୁ ସମୟ ଉପଯୋଗୀ ଚିନ୍ତାଶୀଳ ବ୍ୟକ୍ତି ବୋଲି ମନେକରିବା ସ୍ୱାଭାବିକ ଥିଲା, ତେଣୁ ଆନନ୍ଦ ନାରୀର ନାକକୁ ନେଇ ଏକ ପ୍ରବନ୍ଧ ଲେଖିବ ଯେଉଁଥିରେ ସେ ନାକ ପ୍ରତି ଥିବା ପ୍ରାଚୀନ କବିମାନଙ୍କର ଅସୂୟାକୁ ଦୂର କରିଦେବ । ପୁତ୍ର ଖବରକାଗଜରେ ବିଜ୍ଞାପନ ଦେଇଥିବା ଦେଖି ପିତା ରାଧାମୋହନ ବାବୁ ଚିନ୍ତିତ । ସେ ଆନନ୍ଦ ପାଇଁ ସଦାଶିବ ବାବୁଙ୍କ କନ୍ୟା ନିରୁକୁ ଦେଖିବାକୁ ଯାଆନ୍ତି । ନିରୁର ଧାନ ନାକ କାଳେ ସେମାନଙ୍କର ଅପସନ୍ଦ ହେବ ସେଥିପାଇଁ ପରିବାରର ବନ୍ଧୁ ଡାକ୍ତର ବାବୁଙ୍କ ପରାମର୍ଶକ୍ରମେ ନିରୁକୁ ଏକ ଚଷମା ଲଗାଇ ଭଦ୍ରଲୋକଙ୍କ ସମ୍ମୁଖକୁ ଯିବାକୁ କୁହାଯାଏ । ସଦାଶିବ ବାବୁ ପ୍ରଥମେ ନିରୁକୁ ଆଖି ଖରାପ ବୋଲି ଭାବିନିଅନ୍ତି । ମାତ୍ର ପରିଣତିରେ ସର୍ବଗୁଣସମ୍ପନ୍ନା କନ୍ୟା ନିରୁ ପାଇଁ ଛୋଟ ନାକ ବାଧକ ହୁଏ ନାହିଁ । ଅପରପକ୍ଷରେ ଖବରକାଗଜରୁ ବନନାସିକା ବିଜ୍ଞାପନ ଦେଖି ମହିଳାମାନେ ଆନନ୍ଦଙ୍କ ନିକଟକୁ ଅନେକ ପତ୍ର ଲେଖି ତାଙ୍କୁ କଠୋର ସମାଲୋଚନା କରନ୍ତି । ନିଜେ ବନବାଳା ଦେବୀ ମଧ୍ୟ ତାଙ୍କ ନିକଟକୁ ନୋଟିସ୍ ପଠାନ୍ତି । ଶେଷରେ ପିତା ସଦାଶିବ ବାବୁଙ୍କ ସମ୍ମତିରେ ନିରୁର ଆନନ୍ଦ ସହିତ ବିବାହ ସ୍ଥିର ହୁଏ ।

ଦ୍ୱିତୀୟ ନାଟିକା 'ଶେଷ ପର୍ଯ୍ୟନ୍ତ' ମଧ୍ୟ ହାସ୍ୟରସର ଅନ୍ୟଏକ ଦିଗନ୍ତ ଉନ୍ମୋଚନ କରିଛି । ତିନିବର୍ଷର ବୈବାହିକ ଜୀବନ କଟାଇଥିବା ରୀତି ଓ ମାନସଙ୍କ ଜୀବନରେ 'ବାପା'ଙ୍କ ଚିଠି ଏକ ଝଡ଼ ସୃଷ୍ଟି କରିଛି । ବାପାଙ୍କଠାରୁ ଚିଠି ଆସିଛି ଯେ ପରମ୍ପରା ବିରୋଧୀ ବିବାହ ବାର୍ଷିକୀ

ଉତ୍ସବକୁ ସେ ଆସିପାରିବେ ନାହିଁ। ରୀତାଠାରୁ ଏ କଥା ଶୁଣି ମାନସ 'ବାପା'ଙ୍କୁ ରୀତାର ବାପା ଭାବି ତେଢ଼ାଲୋକ ବୋଲି ଗାଳି ଦେଇଛି। ବାପା ଅବୋଧ ନୃତ୍ୟ ଓ ବିଦେଶୀ ଶୈଳୀରେ ପରିବେଷିତ ସଙ୍ଗୀତ ଶୁଣିବାକୁ ଚାହାନ୍ତି ନାହିଁ ଶୁଣି ମାନସ ଆହୁରି କ୍ଷୁବ୍ଧ ହୋଇଛି। କିନ୍ତୁ ରୀତା ଯେ ତା' ବାପାଙ୍କୁ 'ବାପା' କହିଛି ଏକଥା ଜାଣିବା ପରେ ତା'ର କ୍ରୋଧ ଆହୁରି ବଢ଼ିଯାଇଛି। ରୀତା ଯେ ମାନସର ବାପାଙ୍କୁ ବାପା କହିବ ଏହା ସ୍ୱାଭାବିକ ମାତ୍ର ମାନସର ଗାଳି ଶୁଣି ରୀତା ହସିବାଟା ତାକୁ ଭଲ ଲାଗିନାହିଁ। ଉଭୟଙ୍କ କଳିଗୋଳ ଶେଷ ପର୍ଯ୍ୟାୟକୁ ଯାଇ ଛାଡ଼ବାଡ଼ ଯାଏ କଥା ଯାଇଛି। ପ୍ରତିବେଶୀ ଛାୟା ଓ ସୁକାନ୍ତ ଆସି ଉଭୟଙ୍କର ଜିନିଷପତ୍ରର ତାଲିକା ମଧ୍ୟ କରିଛନ୍ତି। ଦେଢ଼ବର୍ଷର ଏକମାତ୍ର ପୁଅ କାହାପାଖରେ ରହିବ, ଏ ନେଇ ଅଙ୍କକଷା ମଧ୍ୟ ହୋଇଛି। ଶେଷରେ ଛାୟା ଖୁବ୍ ହାଲୁକା ଭାବରେ ମନ୍ତବ୍ୟ ଦେଇଛି ଯେ ଆଉ ଗୋଟିଏ ସନ୍ତାନ ହେବା ପର୍ଯ୍ୟନ୍ତ ସେମାନେ ଏକାଠି ରହନ୍ତୁ। ରୀତା ଓ ମାନସର କଳିଗୋଳ ଶେଷ ହେଇଛି। ଛାୟା ଓ ସୁକାନ୍ତଙ୍କ ଦାମ୍ପତ୍ୟ ଜୀବନର ମଧୁର ଛବି ମଧ୍ୟ ଦର୍ଶକକୁ ଅଭିଭୂତ କରିଛି।

'ଜାଲ' ଏକ ଭିନ୍ନଧରଣର ଏକାଙ୍କିକା। ହଳଦୀଗୁଣ୍ଡ ବିକ୍ରିକରି କ୍ରମେ ସୁନା ବ୍ୟବସାୟୀ ପାଲଟିଥିବା ଗୋପୀନାଥ ଅର୍ଥର ଜାଲ ବିଛାଇ ନିଜ କନ୍ୟା ସୋଲେନ୍ ପାଇଁ ବର ଯୋଗାଡ଼ରେ ଲାଗନ୍ତି। ସମାଜିକ ସ୍ଥିତିର ପରିବର୍ତ୍ତନରେ ଗୋପୀନାଥଙ୍କ ପତ୍ନୀ ଦେଇଥିବା ପିଲାମାନଙ୍କ ନାମ 'ଶମ୍ଭୁଆ'ରୁ 'ସୋମା' ଓ 'ସୁଲି'ରୁ 'ସୋଲେନ' ପାଲଟି ଯାଇଛି। ସୋଲେନ କେମ୍ବ୍ରିଜ ପଢୁଆ ଝିଅ ଯାହା ମନକୁ କୌଣସି ବରପାତ୍ର ପାଉନାହିଁ। ତାଙ୍କ ଘରକୁ ଝିଅ ଦେଖା ବାହାନାରେ ଆସିଥିବା ଭିଜିଲାନ୍ସ ବିଭାଗର ଅଫିସରଦ୍ୱୟ ତାଙ୍କ ଗୁପ୍ତସମ୍ପତ୍ତି ସମ୍ପର୍କରେ ଥାନାକୁ ଜଣାଇ, ସେମାନଙ୍କୁ ଦଣ୍ଡ ଦିଆଇଛନ୍ତି। ଦୁର୍ନୀତି ପରାଜିତ ହୋଇଛି।

'ନାମମାହାତ୍ମ୍ୟ'ରେ ସ୍ୱଳ୍ପଶିକ୍ଷିତା ଭାବପ୍ରବଣ ଯୁବକ ସୁଧାକର ଚାକିରି ପାଇଁ ନବଘନଙ୍କ ଘର ଜଗି ପଡ଼ିଛି। ନବଘନଙ୍କ ବଡ଼ପୁଅ ଶରତ ବଡ଼ ଅଫିସର। ସେ ହୁଏତ ସୁଧାକରକୁ ଚାକିରି କରାଇ ଦେବ। ସୁଧାକର ପାଲା ଦେଖିବାକୁ ଯାଇ 'କାମକଳା' ନାମର ପ୍ରେମରେ ପଡ଼ିଯାଇଛି। ବଦଳି ହୋଇ ଶରତ ବାବୁ ତାଙ୍କର ସ୍ତ୍ରୀ, ତିନୋଟି ପିଲା ଓ ସହାୟିକା କାମକଳା ଆସି ପହଞ୍ଚିଯିବେ ବୋଲି ନବଘନ ବାବୁ କହିବାପରେ ସେ କାମକଳାକୁ ନେଇ ଅନେକ ସ୍ୱପ୍ନ ଦେଖିଛି ମାତ୍ର କାମକଳା ନାମ୍ନୀ ପରିଚାରିକା ପଞ୍ଚଷଠୀ ବର୍ଷ ବୟସ୍କା ଯିଏ ସୁଧାକର ବିଷୟରେ ଶରତ ବାବୁଠାରୁ ବହୁତ କଥା ଶୁଣି ତାକୁ ନାତି ଭାବରେ ପରିହାସ କରିଛି।

'କରୁଣାନିଧି'ରେ ବିବାହ ପୂର୍ବର ସାକ୍ଷାତକାରର ଚିତ୍ର ଦିଆଯାଇଛି। ରମାର ସ୍ୱାମୀ କରୁଣାକର ନିଜର ଶାଳୀ ଉମା ପାଇଁ ବରପାତ୍ର ଦେଖିଛନ୍ତି। ବରପାତ୍ର ଗୟାଧରର ମୁରବୀ ହେଲେ ତା'ର ମାମୁ ନିଧିରାମ। କରୁଣାକର ସହିତ ଦେବମନ୍ଦିର ଆସି ଅପେକ୍ଷା କରିଛନ୍ତି ମାତ୍ର ଉମା ବା ତା ବୋଉ ଆସିନାହାନ୍ତି। ନିଧିରାମ ବଡ଼ସାର୍ ମାୟାଧରକୁ ନେଇ ଗୟାଧରକୁ ଅପେକ୍ଷା କରି କରି ଖବର ପାଇଛନ୍ତି ଯେ ଗୟାଧର ଆସିବାକୁ ମନା କରିଦେଲା। ଫଳରେ ନିରୁପାୟ କରୁଣାନିଧି ନିଜର ପତ୍ନୀ ରମାକୁ ଉମା ସାଜି ଅଭିନୟ କରିବାକୁ ବାଧ୍ୟ କରିଛନ୍ତି। ଅନୁରୂପ ଭାବରେ

ନିଧିରାମ ମାୟାଧରଙ୍କୁ ଗୟାଧର ସଜାଇ ଉଭୟଙ୍କର ଦେଖାଚାହାଁ କରାଇଛନ୍ତି। ପରସ୍ପର ପରସ୍ପରଙ୍କୁ ପ୍ରଶ୍ନ ପଚାରିବା ଓ ଉତ୍ତର ଦେବା ଭିତରେ ଉଭୟ ପରସ୍ପରପ୍ରତି ଅନୁରାଗ ମଧ୍ୟ ପ୍ରକାଶ କରିଛନ୍ତି। ଯାହା କରୁଣାକର ଓ ନିଧିରାମଙ୍କୁ ସୁଖ ଲାଗିନାହିଁ। ଅପରପକ୍ଷରେ ଉମା ଓ ଗୟାଧରଙ୍କର ପଞ୍ଚୁଦୋଳରେ ସାକ୍ଷାତ ହୋଇଛି। ସେମାନେ ସାଙ୍ଗ ହୋଇ ଉମାଘରେ ପହଞ୍ଚି ଏମାନଙ୍କୁ ଅପେକ୍ଷା କରିବାର ସୂଚନା ଦିଆଯାଇ ନାଟକ ଶେଷ ହୋଇଛି। 'ମକଦ୍ଦମା' ନାଟକରେ ଗାଁର ବାପପୁଅ ଗଦାଧର ବସ୍ତିଆ, ରଙ୍ଗାଧର ବସ୍ତିଆ ଓ ଅନ୍ୟ ଦୁଇଟି ବାପପୁଅ ସାଧୁଚରଣ ଓଝା ଓ ଭକ୍ତଚରଣ ଓଝାଙ୍କର କୌଣସି କାରଣରୁ ଗଣ୍ଡଗୋଳ ହୋଇଛି। ଉଭୟ କୌଣସିମତେ ଡାକ୍ତର ଓ କମ୍ପାଉଣ୍ଡରଙ୍କୁ ପ୍ରଭାବିତ କରି ସାର୍ଟିଫିକେଟ୍ ଖଣ୍ଡିଏ ଲେଖାଏଁ ନେଇ ପରସ୍ପର ନାଁରେ ମକଦ୍ଦମା କରିବାକୁ ଇଚ୍ଛୁକ। ସେଥିଲାଗି କିଛି ଲାଞ୍ଚ ଦେବାକୁ ମଧ୍ୟ ସେମାନେ ଆଗ୍ରହୀ। କମ୍ପାଉଣ୍ଡର ବାବୁ ବସ୍ତିଆ ବାପପୁଅଙ୍କୁ ରୋଗ ପରୀକ୍ଷାଘରେ ଲୁଚାଇ ଓଝା ବାପପୁଅଙ୍କ ସାଙ୍ଗରେ କଥାବାର୍ତ୍ତା କରିଛନ୍ତି। ଡାକ୍ତରବାବୁ ସେମାନଙ୍କୁ ପରୀକ୍ଷା କରିବା ପାଇଁ ସମସ୍ତ ଆୟୋଜନ କରିବା ସମୟରେ ଉଭୟ ବାପପୁଅ ଅନ୍ଧାର ଘରେ ମରାମରି ହୋଇ ପ୍ରକୃତରେ ରକ୍ତାକ୍ତ ହୋଇଛନ୍ତି। ହାସ୍ୟକର ଭାବେ ଦେଖାଯାଇଛି ଯେ ବସ୍ତିଆ ପୁଅ ନିଜ ବାପାଙ୍କ ଦାନ୍ତ ଓ ଓଝା ପୁଅ ନିଜ ବାପାଙ୍କ କେଶ ଉପାଡ଼ି ଦେଇଛନ୍ତି। ଏହିଭଳି ନାଟକଟି ପରିଣତିରେ ପହଞ୍ଚିଛି।

'ବେଣୀବନ୍ଧନୀ' ନାଟକରେ ଯୁବକ ଟାଇପିଷ୍ଟ ଗୋଲକ ନିଜର ନବବିବାହିତା ପତ୍ନୀଙ୍କୁ ଟାଇପ୍ ଶିଖାଇବାକୁ ଚାହେଁ, କାରଣ ଉଭୟ ଚାକିରି କଲେ ସେମାନଙ୍କ ଚଳଣି ଉନ୍ନତ ହେବ। ମିସ୍ ସନ୍ଧ୍ୟା ରାୟ ସେହି ଅଫିସରେ କାମ କରନ୍ତି। ମଧୁସୂଦନ ଓ ସନ୍ଧ୍ୟା ସହକର୍ମୀ। ପୁରୁଣା ଟାଇପ୍ ମେସିନ୍ ସଜାଡ଼ି ଗୋଲକ ନିଜର ପତ୍ନୀ କନକକୁ ଆଣିଦିଏ। ସନ୍ଧ୍ୟା ତାକୁ ଟାଇପ୍ ଶିଖାଇବାକୁ ଆସି ଦେଖେ ଯେ ଟାଇପ୍ ମେସିନ୍‌ର ରିବନ୍ କଟା ହୋଇଛି। ସମସ୍ତଙ୍କୁ ଆମୋଦିତ କରି ପଡ଼ୋଶିନୀ ରେଖା ସୂଚନା ଦିଏ ଯେ କନକ ମେସିନ୍‌ର ରିବନ୍ କାଟି ମୁଣ୍ଡରେ ବାନ୍ଧିଛି। ଘରକରଣା କରି ଆନନ୍ଦ ଓ ସନ୍ତୋଷ ପାଉଥିବା ତରୁଣୀ କନକ ପାଇଁ ଚାକିରି ଟାଇପଶିଖା ସବୁ ଅବାନ୍ତର। ଷାଠିଏ ଦଶକରେ ମୁଷ୍ଟିମେୟ ଓଡ଼ିଆ ଝିଅ ଚାକିରି ପାଇଁ ପଦାକୁ ବାହାରିଥିଲେ। ଏହି ଏକାଙ୍କିକାର ସନ୍ଧ୍ୟା ରାୟ ସେମାନଙ୍କ ଭିତରୁ ଜଣେ। ମାତ୍ର ନିଜେ ଚାକିରି କରି ମଧ୍ୟ ସେ ଘରୋଇ ମହିଳାଙ୍କୁ ସମ୍ମାନ ଦୃଷ୍ଟିରେ ଦେଖେ। ତା'ର ସଂଳାପରେ '' x x x ତାଙ୍କୁ ଏ ଘରୁ ନେଇ ଅଫିସରେ ବସାଇବା ମାନେ ମନ୍ଦିରର ବିଗ୍ରହକୁ ନେଇ ରଙ୍ଗାଳୟରେ ସ୍ଥାପନ କରିବା। ମତେ ନିଶ୍ଚୟ ଚିହ୍ନପାରୁଥିବ କନକ ଦେଈ। ମୁଁ ସନ୍ଧ୍ୟା ରାୟ। ଟାଇପିଷ୍ଟ। ମୋରି ଧର୍ମ ତମେ ଗ୍ରହଣ କରିବାକୁ ଯାଉଥିଲ। କିନ୍ତୁ ସବୁଝିଅ ଯେ ଟାଇପିଷ୍ଟ ହେବାକୁ ଜନ୍ମ ହୋଇନାହାନ୍ତି। ଟାଇପ୍ ମେସିନ୍‌ରୁ ଫିତା କାଟି ଏ ଶିକ୍ଷା ତମେ ଆମ ସମସ୍ତଙ୍କୁ ଦେଇଚ''- (ହାସ୍ୟରସର ନାଟକ - ପୃ: ୧୪)। ଏହି ସଂଳାପ ହାସ୍ୟରସକୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମୋଡ଼ ଦେଇଛି ଓ ନାଟକରେ ପରମ୍ପରା ପ୍ରତି ନାଟ୍ୟକାରଙ୍କର ଆନୁଗତ୍ୟର ଛବି ଫୁଟି ଉଠିଛି।

'ମହିଳା ମଧ୍ୟବୟସ୍କା'ରେ  ଜଣେ ମଧ୍ୟବୟସ୍କା ମହିଳାଙ୍କର ଔଷଧ ତଥା ରୋଗ ପ୍ରତି ଅହେତୁକ ଗୁରୁତ୍ୱର କଥା କୁହାଯାଇଛି। ବିଦେଶର ଜଣେ ମଧ୍ୟବୟସ୍କା ମହିଳା ତାଙ୍କର ମୃତ୍ୟୁ ପରେ ଡାକ୍ତର ତାଙ୍କୁ ଦେଇଥିବା ସମସ୍ତ ଔଷଧ ଗୋଟାଏ ବାକ୍‌ସରେ ରଖି ତାଙ୍କୁ ଉପହାର ପ୍ରଦାନ କରିଥିବା ଏକ ଖବର ଡାକ୍ତର ବାବୁଙ୍କୁ ଚକିତ  କରିଛି। ଅର୍ଥାତ୍ ଜମା ଔଷଧ ନ ଖାଇ ମଧ୍ୟ ଜଣେ ବଞ୍ଚିପାରେ। ମାତ୍ର ନାଟକର ମଧ୍ୟବୟସ୍କା ମହିଳା ଯଶୋଦା ଡାକ୍ତର ବାବୁଙ୍କୁ ଅଯଥାରେ ବ୍ୟସ୍ତ କରନ୍ତି। ଅନ୍ୟ ରୋଗୀମାନଙ୍କ ସହିତ ଡାକ୍ତରଙ୍କର କଥୋପକଥନ ମଝିରେ କଥା କହି ପରିସ୍ଥିତିକୁ ଜଟିଳ କରନ୍ତି। କିନ୍ତୁ ନିଜେ ରୋଗ ପାଇଁ ଯେତିକି ସଚେତନ ହେବା କଥା ତାହା ହୋଇପାରନ୍ତିନାହିଁ। ତେଣୁ ରୋଗୀକୁ ସେ ମୂଳା, ଚକୁଳିପିଠା, ସଜନା ଶାଗ, ଶେଉଳମାଛ, ବାଲିଆ ମାଛ, ଉଷୁନା ଭାତ, ଦହି ଛେନା ଇତ୍ୟାଦି ଦେବେ ବୋଲି କହି ହାସ୍ୟରସ ସୃଷ୍ଟି କରନ୍ତି। ପରିଶେଷରେ ଡାକ୍ତରବାବୁ ତାଙ୍କର ରୁଗ୍‌ଣସ୍ୱାମୀଙ୍କୁ ଔଷଧ ଦେବା ଛାଡ଼ି ସେହି ମହିଳାଙ୍କୁ ନିଶା ଔଷଧ ଦେଇଛନ୍ତି, ଯାହା ଫଳରେ ତାଙ୍କ ସ୍ୱାମୀ କିଛି ସମୟ ଶୋଇ ପାରିବେ।

'ଦେଖାଦେଖି' ଏକାଙ୍କୀରେ ଗାଁର ଭଦ୍ରଲୋକ ଭୋଳାନାଥ ନିଜ ଭଣଜା ପାଇଁ ବାହାଘର ଠିକଣା କରିଛନ୍ତି। ଭଣଜା ମକୁ ବାହାଘର କଥା ଶୁଣି ଲାଜ କରେ। ତା'ର ଭାବୀ ଶ୍ୱଶୁର ଗୋପସୁନ୍ଦର ଦାସ ଓ ତାଙ୍କ ସହଯୋଗୀ ଧଡ଼ିବାବୁ ଘର ବର ଦେଖି ଆସନ୍ତି ଓ ଦାମୁଡ଼ି କିଣିବାକୁ ଆସିଛନ୍ତି ବୋଲି ଭୋଳାନାଥଙ୍କୁ ସୂଚନା ଦିଅନ୍ତି। ଫଳରେ ଉଭୟ ବାଡ଼ିଆଡ଼େ ଖରାରେ ଦାମୁଡ଼ିକୁ ଅପେକ୍ଷା କରି ବସନ୍ତି। ଅପରପକ୍ଷରେ ଦାମୁଡ଼ି କିଣିବାକୁ ଆସିଥିବା ମନ୍ଦରଧରଙ୍କୁ ଗୋପସୁନ୍ଦର ମନେକରି ଖୁବ୍ ଅଭ୍ୟର୍ଥନା କରାଯାଏ। ପରିଶେଷରେ ଏହି ସତ୍ୟ ଉଦ୍‌ଘାଟିତ ହୁଏ ଓ ଦାମୁଡ଼ିକୁ ଅପେକ୍ଷା କରି ବସିଥିବା ଗୋପସୁନ୍ଦର ଭାବୀ ସମୁଦି ଭାବରେ ଭୋଳାନାଥଙ୍କ ଦ୍ୱାରା ଗୃହୀତ ହୁଅନ୍ତି।

'ଡାକ୍ତର ଜ୍ୱାଇଁ'ରେ ବୟସ୍କ ଅବିବାହିତ ଡାକ୍ତର ବାବୁଙ୍କୁ କମ୍ପାଉଣ୍ଡର ବାବୁ ରୋଗୀ ଦେଖା ବାହାନାରେ କନ୍ୟା ଦେଖିବାକୁ ଡାକିନିଅନ୍ତି। ଡାକ୍ତରବାବୁ ରୋଗୀ ଲତାକୁ ଶୀଘ୍ର ଦେଖିବା ପାଇଁ ଚାହାନ୍ତି। ଲତାକୁ ତା' ଦେହ ଖରାପ ସମ୍ପର୍କରେ ପ୍ରଶ୍ନ ମଧ୍ୟ ପଚାରନ୍ତି ଓ ତା'ର ନାଡ଼ି ଦେଖନ୍ତି। କମ୍ପାଉଣ୍ଡର ବାବୁ ତାକୁ ସତକଥା କହିବା ପରେ ସେ ଲତାକୁ ନିଜ ସାନଭାଇ ପାଇଁ ପସନ୍ଦ କରି ମୁଦି ପିନ୍ଧାଇ ଦିଅନ୍ତି। ତାଙ୍କ ସାନଭାଇ ମଧ୍ୟ ଡାକ୍ତର। ତେଣୁ ପର୍ଶୁରାମ ଓ ତାଙ୍କ ପତ୍ନୀଙ୍କର ଡାକ୍ତର ଜ୍ୱାଇଁ କରିବା ସ୍ୱପ୍ନ ସାର୍ଥକ ହୁଏ।

ହାସ୍ୟରସର ନାଟକ ସମ୍ପର୍କରେ ଆଲୋଚନା କରି ଡଃ ବିଭୂତି ପଟ୍ଟନାୟକ କୁହନ୍ତି, ''ଏ ସଂକଳନରେ ପତ୍ରସ୍ଥ ନାଟକଗୁଡ଼ିକ ହାସ୍ୟରସର ନାଟକ ସତ୍ୟ କିନ୍ତୁ ଏହା ଉଚ୍ଚହାସ୍ୟ କିମ୍ବା ଅଟ୍ଟହାସ୍ୟର ନାଟକ ନୁହେଁ। ସ୍ମିତ ଓ ମୃଦୁହାସ୍ୟର ଅମ୍ଳ-ମଧୁର ରସରେ ଏ ନାଟିକାଗୁଡ଼ିକ କେବଳ ସିକ୍ତ। ବୁଦ୍ଧିଦୀପ୍ତ ହାସ୍ୟଧର୍ମୀ ରଚନାର ଏହା ହିଁ ହେଉଛି ଲକ୍ଷଣ। ଏହା ବିଦଗ୍ଧ ପାଠକ ଓ ଦର୍ଶକମାନଙ୍କ ସୂକ୍ଷ୍ମ ରସାନୁଭୂତିକୁ ଆଲୋଡ଼ିତ କରି ସେମାନଙ୍କ ହୃଦୟକୁ ପରିତୃପ୍ତ

ଆନନ୍ଦରେ ଭରିଦିଏ। ଦର୍ଶକ ଓ ପାଠକମାନଙ୍କୁ ସ୍ଥୁଳ ରସବୋଧକୁ କୁତୁକୁତୁ କରିବା ଏହାର ଧର୍ମ ନୁହେଁ। ଏଭଳି ନାଟକର ରସ ଆସ୍ୱାଦନ କରିବାକୁ ହେଲେ ସଂଳାପର ପ୍ରତିଟି ଶବ୍ଦର ତାତ୍ପର୍ଯ୍ୟ ବୁଝିବାକୁ ହୁଏ।'' (ଗୋପାଳ ଛୋଟରାୟ ନାଟ୍ୟମାନସ- ନାଟକରେ ହାସ୍ୟରସ ଓ ହାସ୍ୟରସର ନାଟକ - ଅଧ୍ୟାପକ ବିଭୂତି ପଟ୍ଟନାୟକ- ପୃ :୧୧୦)

## ଧାରାବାହିକ ନାଟକର ସ୍ରଷ୍ଟା

ବେତାର ଉପଯୋଗୀ ଧାରାବାହିକ ରଚନାର ଆଦ୍ୟ ପ୍ରଚେଷ୍ଟା ଗୋପାଳ ଛୋଟରାୟଙ୍କଠାରୁ ଆରମ୍ଭ ହୋଇଛି। ତାଙ୍କର ସମକାଳୀନ ଓ ପରବର୍ତ୍ତୀ ଅନେକ ନାଟ୍ୟକାର ଧାରାବାହିକ ରଚନା କରିଥିଲେ ହେଁ ଏ କ୍ଷେତ୍ରରେ ଗୋପାଳ ଛୋଟରାୟଙ୍କ ସିଦ୍ଧି ଅବିସମ୍ବାଦିତ ହୋଇ ରହିଛି। ଡଃ ଜୟନ୍ତ କୁମାର ଦାସଙ୍କ ଭାଷାରେ ''ଓଡ଼ିଆରେ ପ୍ରଥମେ ଧାରାବାହିକ ନାଟକ ରଚନାର ପରମ୍ପରା ଗୋପାଳ ବାବୁ ହିଁ ସୃଷ୍ଟି କରିଛନ୍ତି। ଗୌହାଟୀର 'ମଇନାସମ୍ବାଦ' କିମ୍ବା ପାଟଣାର 'ଲୋହାସିଂ'ର ସଫଳତା ହୁଏତ ଏ ଦିଗରେ ତାଙ୍କୁ ପ୍ରେରଣା ଯୋଗାଇଥିବ।'' (ଓଡ଼ିଆ ବେତାର ନାଟକ - ଡଃ ଜୟନ୍ତ କୁମାର ଦାସ - ପୃ :୧୮୦)

ନବ ପ୍ରତିଷ୍ଠିତ ଆକାଶବାଣୀରେ ପ୍ରଚାର ନିମନ୍ତେ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ନାଟକମାନ ଆବଶ୍ୟକ ହେଉଥିଲା। ଏହି ଦାୟିତ୍ୱ କର୍ତ୍ତୃପକ୍ଷ ଗୋପାଳବାବୁଙ୍କୁ ଅର୍ପଣ କରିଥିଲେ। ତେଣୁ ଲଘୁ ହାସ୍ୟରସ ତଥା ମଧ୍ୟବିତ୍ତ ପରିବାରର ପୃଷ୍ଠଭୂମିରେ ନାଟକମାନ ରଚନା କରିବାକୁ ଗୋପାଳ ବାବୁ ଦାୟ ଭାବରେ ଗ୍ରହଣ କରି ଆକାଶବାଣୀର ଚାହିଦା ପୂରଣ କରିବା ସହିତ ଓଡ଼ିଆ ଶ୍ରୋତାମାନଙ୍କ ମନରେ ନିଜ ପାଇଁ ଏକ ସମ୍ମାନଜନକ ସ୍ଥାନ ସୃଷ୍ଟି କରି ପାରିଥିଲେ। ସେ ପ୍ରଥମେ ରଚନା କରିଥିଲେ 'ପୂରାପୂରି ପାରିବାରିକ', ଯାହା ୧୯୫୭ ଅଗଷ୍ଟରୁ ଆରମ୍ଭ ହୋଇ ୧୯୬୦ ମାର୍ଚ୍ଚରେ ଶେଷ ହୋଇଥିଲା। ଏହା ଥିଲା ୩୩ଟି ଚିତ୍ର ସମ୍ବଳିତ ଓ ଏହା ମାସିକ ଭାବରେ ପ୍ରଚାରିତ ହୋଇଥିଲା। 'ପୂରାପୂରି ପାରିବାରିକ' ପରେ 'ବିଭ୍ରାଟ'(୧୨ଟି ଚିତ୍ର), 'ଗାଁ ପରିମଳ'(୯ଟି ଚିତ୍ର), 'ଶୁକ ଉବାଚ'(୬ଟି ଚିତ୍ର), 'ଡାକ୍ତରବାବୁ'(୧୨ଟି ଚିତ୍ର), 'ଅବସର ଗ୍ରହଣ ପରେ'(୧୨ଟି ଚିତ୍ର), 'ବହୁରୂପୀ'(୬ଟି ଚିତ୍ର), 'ଶ୍ରୀହରିଙ୍କ ସଂସାର' (୪୮ଟି ଚିତ୍ର), 'ଦୃଷ୍ଟିପାତ'(୬ଟି ଚିତ୍ର), 'ଏମିତି ହୁଏ ନାହିଁ'(୮ଟି ଚିତ୍ର) ସେ ରଚନା କରିଛନ୍ତି। 'ଦୃଷ୍ଟିପାତ' ୬ ମାସ, 'ଶୁକ ଉବାଚ' ୩ ମାସ(ପାକ୍ଷିକ), 'ଗାଁ ପରିମଳ' ୯ମାସ, 'ବହୁରୂପୀ' ୬ ମାସ, 'ଅବସର ଗ୍ରହଣ ପରେ' ୬ ମାସ, 'ଏମିତି ହୁଏ ନାହିଁ' ପାକ୍ଷିକ ଭାବରେ ତିନି ମାସ ଧରି ପ୍ରଚାରିତ ହୋଇଥିଲା। ଅପରପକ୍ଷରେ 'ପୂରାପୂରି ପାରିବାରିକ' 'ବିଭ୍ରାଟ' ଓ 'ଡାକ୍ତରବାବୁ' ମାସିକ ଭାବରେ ପ୍ରଚାରିତ ହୋଇଛି। 'ବିଭ୍ରାଟ' ଓ 'ଡାକ୍ତର ବାବୁ'ର ମୁଖ୍ୟ ଉପଜୀବ୍ୟ ଥିଲା ସରସ ହାସ୍ୟରସ ସୃଷ୍ଟି କରିବା। ମାମୁଙ୍କୁ ନେଇ ପ୍ରତି କ୍ଷେତ୍ରରେ ବିଭ୍ରାଟ ଦେଖାଦେଇଥିଲା। ଡାକ୍ତର ଓ କମ୍ପାଉଣ୍ଡରଙ୍କର ବିଭିନ୍ନ ଆପତ୍ତି ଅଭିଯୋଗ ଶୁଣିବାର ଭଙ୍ଗୀ ହାସ୍ୟରସାତ୍ମକ ଥିଲା।

## ପୂରାପୂରି ପାରିବାରିକ

ଏହି କ୍ରମିକ ନାଟକରେ ତିନୋଟି ପରିବାର ଦୃଷ୍ଟିଗୋଚର ହୁଅନ୍ତି। ଗୋବର୍ଦ୍ଧନ ବାବୁଙ୍କ ପରିବାରକୁ ନେଇ ୧୯୫୭ ଜୁଲାଇରୁ ୧୯୫୮ ଜୁନ୍ ମଧ୍ୟରେ ରଚିତ କ୍ରମିକ ନାଟକ। ଦ୍ୱିତୀୟ ପରିବାରମାନେ ହେଲେ ଓକିଲ ବାବୁ, ଡାକ୍ତର ବାବୁ, ଗାଁ ମହାଜନ, କବି, ମାଷ୍ଟର ବାବୁ, ପ୍ରିୟ ବାବୁ (ଅଡ଼ିଟର), ଶୋଭା ଦେବୀ (ନର୍ସ), ଓଭରସିୟର ବାବୁ, ହେଲ୍‌ଥ ଅଫିସର ଓ କଟକୀ ବାବୁ। ୧୯୫୮ ଅଗଷ୍ଟରୁ ୧୯୫୯ ଅଗଷ୍ଟ ଥିଲା ଏହାର ପ୍ରସାରଣ ସମୟ। ତୃତୀୟ ପରିବାର ହେଉଛି ମୁରାରୀ ବାବୁଙ୍କ ପରିବାର। ଏହା ୧୯୫୯ ସେପ୍ଟେମ୍ବରରୁ ୧୯୬୦ ମାର୍ଚ୍ଚ ମଧ୍ୟରେ ପ୍ରସାରିତ ହୋଇଥିଲା।

ଗୋବର୍ଦ୍ଧନ ବାବୁଙ୍କ ପରିବାର କହିଲେ ଗୋବର୍ଦ୍ଧନ ବାବୁ, ତାଙ୍କ ପତ୍ନୀ କୁନ୍ତଳା ଦେବୀ, ପୁଅ ବିଜୁ ଓ ଝିଅ ଇତି। ପୂଜାରୀ ସାଧୁ ଓ ଚାକର ରାଧୁ ମଧ୍ୟ ସେହି ପରିବାରର ଅନ୍ତର୍ଭୁକ୍ତ। ମଧ୍ୟବିତ୍ତ ପରିବାରରେ ସାଧାରଣତଃ ଘଟୁଥିବା ଛୋଟ ବଡ଼ ସମସ୍ୟା ଯଥା ପିଲାଙ୍କ ପାଠପଢ଼ା କ୍ରିକେଟ ଖେଳ ପାଇଁ ଆଗ୍ରହ, ଦଶହରା, କୁକୁଡ଼ା ପାଳନ ପାଇଁ ଆଗ୍ରହ, ପରିବାରକୁ ବନ୍ଧୁ ଆଗମନ ଓ ପରିବାରରେ ଏହାର ପ୍ରତିକ୍ରିୟା ପ୍ରଭୃତିକୁ ନେଇ ଏହାର କାହାଣୀ ଭାଗ ଗତିଶୀଳ। ଓଡ଼ିଶାରେ ଷାଠିଏ ଦଶକରେ କ୍ରମେ ଲୋକପ୍ରିୟ ହେଉଥିବା କ୍ରିକେଟ ଖେଳ ପାଇଁ ଘରେ ଚାମଚ ବେଲଣା କାଠି ଅମୃତଭଣ୍ଡା ବାଦ୍ ନ ପଡ଼ିବା, ଦଶହରାରେ ନୂଆ ଜାମା ପ୍ୟାଣ୍ଟ ସହିତ ବେଲ୍‌ଟ ନ ଦେଇ ପାରି କନାଧଡ଼ିରେ କାମ ଚଳାଇ ଦେବାକୁ ତାଗିଦ ! ଦରଦାମ ବୃଦ୍ଧି ଓ ପରିବାର ଉପରେ ତା'ର ପ୍ରତିକ୍ରିୟାକୁ ନାଟ୍ୟକାର ଖୁବ୍ ସ୍ୱାଭାବିକ ଭାବରେ ଅଙ୍କନ କରିଛନ୍ତି। ଅଳ୍ପ ପାଠୋଇ କୁନ୍ତଳାଙ୍କୁ ପିଲାମାନେ ପାଠ ସମ୍ପର୍କରେ ପଚାରି ପରିହାସ ମଧ୍ୟ କରନ୍ତି। ଗୋବର୍ଦ୍ଧନ ବାବୁଙ୍କ ଘରୁ କୁକୁଡ଼ା ଚୋରି, ଇତିର ଟେବୁଲ କ୍ଲଥ ତିଆରି, ରାଧୁ ସାଧୁଙ୍କର ଥେଟର ଦେଖା ସଉକ, ଗୁଣ୍ଡ ଚାହାର ବ୍ୟବହାର, କଟକରେ ପିଲା ଚୋରି, ବଦଳି ପାଇଁ ଆଗ୍ରହ ମାତ୍ର ପୁରୁଣା ଘରର ପୋଇତ୍‌ଙ୍କ, କଖାରୁ ଫୁଲ ଛାଡ଼ିଯିବାକୁ ଅନିଚ୍ଛା, ନାରୀସୁଲଭ ଅଭିମାନ ସହିତ ଘରଣୀପଣର ପରାକାଷ୍ଠା ଏହି ସବୁ ଧାରାବାହିକରେ ଦେଖିବାକୁ ମିଳେ। ଗୋବର୍ଦ୍ଧନ ବାବୁଙ୍କ ପରିବାରରେ ପତ୍ନୀ କୁନ୍ତଳା ଅଳ୍ପଶିକ୍ଷିତା ମାତ୍ର ବିଚାରଶୀଳା। ସେହିପରି ସମ୍ପନ୍ନ ପରିବାରରେ ଏକାଧିକ ଭୃତ୍ୟ ରଖିବା ଷାଠିଏ ଦଶକର କଟକ ସହରରେ ମଧ୍ୟ ସ୍ୱାଭାବିକ ଥିଲା। ରୁଷାଘୋଷା, ମାନ ଅଭିମାନ ସହିତ ପରସ୍ପର ପ୍ରତି ସ୍ନେହ ଓ ସମ୍ମାନ ଯେ ପାରିବାରିକ ଜୀବନର ମୂଳକଥା ଏହା ଗୋବର୍ଦ୍ଧନ ବାବୁ ଓ ତାଙ୍କ ପରିବାର ପ୍ରମାଣ କରିଛନ୍ତି।

'ପୂରାପୂରି ପାରିବାରିକ'ର ଦ୍ୱିତୀୟ ଭାଗରେ ଭିନ୍ନ ଭିନ୍ନ ପରିବାରକୁ ନେଇ କାହାଣୀମାନ ଗତିଶୀଳ। ଓକିଲ ବାବୁଙ୍କ ପରିବାର କହିଲେ ଗଣେଶ୍ୱର ବାବୁ, ତାଙ୍କ ପତ୍ନୀ ପାର୍ବତୀ ଦେବୀ, ପୁଅ ଡାକ୍ତରୀଛାତ୍ର ଅଜୟ ଓ ଝିଅ ମୀରା। ମୋହରିର ନବଘନ ଓ ପାର୍ବତୀଙ୍କ ମାମୁ ଘର ଗାଁରୁ ଆସିଥିବା କାଶୀନାଥଙ୍କୁ ନେଇ ଏହି ପରିବାରରେ ସମସ୍ୟା ସୃଷ୍ଟି ହୁଏ। ପୁରୀ ଯାଇ ଓକିଲାତିରୁ

କିଛି ଦିନ ଅବ୍ୟାହତି ଚାହୁଁଥିବା ଗଣେଶ୍ୱର ବାବୁ ପୁରୀରେ ମଧ୍ୟ ଓକିଲାତି ନେଇ ବ୍ୟସ୍ତ ରହନ୍ତି ମାତ୍ର ପାର୍ବତୀଙ୍କ ଆଗ୍ରହ ଓ କୌଶଳ ଫଳରେ ମୀରାର ବିଭାଘର ପକ୍‌କା ହୋଇଯାଏ। ଡାକ୍ତର ବାବୁ ପରିବାରରେ ଡାକ୍ତର ନରହରି ଦାସ, କମ୍ପାଉଣ୍ଡର ବାବୁ, ଡାକ୍ତରଙ୍କ ପତ୍ନୀ ଲକ୍ଷ୍ମୀ ଦେବୀ, କନ୍ୟା ମାଧବୀ ଓ ତା'ର ଭାବୀସ୍ୱାମୀ ବିକ୍ରମ ଅନ୍ତର୍ଭୁକ୍ତ। ଡାକ୍ତରମାନେ ଅନ୍ୟ ରୋଗୀଙ୍କୁ ଚିକିତ୍ସା କରିବାରେ ବ୍ୟସ୍ତ ରହୁଥିବାବେଳେ ତାଙ୍କ ପତ୍ନୀ କନ୍ୟା ଓ କମ୍ପାଉଣ୍ଡର ବାବୁ ଅସୁସ୍ଥ ରହନ୍ତି ଓ ସ୍ୱାଭାବିକ ହେବାର ପ୍ରୟାସ ଜାରି ରଖନ୍ତି। 'ଗାଁ ମହାଜନ' ପରିବାରର ପୃଷ୍ଠଭୂମି ଓଡ଼ିଶାର ମଫସଲ ଗାଁ। ମହାଜନ ସନେଇ ସାହୁ ଦୁର୍ଗାସ୍ତୋତ୍ର ପାଠ କରୁ କରୁ ଆୟବ୍ୟୟର ହିସାବ କରନ୍ତି। ୧୯୫୮ ଅକ୍ଟୋବର ପହିଲାରୁ ଓଡ଼ିଶାରେ ମେଟ୍ରିକ ଓଜନ ଧାରା ପ୍ରଚଳିତ ହୋଇଛି। ଯାହାର ପ୍ରଭାବ ଲେଖକ ସିଧାସଳଖ ଧରିରଖିଛନ୍ତି। ସନେଇ ସାହୁ ସେର, କିଲୋଗ୍ରାମ ମହଣ କୁଇଣ୍ଟାଲ ଭିତରେ ଥିବା ପ୍ରଭେଦ ଜାଣି ପାରନ୍ତିନାହିଁ। କିନ୍ତୁ ତାଙ୍କ ପୁଅ ସନାତନ କୁଶିଆ ଓ ଝିଅ ମାଳ ପରିବର୍ତ୍ତିତ ସମୟ ସହିତ ଟିକିଏ ଭଲ ଖାଇବା ପିନ୍ଧିବାକୁ ଚାହାନ୍ତି। ଶେଷରେ ମାଲଗୋଦାମର ନୀଳମଣି ସାହୁଙ୍କ ପୁଅ ବିଶ୍ୱଜିତ୍ ହିଁ ସନେଇଙ୍କ ଗୋଦାମକୁ ପାଟେଣା ଗାଁ ଶାଢ଼ି ବଦଳରେ ପାରାଗାଓଁ ଶାଢ଼ି ପଠାଇଛି ଓ ସନିଆକୁ ସନତ କୁମାର, ମାଳକୁ ମାଳବିକା ଓ କୁଶିଆକୁ କିଶାନ କୁମାରରେ ପରିବର୍ତ୍ତିତ କରିଦେଇଛି।

କବି ପରିବାରରେ କବି ମାନସ ଓ ତାଙ୍କ ପତ୍ନୀ ରାଧା କିଭଳି ନିଜ ନିଜ ଢଙ୍ଗରେ କବିତା ବୁଝନ୍ତି ତାହା ଶ୍ରୋତାକୁ ଆମୋଦିତ କରେ। ଶେଷରେ ଶ୍ୱଶୁର କୁଞ୍ଜବିହାରୀ ଜ୍ୱାଇଁଙ୍କୁ ତାଙ୍କ ପାଇଁ ମଙ୍ଗଳାସ୍ତୁତି ଲେଖି ଦେବାକୁ ଅନୁରୋଧ କରନ୍ତି। ଶାଳୀ ଯମୁନା ବାହାଘର ଗୀତ ଲେଖି ଦେବାକୁ ଫର୍ମାସ କରେ ଓ ଶଳା ତା'ର ବିଡ଼ି ବିକ୍ରିପାଇଁ ଗୀତ ଲେଖିଦେବାକୁ ଜିଗର କରେ। କବିଟିଏ କବିତା ଲେଖିବାକୁ ସମୟ ପାଏ ନାହିଁ ମାତ୍ର ତା'ଦ୍ୱାରା ସମସ୍ତେ ନିଜ ନିଜ ସୁବିଧା କରିନିଅନ୍ତି।

ମାଷ୍ଟରବାବୁ ପରିବାରରେ ଗଣିତ ମାଷ୍ଟର ସୁମନ୍ତ ବାବୁ ଖାତା ଦେଖିବା ବେଳେ ପୁଅ ଫେଲୁ ଝିଅ ଲୀଳା, ଏପରିକି ପତ୍ନୀ ଗାୟତ୍ରୀ ଦେବୀଙ୍କ ଦାଦା ଅଭିରାମ ବାବୁ ପରୀକ୍ଷା ଖାତାରେ ନମ୍ବର ବଢ଼ାଇବା ପାଇଁ ବିଭିନ୍ନ ରୋଲ୍ ନମ୍ବର ନେଇ ତାଙ୍କ ପାଖକୁ ଆସନ୍ତି। ବିବ୍ରତ ସୁମନ୍ତ ବାବୁ ଘର ଛାଡ଼ି ନିରୁପାୟ ହୋଇ ଖାତାପତ୍ର ଧରି ସ୍କୁଲକୁ ଚାଲିଯାଆନ୍ତି।

ପ୍ରିୟ ବାବୁ ଅଡିଟରଙ୍କ ପରିବାରରେ କାହାଣୀ ଆରମ୍ଭ ହୁଏ କଣ୍ଢେଇ ବାହାଘରରୁ। ଅଡିଟର ବାବୁଙ୍କର ଆଠ ବର୍ଷର ଝିଅ ରାନୁ କଣ୍ଢେଇକୁ ସବୁ ଭାରଥୋଇ ଦିଏ ମାତ୍ର ଧାଈମା' କଣ୍ଢେଇଟିଏ ନ ଦେବାରୁ ରାନୁର ସାଙ୍ଗ ବିଜୁ ତା ପୁଅକୁ ନେଇ ଚାଲିଯାଏ। ଏ କଥା ଦେଖି ପ୍ରିୟ ବାବୁ ଚିନ୍ତାଗ୍ରସ୍ତ। ପରିବାର ନିୟୋଜନ ସମ୍ପର୍କରେ ଏ ନାଟକର ସୂଚନା ଦିଆଯାଇଛି ମାତ୍ର ଅନ୍ତିମ ପର୍ଯ୍ୟାୟରେ ଡାକ୍ତରାଣୀ ସୂଚନା ଦେଇଛନ୍ତି ଯେ ରାନୁର ପୁଣି ଗୋଟିଏ ଭାଇ ବା ଭଉଣୀ ଜନ୍ମ ନେବାକୁ ଯାଉଛି।

ନର୍ସ ଶୋଭା ଦେବୀ ନିଜ ସ୍ୱାମୀଙ୍କ ଉପରେ ହୁକୁମ୍ ଜାରି କରନ୍ତି। ମାଧବ ବାବୁଙ୍କ ସ୍ୱାସ୍ଥ୍ୟରକ୍ଷା ନାମରେ ସେ ତାଙ୍କ ଉପରେ ରୀତିମତ ଅତ୍ୟାଚାର କରନ୍ତି। ଖରାଦିନେ ପୂରାସ୍ୱେଟର ପିନ୍ଧିବା, ଗରମ ପାଣିରେ ଗାଧୋଇବା ଇତ୍ୟାଦି ଏହି ଅତ୍ୟାଚାରର ନମୁନା। ପୁଅ କାବୁଲି ଝିଅ ଦୀପି ଓ ଶିପି ମଧ ଏହି ଅତ୍ୟାଚାର ଭୋଗନ୍ତି। ଶେଷରେ ସର୍ବତ ଖିଆରେ ସବୁ ଅଶାନ୍ତି ଶେଷ ହୁଏ।

ଓଭରସିଅର ବାବୁଙ୍କ ପରିବାରରେ ଦିବାକର ବାବୁ, ତାଙ୍କ ପତ୍ନୀ ପୁଅ ଝିଅ ଟିଙ୍କୁ, ଛବି ଓ ମାନି ରହନ୍ତି। ଦିବାକରଙ୍କ ପତ୍ନୀ ରଜରେ ଗାଁକୁ ବାହାରିବା ବେଳେ ଦିବାକରଙ୍କ ବଡ଼ ଭିଣୋଇ ସୁଦାମ ବାବୁ ଆସି ପହଞ୍ଚିଯାଆନ୍ତି। ଫଳରେ ଦିବାକରଙ୍କ ପତ୍ନୀ ଅଭିମାନରେ ପିଠା କରନ୍ତି ନାହିଁ। ଦିବାକର ପିଠା କରିବାକୁ ଯାଇ ଅପଦସ୍ଥ ହୁଅନ୍ତି। ପରିଶେଷରେ ଦେଖାଯାଏ ଯେ ତାଙ୍କର ଚତୁରୀ ପତ୍ନୀ ପିଠାଟିଏ କରି ପୂର୍ବରୁ ସାଇତିଛନ୍ତି। ଫଳରେ ରଜ ପାଳନ ଓ ମାନଭଂଜନ ଉଭୟ ହୁଏ।

ହେଲଥ୍ ଅଫିସରଙ୍କ ପରିବାରରେ ଛାରପୋକକୁ ନେଇ ସମସ୍ୟା ଆରମ୍ଭ ହୁଏ। ଗୃହସ୍ଥ ଭୋଳାନାଥ ବାବୁ ଛାରପୋକଙ୍କ ପାଇଁ ବିବ୍ରତ। ଗାମାକ୍ସିନ୍ ପିଚକାରି ମାରି ଛାରପୋକ ତଡ଼ିବା ଭିତରେ ସୀତା ଦେବୀଙ୍କ ଭାଇ

କାଶୀନାଥଙ୍କ ଆଖିରେ ଔଷଧ ପାଣି ପଶିଯାଏ ଓ ତାଙ୍କ ବିଛଣାପତ୍ର ଗରମପାଣିରେ ଧୁଆ ହୋଇ ତନଖି ମଧ କରାଯାଏ। ତେଣୁ କାଶୀନାଥ ପ୍ରାଣବିକଳରେ ପରଦିନ ବିଦାୟ ନିଅନ୍ତି।

କଟକୀ ବାବୁ, ତାଙ୍କ ପତ୍ନୀ ଡଲିବୋଉ, ଝିଅ ଡଲି ଓ ପୁଅ ମଣ୍ଟୁ ବଦଳି ହୋଇ କଟକ ଆସି ଆନନ୍ଦିତ ହେଉଛନ୍ତି। ପ୍ରଥମରେ ପଚାମାଛ, ତା'ପରେ ପାଣି ଯୋଗାଣର ଅବହେଳା, ମଶାମାଛିର ଦାଉ ଦେଖି ସେମାନଙ୍କର କଟକ ରହିବା ଆନନ୍ଦ ମିଳେଇ ଯାଇଛି।

## ମୁରାରୀ ବାବୁଙ୍କ ପରିବାର

'ପୂରାପୂରି ପରିବାରିକ'ର ତୃତୀୟ ଭାଗ ମୁରାରୀ ବାବୁଙ୍କ ପରିବାର ଛଅଟି ଚିତ୍ର ସମ୍ବଳିତ। ୧୯ ଅକ୍ଟୋବର ୧୯୫୯ରୁ ୨୧ ମାର୍ଚ୍ଚ ୧୯୬୦ ମସିହା ପର୍ଯ୍ୟନ୍ତ ଏହା ପ୍ରସାରିତ ହୋଇଛି। ଗୃହକର୍ତ୍ତା ମୁରାରୀ ବାବୁ ତାଙ୍କର ପତ୍ନୀ ନକ୍ଷତ୍ରମାଳିନୀ ଓରଫ୍ ମାଳିନୀ ଦେବୀ, ଛବି, ବିବି ଓ ରୁବି ନାମଥିବା ତିନୋଟି ଝିଅ ଓ ମଣ୍ଟୁ, ପୁନ୍‌ପୁନ ତଥା ମୁନା ନାମ ଥିବା ତିନୋଟି ପୁଅଙ୍କୁ ନେଇ ସେମାନଙ୍କ ପରିବାର ଗତିଶୀଳ। ଗୋବର୍ଦ୍ଧନ ବାବୁଙ୍କ ଘରେ ଥିବା ପୂଝାରୀ ସାଧୁ ଓ ଭୃତ୍ୟ ରାଧୁ ଆସି ମୁରାରୀ ବାବୁଙ୍କ ଘରେ ଅଛନ୍ତି। ପିଲାଙ୍କ ପାଇଁ ଘରେ ଘୋ ଘା ପାଟିତୁଣ୍ଡ। ଦଶହରାରେ ପିଲାଙ୍କ ପାଇଁ ନୂଆ ଜାମାପ୍ୟାଣ୍ଟ କରିବାର ଆଗ୍ରହ ଓ ଲାଇନ୍‌ରେ ଠିଆ ହେବାପାଇଁ ଅନାଗ୍ରହ ମଧରେ ଗୃହକର୍ତ୍ତା ବିବ୍ରତ ହୋଇପଡ଼ନ୍ତି। ଦଶହରାରେ ପିଲାଙ୍କ ପସନ୍ଦର ଲୁଗାଜାମା କିଣା ନ ହେବାରୁ ସେମାନେ ଷ୍ଟ୍ରାଇକ୍ କରିଛନ୍ତି। କେହି ପଢ଼ିବେ ନାହିଁ, ବାଲିଯାତ୍ରା ଯିବେନାହିଁ ଇତ୍ୟାଦି ସର୍ତ୍ତ ରଖି ସେମାନେ ନିଜକୁ ପରିବାରରେ ଜାହିର କରନ୍ତି। ମାଳିନୀ ଦେବୀ ବାପଘରକୁ

ଯିବା ପରେ ମୁରାରୀ ବାବୁ ଓ ପିଲାମାନେ ଅସୁବିଧାରେ ପଡ଼ନ୍ତି । ପଡ଼ୋଶିନୀ ମୁକ୍ତା ଦେବୀ ଆସି ମୁରାରୀଙ୍କ ଘରେ ରନ୍ଧାବଢ଼ାରେ ସାହାଯ୍ୟ କରନ୍ତି । ପତିପତ୍ନୀଙ୍କ ମଧ୍ୟରେ ଥିବା ମାନ ଅଭିମାନକୁ ନେଇ ଅନ୍ୟ ଏକ କ୍ରମିକ କାହାଣୀ ମୁରାରୀ ବାବୁଙ୍କ ପରିବାରରେ ଦେଖିବାକୁ ମିଳେ । ମୁରାରୀ ବାବୁଙ୍କ ଅନାଗ୍ରହ ସତ୍ତ୍ୱେ ମାଳିନୀ ଦେବୀ ବାପଘରକୁ ଯାଆନ୍ତି ଓ ଚାରିଦିନ ଜାଗାରେ ମାସେ ରହିଯାଆନ୍ତି । ତେଣୁ ସେ ଫେରିବା ପରେ ସ୍ୱାମୀଙ୍କ ମନ ନେବାକୁ ଯତ୍ପରୋନାସ୍ତି ଉଦ୍ୟମ କରିଛନ୍ତି । କଟକ ସହରର ଭଡ଼ାଘର ସମସ୍ୟା ହେଉଛି ଅନ୍ୟତମ ଉତ୍କଟ ସମସ୍ୟା, ଯାହା ଏହି କ୍ରମିକ କାହାଣୀର ଗୋଟିଏ ଭାଗରେ ରୂପ ପାଇଛି । ମୁରାରୀ ବାବୁଙ୍କ ପରିବାରର ଶେଷଚିତ୍ର ହେଉଛି ବାପା ମାଆଙ୍କୁ ରାଜି କରାଇ ପିଲାମାନେ ପିକ୍‌ନିକ୍ ଯିବାର ଆୟୋଜନ । ମାଳିନୀ ଦେବୀ ଗହଣା ଓ ଶାଢ଼ି ବାକ୍‌ସ ଓ ପାନ ବାକ୍‌ସ ମଧ୍ୟ ନେଇଛନ୍ତି । ହଣ୍ଡାହାଣ୍ଡି, ଶିଳ ଶିଳପୁଆ ଇତ୍ୟାଦି ମଧ୍ୟ ବାଦ୍ ପଡ଼ିନାହିଁ । ଶେଷରେ ପିକ୍‌ନିକ୍ ଯିବା ହୋଇନାହିଁ ବରଂ ବ୍ରହ୍ମପୁର ଯିବାର ଠିକ୍ ହୋଇଛି ।

ଗୋବର୍ଦ୍ଧନ ବାବୁଙ୍କ ବଦଳି ଭଳି ମୁରାରୀ ବାବୁଙ୍କ ବଦଳିରେ ହିଁ ଏହି ଧାରାବାହିକ ଶେଷ ହୋଇଛି । ଏହି ଧାରାବାହିକଗୁଡ଼ିକ ଦୀର୍ଘ ତିନି ବର୍ଷ ଧରି ଶ୍ରୋତାମାନଙ୍କର ମନୋରଞ୍ଜନ କରିଛି । ତେଣୁ ଅନ୍ତିମ ଚିତ୍ର ଲେଖିବା ବେଳେ ଶ୍ରୋତାମାନଙ୍କ ଉଦ୍ଦେଶ୍ୟରେ ଛୋଟରାୟ ମହାଶୟ କହନ୍ତି- ''x x x ମୋର ସବୁବେଳେ ମନେ ହେଉଥିଲା - ଏଇ କାର୍ଯ୍ୟକ୍ରମର ଶ୍ରୋତା ଓ ଶିଳ୍ପୀମାନଙ୍କ ସହିତ ମୁଁ ଗୋଟିଏ ପରିବାରର ଅନ୍ତର୍ଭୁକ୍ତ, ମୋର ଏଇ ଅନୁଭୂତି ହିଁ ମତେ ଲେଖକର ଦାୟିତ୍ୱ ତୁଲେଇଥିବାର ପ୍ରେରଣା ଦେଇ ଆସିଛି । କେବଳ ଏଇଥିପାଇଁ ମୁଁ ଦୀର୍ଘ ତିନି ବର୍ଷ ଭିତରେ ପାରିବାରିକର ରଚନା ପାଇଁ କେବେ କ୍ଳାନ୍ତି ଓ ଅବସାଦ ଅନୁଭବ କରିନାହିଁ । ଏହା ହିଁ ମୋର ସବୁଠୁ ବଡ଼ ସାନ୍ତ୍ୱନା । 'ପୂରାପୂରି ପାରିବାରିକ'ର ଶ୍ରୋତାମାନଙ୍କଠାରୁ ଯେଉଁ ପ୍ରଶଂସାପୂର୍ଣ୍ଣ ଚିଠି ଆମେ ପାଇଚୁ... ତା' ମୋତେ ପଦେ ପଦେ ଉତ୍ସାହ ଦେଇ ଆସିଚି । ଯେଉଁମାନେ ଭୁଲ୍ ଦର୍ଶାଇଛନ୍ତି ସେମାନେ ମଧ୍ୟ ମତେ ଭବିଷ୍ୟତ ପାଇଁ ସତର୍କ କରି ଦେଇଛନ୍ତି । ଏଥିପାଇଁ ମୁଁ ଏ ଉଭୟ ପ୍ରକାର ଶ୍ରୋତାଙ୍କ ନିକଟରେ ଋଣୀ ।''(୧)

ଏହି ଧାରାବାହିକର ମୁଖ୍ୟସ୍ୱର ହେଉଛି ପାରିବାରିକ ଜୀବନର ବୁଝାମଣା । ସ୍ୱାମୀ ସ୍ତ୍ରୀଙ୍କର ମନୋମାଳିନ୍ୟ ମାତ୍ର ମତପାର୍ଥକ୍ୟ ଏଥିରେ ନାହିଁ । ହାସ୍ୟରସ ମାଧ୍ୟମରେ ସବୁ ସମସ୍ୟାର ସୁକ୍ଷମ ସମାଧାନ କରିବାର ପ୍ରଚେଷ୍ଟା ହୋଇଛି । ଫଳରେ ପରିଣତିରେ ସବୁ ଭୁଲ୍ ସୁଧାରିବାର ସୁଯୋଗ ମିଳିଛି । ଚରିତ୍ରମାନେ ନିଜ ନିଜ ପରିବେଶ ପାଇଁ ଉପଯୁକ୍ତ ଓ ସେମାନଙ୍କ ଭାଷା ମଧ୍ୟ କଟକର ବିଭିନ୍ନ ଶୈଳୀର ଓଡ଼ିଆ ଭାଷା ।

---

(୧) 'ପୂରାପୂରି ପାରିବାରିକ' ପରିସମାପ୍ତି ପୂର୍ବରୁ ନାଟ୍ୟକାରଙ୍କ ନିଜ ମୁଖରେ ନିଜ ସ୍ୱରରେ ଶ୍ରୋତାମାନଙ୍କୁ ପଦେ ଅଧେ-(Script No. 30-32)

## ଶ୍ରୀହରିଙ୍କ ସଂସାର

'ଶ୍ରୀହରିଙ୍କ ସଂସାର' ଧାରାବାହିକରେ ଏକୋଇଶିଟି ଚିତ୍ର ସ୍ଥାନିତ ହୋଇଛି। ଏହାର ମୂଳ ଚରିତ୍ର ତିନୋଟି ହେଲେ ଶ୍ରୀହରି ବାବୁ, ତାଙ୍କର ପତ୍ନୀ ସୀତା ଦେଈ ଓ ନଅ ବର୍ଷର ଝିଅ ବେଙ୍ଗୁଲି। ସରକାରୀ ଚାକିରି କରିଥିବା ଶ୍ରୀହରିଙ୍କ ବୟସ ଛତିଶି ବା ସଇଁତିରିଶି। ବଦଳି ହୋଇ କଟକ ଆସିବା ପରେ ସେହି ପରିବାରଟି କଟକ ସହରର କେଉଁ କେଉଁ ସମସ୍ୟା ଅଙ୍ଗେ ଲିଭାଇଛନ୍ତି ଓ କିଭଳି ସେହି ସମସ୍ୟା ସହିତ ସାଲିସ କରି ବଞ୍ଚିବାର ଅଭ୍ୟାସ କରିଛନ୍ତି ତାହା ଏହି ଧାରାବାହିକରେ ରୂପାୟିତ ହୋଇଛି। କୌଣସି ଏକ ନୂଆ ପ୍ରୋଜେକ୍ଟର ସଦର ମହକୁମା ଝାଇଁଜରପୁରରେ ଚାକିରି ଆରମ୍ଭ କରିଥିବା ଶ୍ରୀହରି ବାବୁ ସେଠାରେ ବେଙ୍ଗମାନଙ୍କ ଉପଦ୍ରବରେ ଅତିଷ୍ଠ ହୋଇଛନ୍ତି। ସେଥିପାଇଁ ସେ ତାଙ୍କ କନ୍ୟାର ନାମ ରଖିଛନ୍ତି ବେଙ୍ଗୁଲି। କଟକ ସହରର ବଡ଼ ସମସ୍ୟା ହେଉଛି ରାସ୍ତାରେ ଗାଡ଼ିମଟର ଚଳାଚଳର ବାହୁଲ୍ୟ ଓ ରାସ୍ତା ଜାମ୍। ପରବର୍ତ୍ତୀ ସମସ୍ୟାରେ ସୀତା ଦେଈ ନୂଆ ଜାଗାରେ ବନ୍ଧୁତ୍ୱ ସୃଷ୍ଟିର ପ୍ରୟାସ କରିଛନ୍ତି ଓ ଜନଗଣନା କର୍ମୀ ଭାବରେ ଘରକୁ ଆସିଥିବା ମହିଳାଙ୍କ ସହିତ ଆଳାପ ଆରମ୍ଭ କରିଦେଇଛନ୍ତି। ଭଡ଼ାଘରର ପାହାଚ ତଳେ ଆଣ୍ଠିଏ ପଙ୍କ କାଦୁଅ ଟପି ନର୍ଦ୍ଦମା ଡେଇଁ ଶ୍ରୀହରି ଯା' ଆସ କରନ୍ତି। ସ୍କୁଲରେ ଅଯଥାରେ ଷ୍ଟ୍ରାଇକ୍ ହୁଏ। କଳରେ ପାଣି ଆସେ ନାହିଁ। ତେଣୁ ସୀତା ଦେଈଙ୍କ ଭାଇ ନଟ ପଡ଼ିଶା ଘର କୂଅରୁ ପାଣି ଆଣି ଦିଅନ୍ତି। ନଟ ବାହାଘର ପାଇଁ କନ୍ୟା ଦେଖା ମଧ୍ୟ ଅନ୍ୟ ଏକ ଚିତ୍ରରେ ପ୍ରଦତ୍ତ ହୋଇଛି। କଟକର ଭଡ଼ାଘରେ ସାଧାରଣତଃ ଦୃଷ୍ଟିଗୋଚର ହେଉଥିବା ତ୍ରୁଟି ବିଚ୍ୟୁତିକୁ ନାଟ୍ୟକାର ଖୁବ୍ ସନ୍ତର୍ପଣରେ ଶ୍ରୀହରିଙ୍କ ସଂସାରରେ ପ୍ରଦର୍ଶନ କରିଛନ୍ତି। ପଡ଼ୋଶୀଙ୍କ ପିଲାଙ୍କୁ ଡାକିଲେ ଶ୍ରୀହରିଙ୍କ ପିଲାଏ ଜବାବ ଦେଉଛନ୍ତି। ଶ୍ରୀହରି ସୀତା ଓ ନରହରି ଗୀତା ପରସ୍ପର ବିରୁଦ୍ଧରେ ଚକ୍ରାନ୍ତ ମଧ୍ୟ କରୁଛନ୍ତି। କିନ୍ତୁ ପରିଣତିରେ ଜଣାପଡ଼ିଛି ଯେ ସୀତା ଓ ଗୀତା ପାଖ ଗାଁର ଝିଅ, ତେଣୁ ସେମାନେ ପରସ୍ପରର ବାନ୍ଧବୀ ପାଲଟି ଯାଇଛନ୍ତି। କେବେ ମଶାରି ବାଡ଼ାରେ ପ୍ୟାଣ୍ଟ ଟଙ୍ଗା ହୋଇଥିବା ଦେଖି ଉଭୟ ପଡ଼ୋଶୀ ଭୂତ ଭୟରେ ବିବ୍ରତ ହୋଇଛନ୍ତି। କଟକ ସହରରେ କେବେ ଆଖିଧରା ତ କେବେ ପିଲାଧରାକୁ ନେଇ ଜନଜୀବନ ବିବ୍ରତ ହୋଇଯାଏ। ଆଖିଧରିଥିବା ପାଇଁ କଳା ଚଷମା ପିନ୍ଧି ନଟ ମାମୁ ପିଲାଧରା ବୋଲି ମାଡ଼ ମଧ୍ୟ ଖାଇଛନ୍ତି। କେବେ ମିତ୍ରା, ସୁକାନ୍ତ, ସୁରିଆ, ମାଧବୀ, ଚନ୍ଦ୍ର, ବୀଣା, ମଦନ, ମୀନା, କୁସୁମ ଡାକ୍ତର ଏଚ୍.ପି. ଦାସ, ନବଘନ, ସୁଜନ, ମାଳିବୋଉ, ସାବିତ୍ରୀ ଦେଈ, ନବଘନ ବଳୀୟାରସିଂହ ବା ପ୍ରଭୁକୃପା ସାମନ୍ତରାୟଙ୍କ ଭଳି ଚରିତ୍ର ଶ୍ରୀହରିଙ୍କ ସଂସାରରେ ତରଙ୍ଗ ସୃଷ୍ଟି କରିଛନ୍ତି। ଟ୍ରେନ୍‌ଯାତ୍ରା କାଳରେ ପକେଟମାର୍ ଝିଅଙ୍କ ହାବୁଡ଼ରୁ ଶ୍ରୀହରି କୌଶଳକ୍ରମେ ବର୍ତ୍ତିଯାଆନ୍ତି। ଆଖିପରୀକ୍ଷା କରିବାକୁ ଯାଇ ସୀତା ଦେଈ ଓ ଶ୍ରୀହରି ଉଭୟ ପରିବେଶକୁ ରସମୟ କରିଦିଅନ୍ତି। ସୀତା ଦେଈଙ୍କ ଜନ୍ମଦିନକୁ ବନମହୋତ୍ସବ ଭାବେ ପାଳନ କରିବାକୁ ଓ ତାଙ୍କୁ ଗୁଆକାଟିବା ପାଇଁ ଏକ ଗୁଆକାତି ଉପହାର ଦେବାକୁ ସ୍ଥିର ହୋଇଛି। ପରିଶେଷରେ

ତାଙ୍କର ନିଷ୍କଖଣ୍ଡନ ପାଇଁ ପୂଜାପାଠର ଆୟୋଜନରେ ସେହି ଚିତ୍ର ଶେଷ ହୋଇଛି। ଦରଦାମ ବୃଦ୍ଧି ଓ ଓଜନରେ ଠକା[illegible] ଏକ ସମସ୍ୟା ଯାହା ପଞ୍ଚଦଶ ଚିତ୍ରରେ ଗୁରୁତ୍ୱର ସହିତ ଉପସ୍ଥାପିତ ହୋଇଛି। [illegible] ଉଦ୍‌ଘାଟନକୁ ଯାଇ ଉପବାସରେ ଫେରିଥିବା ଶ୍ରୀହରିଙ୍କ ପାଇଁ ଘରେ ଦିବ୍ୟଭୋଜନର ବନ୍ଦୋବସ୍ତ ହୋଇଛି। ବଦଳି ଓ ଗଛକଟାକୁ ନେଇ ଅନ୍ୟ ଏକ ଚିତ୍ର ଉପସ୍ଥାପିତ ହୋଇଛି। ୧୯୭୧ ଅକ୍ଟୋବର ୨୯/୩୦ରେ ଓଡ଼ିଶାର ଉପକୂଳ ଅଞ୍ଚଳରେ ଘଟିଥିବା ବାତ୍ୟାକୁ ନେଇ ଉପସ୍ଥାପିତ ଚିତ୍ର ଖୁବ୍ ଲୋକପ୍ରିୟ ହୋଇଥିଲା। ଫଳରେ ରିଲିଫ୍ ଯୋଗାଣରେ ସାଧୁତା ପରିଲକ୍ଷିତ ହୋଇଥିଲା ବୋଲି ନାଟ୍ୟକାର ସୂଚନା ଦେଇଛନ୍ତି। ବିବାହ ଉତ୍ସବ ଓ ପ୍ରୀତିଭୋଜନ ସମୟରେ ମଳୟ ବନ୍ଧୁ ଦାସ ଓ ମଳୟ କୁମାର ମହାପାତ୍ର ନାମକୁ ନେଇ ହାସ୍ୟକର ପରିସ୍ଥିତି ସୃଷ୍ଟି ହୁଏ। ସର୍କସ ଦେଖା ଓ ଗୀତା ଦେବୀଙ୍କ ଘରବୁଲା ପାଇଁ ପ୍ରସ୍ତୁତି ମଧ୍ୟ ପଡ଼ୋଶୀ ମଧ୍ୟରେ ଥିବା ସ୍ନେହ ସୌହାର୍ଦ୍ଦ୍ୟର ପରିଚୟ ବହନ କରିଛି। ସାବିତ୍ରୀ ଆମବାସ୍ୟା ପାଇଁ ଶାଢ଼ି କିଣା, ସାବିତ୍ରୀନାମ୍ନୀ ନୂଆ ପଡ଼ୋଶିନୀଙ୍କର ନିଜ ଶାଢ଼ିର ନାମ ଓ ଦାମ୍‌କୁ ନେଇ ଅତିଶୟୋକ୍ତି, ସୀତା ଦେଈଙ୍କ ବାପଘରର ଭାର ଭୁଲ କ୍ରମେ ତାଙ୍କ ଘରକୁ ଚାଲିଯିବା ପ୍ରଭୃତି ଶେଷ ଚିତ୍ରର କଥାବସ୍ତୁ।

କଟକ ଓଡ଼ିଶାର ସାଂସ୍କୃତିକ ଜୀବନର ପ୍ରାଣକେନ୍ଦ୍ର, ଗୋପାଳ ଛୋଟରାୟ ବାରମ୍ବାର କଟକ ସହରକୁ ଲକ୍ଷ୍ମୀର ସହର ବୋଲି କହିଛନ୍ତି। କଟକର ଜନଜୀବନକୁ ତନ୍ନ ତନ୍ନ କରି ଦେଖିଥିବା ଏହି ନାଟ୍ୟକାର ନିଜର ଅନୁଭବ ଅନୁଭୂତି ଅଭିଜ୍ଞତା ଓ ରସପରିବେଷଣର ଚତୁରତାକୁ ଉପଯୋଗ କରି ଏହି ଧାରାବାହିକଗୁଡ଼ିକ ରଚନା କରିଛନ୍ତି। ଏହି ନାଟକ ସମ୍ପର୍କରେ ଗୋପାଳ ଛୋଟରାୟ ନିଜେ କହନ୍ତି-'ଶ୍ରୀହରିଙ୍କ ସଂସାର' ଐଶ୍ୱର୍ଯ୍ୟମାଳୀ ବିଭବଶାଳୀ ନୁହେଁ କିନ୍ତୁ ଏକ ତୃପ୍ତ ଓ ପରିପୂର୍ଣ୍ଣ ସଂସାର। ଏହି ତୃପ୍ତି ଓ ପରିପୂର୍ଣ୍ଣତାର ସ୍ୱାକ୍ଷର ଏହାର ସବୁଯାକ ଚିତ୍ରରେ ଦେଖିବାକୁ ମିଳେ। ବର୍ତ୍ତମାନ ପ୍ରତ୍ୟେକ ପରିବାର ଯେତେବେଳେ ବହୁ ସମସ୍ୟା କଣ୍ଟକିତ, ସେତେବେଳେ ଏଭଳି ଗୋଟିଏ ପରିବାର ଶ୍ରୋତାମାନଙ୍କ ସମ୍ମୁଖରେ ବଞ୍ଚିବାର ନୂତନ ସ୍ୱାଦ ପରିବେଷଣ କରି ଯେଉଁ ନୂତନ ଆଶା ସୃଷ୍ଟି କରିଛି ଏହାର ମୂଲ୍ୟ କିଛି କମ୍ ନୁହେଁ। ଅଭାବବୋଧକୁ ଏଠାରେ ସମ୍ପୂର୍ଣ୍ଣ ମାନସିକତା ବ୍ୟାପାର ରୂପେ ଚିହ୍ନିତ କରାଯାଇଛି। ଏହାର ଶ୍ରୋତାମାନେ ଶ୍ରୀହରିଙ୍କ ପରିବାର ସାନ୍ନିଧ୍ୟରେ ଏପରି ମୁଗ୍ଧ ହୋଇଯାଇଥିଲେ ଯେ, ଶେଷ ଦୃଶ୍ୟରେ ଯେତେବେଳେ ତାଙ୍କର ବଦଳି ପ୍ରଶ୍ନ ଉଠିଲା, ସେତେବେଳେ ଶ୍ରୋତାମହଲରୁ ପ୍ରଚଣ୍ଡ ଆପତ୍ତି ହୋଇଥିଲା।''

(ବେତାର ନାଟ୍ୟସ୍ରଷ୍ଟା ଗୋପାଳ ଛୋଟରାୟ- ଡ. ସ୍ନେହଲତା ମିଶ୍ର-ପୃ-୬୪)

ବିଭ୍ରାଟ

'ପୂରାପୂରି ପାରିବାରିକ' ପରେ ନାଟ୍ୟକାରଙ୍କର ଦ୍ୱିତୀୟ ଧାରାବାହିକ ନାଟକ ହେଉଛି 'ବିଭ୍ରାଟ'। ଏହା ଆଠଟି ଚିତ୍ର ସମ୍ବଳିତ। ସରଳ ତଥା ଅବସ୍ଥାସମ୍ପନ୍ନ ଗ୍ରାମ୍ୟଗୃହସ୍ଥ ହେଉଛନ୍ତି

ଭୋଳିମାମୁ। ପତ୍ନୀ ଇନ୍ଦୁମତୀ, ଭଣଜା ମକୁ ଓ ଝିଅାରୀ ରାଧାକୁ ନେଇ ଏହି ନିଃସନ୍ତାନ ଦମ୍ପତିଙ୍କ ପାରିବାରିକ ଜୀବନ ଗତିଶୀଳ। ଭୋଳିମାମୁ ସବୁ କାମରେ ଆଗ୍ରହ ଦେଖାନ୍ତି ମାତ୍ର ସବୁଥିରେ ବିଭ୍ରାଟ ସୃଷ୍ଟି କରିବସନ୍ତି। ଭଣଜା ମକୁକୁ ଥିଏଟର ଦେଖାଇ ନେଇ ନିଜେ ମଞ୍ଚରେ ବିଭ୍ରାଟ କରିଛନ୍ତି। ମାଈଁଙ୍କ ପେଟରେ ପଥର ଅଛି କି ନାହିଁ ପରୀକ୍ଷା ପାଇଁ ମାମୁ ତାଙ୍କୁ ସାଙ୍ଗରେ ନେଇ ଡାକ୍ତରଖାନା ଯାଇଛନ୍ତି ମାତ୍ର ପଛପାଖ ପଥର ଗଦା ଉପରେ ଚଢ଼ି ପରୀକ୍ଷା ଗୃହକୁ ଉହୁଁକି ଦେଖିବାବେଳେ ପଥର ଗଦାରୁ ପଡ଼ି ନିଜେ ଆହତ ହୋଇଛନ୍ତି। ବିନା ଟିକେଟରେ ଗାଡ଼ିରେ ବସି ମାମୁ ଭଡ଼ା ସହିତ ଜୋରିମାନା ଗଣିଛନ୍ତି। ମାଈଁଙ୍କୁ ପୁରୀ ନେଇ ରଥଯାତ୍ରା ଦେଖାଇଲେ ଅଧିକ ଖର୍ଚ୍ଚ ହେବ ବୋଲି ଭୟ କରୁଥିବା ମାମୁ ଆଉ ଅଧିକ ତିନିଜଣଙ୍କ ଖର୍ଚ୍ଚ ତୁଲାଇବାକୁ ବାଧ ହୋଇଛନ୍ତି। ସାର୍ବଜନୀନ ଦୁର୍ଗାପୂଜାର ଚାନ୍ଦା ତାଲିକାରୁ ନିଜ ନାମଟି କୌଶଳରେ କାଟି ଦେଇଥିବା ମାମୁ ଛପନଜଣ କୁଣିଆଁଙ୍କ ଦାଉ ସମ୍ଭାଳିଛନ୍ତି। ମକୁର ବିଭାଘର ପାଇଁ ଘରବର ଦେଖା ସମୟରେ ଯେଉଁ ବିଭ୍ରାଟ ସୃଷ୍ଟି ହୋଇଛି ତାହା 'ହାସ୍ୟରସାତ୍ମକ ନାଟକ' ସଂକଳନରେ 'ଦେଖାଦେଖି' ଓ ଗୀତିନାଟ୍ୟରେ 'ଘରବର ଦେଖା' ଶୀର୍ଷକରେ ରୂପାୟିତ ହୋଇଛି।

'ଡାକ୍ତରବାବୁ' ମଧ୍ୟ ଅନ୍ୟ ଏକ ହାସ୍ୟରସାତ୍ମକ ଧାରାବାହିକ। ଅବିବାହିତ ଡାକ୍ତର, ତାଙ୍କ କମ୍ପାଉଣ୍ଡର, ରୋଗୀ ଓ ଡାକ୍ତରଖାନାକୁ ନେଇ ଏହା ଗତିଶୀଳ। ମଧ୍ୟବୟସ୍କା ମହିଳାଙ୍କର ରୋଗ ବିବରଣୀ, ଗାଁରେ ମକଦ୍ଦମା ଓ ମିଛ ସାର୍ଟିଫିକେଟ୍ ପାଇଁ ଡାକ୍ତରଙ୍କ ଆବଶ୍ୟକତା, ଡାକ୍ତର ଜ୍ୱାଇଁ କରିବାକୁ ବ୍ୟସ୍ତ ଗୃହସ୍ଥଙ୍କ କନ୍ୟା ଦେଖିବାକୁ ଯାଇ ଡାକ୍ତରଙ୍କ ରୋଗୀ ଦେଖା ଏସବୁ ମହିଳାମଧ୍ୟବୟସ୍କା, ମକଦ୍ଦମା ଓ ଡାକ୍ତର ଜ୍ୱାଇଁ ଶୀର୍ଷକ ଏକାଙ୍କିକା ଭାବରେ 'ହାସ୍ୟ ରସରନାଟକ' ସଙ୍କଳନରେ ସ୍ଥାନିତ। କେଉଁଠି ବିଶ୍ରାମହୀନ ଭାବରେ ଖଟୁଥିବା ଡାକ୍ତର ବାଧ୍ୟରେ ଜନ୍ମନିୟନ୍ତ୍ରଣ ପାଇଁ ପରାମର୍ଶ ଦିଅନ୍ତି। ଡାକ୍ତରଙ୍କ ପାଖକୁ ଆସିଥିବା ମୀନା ନାମ୍ନୀ ଝିଅକୁ ଦେଖି କମ୍ପାଉଣ୍ଡର ବାବୁ ସବୁ ଭୁଲି ତାଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ହୋଇଯାଆନ୍ତି। ସେହି କମ୍ପାଉଣ୍ଡର ବାବୁ ନିଜ ପତ୍ନୀଙ୍କର ଦେହ ଖରାପ ହେଲେ କଞ୍ଚାସାରୁ ନାଡ଼ ଓ ପଣସର କଣ୍ଟାମିଶା ଚୋପା ଖାଇବାକୁ ଉପଦେଶ ମଧ୍ୟ ଦିଅନ୍ତି। ଡାକ୍ତରଙ୍କ ଆଗରେ ନିଜର ଦୁଃଖ ଜଣାଇ ଘନଶ୍ୟାମ ବାବୁ ନିଜର ଭାଣିଜୀ ସୀତାକୁ ଫେରି ପାଇଛନ୍ତି। ଡାକ୍ତରଖାନାରେ ହିଁ ମାମୁ ଭାଣିଜୀଙ୍କର ମିଳନ ହୋଇଛି। କେବେ ରୋଗୀ ନ ଥିଲେ ଡାକ୍ତରବାବୁ ଥିଏଟର ଦେଖିଯାଉଛନ୍ତି। କେବେ ସୁବଳପୁର ଗ୍ରାମକୁ ଭିଜିଟ୍ କରିବାକୁ ଯାଇ ବାଳିକା ବିଦ୍ୟାଳୟ ଉତ୍ସବର ସଭାପତି ହୋଇ ବସିଛନ୍ତି। ମାତ୍ର ଅନୁଷ୍ଠାନରେ ମାଡ଼ ଖାଇଥିବା ଭରତ ବାବୁଙ୍କ ଚିକିତ୍ସା ପାଇଁ ସେ ବିନା ଦ୍ୱିଧାରେ ବାହାରିପଡ଼ିଛନ୍ତି, କେବେ ବରକନ୍ୟା ଜୁଟାଇବାରେ କମ୍ପାଉଣ୍ଡର ବିଶୁ ବାବୁ ମୁଖ୍ୟ ଭୂମିକା ମଧ୍ୟ ଗ୍ରହଣ କରନ୍ତି। ଏହି ଧାରାବାହିକଟି ନଅଟି ଚିତ୍ର ବିଶିଷ୍ଟ। ରୋଗୀସେବା, ସମାଜ ସହିତ ବଞ୍ଚିବାର ସାଧନା, ରୋଗ ଓ ଡାକ୍ତର ପ୍ରତି ସାଧାରଣ ମଣିଷର ବିଚାର ଏହି ଧାରାବାହିକଗୁଡ଼ିକର ମୂଳ ପ୍ରତିପାଦ୍ୟ।

## ଏମିତି ହୁଏ ନାହିଁ

'ଏମିତି ହୁଏ ନାହିଁ ' ଅନ୍ୟ ଏକ ଧାରାବାହିକ, ଯାହା ୭ ଅକ୍ଟୋବର ୧୯୮୪ଠାରୁ ୩୦ ଡିସେମ୍ବର ୮୪ ପର୍ଯ୍ୟନ୍ତ ପ୍ରସାରିତ। ଏହା ମାସରେ ଦୁଇଟି ରବିବାରରେ ଅପରାହ୍ନ ଘ୨.୩୦ ମିନିଟ୍‌ରେ ପ୍ରସାରିତ ହୋଇଥିଲା। ଘଟସୂତ୍ର କାର୍ଯ୍ୟାଳୟର ମ୍ୟାନେଜିଂ ଡାଇରେକ୍ଟର ଉତ୍ତମ, ଅଫିସ ସେକ୍ରେଟାରୀ ମିତା ଓ ପିଅନ ଚୈତନ୍ୟ ଏହାର ମୁଖ୍ୟ ଚରିତ୍ର। ଉତ୍ତମ ଏମ୍.ଏ. ପାଶ୍ କରିଛି ମାତ୍ର ତା'ର ଚାକିରି ନାହିଁ ବା ବ୍ୟବସାୟ ପାଇଁ ମୂଳଧନ ନାହିଁ। ସେ ଗାଁରେ ରହି ହଳ କରିବାକୁ ଆଗ୍ରହୀ ମଧ୍ୟ ନୁହେଁ। ତେଣୁ ବିବାହ ଭଳି ଏକ ପବିତ୍ର ସମ୍ପର୍କକୁ ନେଇ ସେ ବ୍ୟବସାୟ ଆରମ୍ଭ କରିଛି। ଚୈତନ୍ୟ ନିଜର ବ୍ୟବହାରରେ ମାଲିକ ଉତ୍ତମର ମନଜିଣି ଚାକିରି ପାଇଛି। ଚୈତନ୍ୟ ମାଲିକଙ୍କ ଉପରେ ଅଭିମାନ କରେ ଯେ ସେ କ'ଣ ପାଇଁ ତାକୁ 'ତୁ' ନ କହି 'ତୁମେ' କହୁଛନ୍ତି। କେବଳ ତା'ର ଆପଣାର ଲୋକ ଭାବରେ ତା' ସ୍ତ୍ରୀ ତାକୁ 'ତୁମେ' କହିପାରେ। ଚାକିରି ପାଇଁ ଆସିଥିବା ମିତା ଦେବୀଙ୍କୁ ଉତ୍ତମ କନ୍ୟାପାତ୍ରୀ ବୋଲି ମନେ କରିଛନ୍ତି। କେହି ବିପତ୍ନୀକ ବା ବୟସ୍କା ମହିଳା ଆସି ନିଜ ନିଜ ପାଇଁ ପାତ୍ରପାତ୍ରୀ ଖୋଜିବାପାଇଁ ଘଟସୂତ୍ର କାର୍ଯ୍ୟାଳୟରେ ଫିସ୍ ଦାଖଲ କରିଛନ୍ତି। ଶେଷରେ ଉତ୍ତମ ବାବୁଙ୍କ ବାପା ବୋହୂ ଓ ମିତା ଦେବୀଙ୍କ ମାଆ ଜୋଇଁ ଖୋଜିବାକୁ ଆସି ସେଠାରେ ପହଞ୍ଚିଛନ୍ତି। ସମସ୍ତ ଅଯୋଗ୍ୟ ପ୍ରାର୍ଥୀଙ୍କ ଫାଇଲ୍ ଫେରାଇ ଦିଆଯାଇଛି ମାତ୍ର ଶେଷ ଫାଇଲଟି ଫେରିନାହିଁ। ଏହିଭଳି ଅନ୍ୟ ଏକ ନାଟକ 'ପ୍ରଜାପତି ନିର୍ବନ୍ଧ ଅଫିସ୍' 'ହାସ୍ୟରସର ନାଟକ' ସଂକଳନରେ ସ୍ଥାନିତ।

## ଗାଁ ପରିମଳ

ମୁରଲୀ ବାବୁ ଓ ତାଙ୍କ ପତ୍ନୀ ହେମ ଦେବୀଙ୍କୁ ନେଇ ଏହି ଧାରାବାହିକ ଗତିଶୀଳ। ଏହା ୮ ଅକ୍ଟୋବର ୧୯୭୨ରୁ ୧୧ ମାର୍ଚ୍ଚ ୧୯୭୩ ପର୍ଯ୍ୟନ୍ତ ପ୍ରସାରିତ ଓ ୬ଟି ଚିତ୍ର ସମ୍ବଳିତ। ମୁରଲୀ ବାବୁ ପତ୍ନୀଙ୍କ ଉପରେ ରାଗିଥିଲେ ହେଁ କ୍ଷୀରଦିଆ ଘୋରାମଣ୍ଡା ଓ ମାଛ ତରକାରୀ ଖାଇବା ବରାଦ କରିବସନ୍ତି। ଘରକୁ କୁଣିଆ ଆସିଲେ ଘରେ ନାନା ପ୍ରକାର ଖାଦ୍ୟ ହୁଏ। ପିଉସୀ ପୁଅ ଭାଇ ପରମା ଆସିବାକୁ ହେମଦେବୀ ରନ୍ଧାବଢ଼ା କରି ଅନାଇ ବସିଲାବେଳେ ମୁରଲୀ ବାବୁ କୃଷି ବିଶେଷଜ୍ଞ ପରିମଳ ବାବୁଙ୍କୁ ନିମନ୍ତ୍ରଣ କରିଥାଆନ୍ତି। ସୁଯୋଗକୁ ସେହି ପରମା ହିଁ ପରିମଳ ବାବୁ। ତେଣୁ ସ୍ୱାମୀ ସ୍ତ୍ରୀଙ୍କ ଖୁସି ବହୁଗୁଣିତ ହୋଇଯାଏ। ହେମ ଦେବୀଙ୍କ ଭାଇ ବାହାଘରରେ ଜୋଇଁ ନିମନ୍ତ୍ରଣ ନ ପାଇ ସୁଦ୍ଧା ଭଲ ଧୋତି ଓ ସିଲକ୍ ପଞ୍ଜାବୀ ଲୋଭରେ ମୁରଲୀ ବାବୁ ଶ୍ୱଶୁର ଘରକୁ ଯାଆନ୍ତି। ହେମ ଦେବୀଙ୍କ ଗୋକୁଳି ମାମୁ ଭାଗବତ ବଢ଼ାପାଇଁ ହେମ ଓ ମୁରଲୀ ବାବୁଙ୍କୁ ନିମନ୍ତ୍ରଣ କରିଛନ୍ତି ମାତ୍ର ମୁରଲୀ ବାବୁ ତାଙ୍କୁ ଗୋକୁଳି ପି'ସା ଭାବି ଖୁବ୍ ଆଡ଼ମ୍ବରରେ ଭାରଥୋର ସଜକରି ପଛରେ ପସ୍ତାଇ ହୋଇଛନ୍ତି। କେବେ ହେମ ଦେବୀ ଅଧିକ ରାନ୍ଧିବାଢ଼ି ବିରକ୍ତ ହୁଅନ୍ତି ତ କେବେ ପତିତପାବନଙ୍କୁ ଦେଖିବାକୁ ଯାଇ ନ ପାରି ବିରକ୍ତ

ହୁଅନ୍ତି । କେବେ ବାପଘରକୁ ଯାଇ ନ ପାରି ବୋଉକୁ ସପନ ଦେଖନ୍ତି । 'ଗାଁ ପରିମଳ'ର ଏହି ଚିତ୍ରଗୁଡ଼ିକ ଗ୍ରାମ୍ୟଜୀବନକୈନ୍ଦ୍ରିକ । ପିଠା, ଭାରଥୋଉ, ଯାନିଯାତ୍ରା, ଜୋଇଁ ନିମନ୍ତ୍ରଣ ଇତ୍ୟାଦି ଗ୍ରାମ୍ୟଜୀବନର ସବଳ ଛୋଟବଡ଼ ଆଗ୍ରହ ଏଥିରେ ରୂପ ପାଇଛି ।

ଶୁକ ଉବାଚ

ଏହା ଦୁଇଟି ଚିତ୍ର ବିଶିଷ୍ଟ । ଅଧିକ କଥା କହୁଥିବା ଶୁକ ମହାପାତ୍ର ବୃତ୍ତିରେ ମାଷ୍ଟର ନ ହୋଇ ମଧ୍ୟ ଗାଁରେ ସବୁରି ଶୁକମାଷ୍ଟର । ସେ ସବୁ କଥା ଜାଣନ୍ତି ମାତ୍ର ନିଜ ପତ୍ନୀଙ୍କର 'ମୁହଁମୋଡ଼ା' କଳାଟି ଆୟତ୍ତ କରିପାରନ୍ତିନାହିଁ । ଶୁକମାଷ୍ଟର ଗାଁର ଜଣେ ମାମଲତାକାର, ଯାହା ପାଖକୁ ଲୋକେ ଭଲମନ୍ଦରେ କିଛି ନ ହେଲେ ରେଡ଼ିଓ ଶୁଣିବାକୁ ଧାଇଁଆସନ୍ତି ।

ଅବସର ଗ୍ରହଣ ପରେ

ଏହା ଚାରିଗୋଟି ଚିତ୍ର ସମ୍ବଳିତ ଧାରାବାହିକ, ଯାହା ୧୧ ଜୁନ୍ ୧୯୭୭ରୁ ୧୧ସେପ୍ଟେମ୍ବର ୧୯୭୭ ପର୍ଯ୍ୟନ୍ତ ପ୍ରସାରିତ । ବିଧୁ ବାବୁ ଚାକିରିରୁ ଅବସର ନେବା ପରେ ପତ୍ନୀ ଚାରୁ ଦେବୀ ଆନନ୍ଦିତ । କାରଣ ଦୀର୍ଘଦିନ ଖଟିବା ପରେ ତାଙ୍କ ସ୍ୱାମୀ ଟିକେ ବିଶ୍ରାମ ପାଇବେ । ଚାକିରି ଜୀବନରେ ବିଧୁ ବାବୁ ଯେ କେତେ କଷ୍ଟ ପାଇଛନ୍ତି ତାହା ତାଙ୍କ ସ୍ତ୍ରୀ ହିଁ ଜାଣିଛନ୍ତି । କିନ୍ତୁ ଅବସର ପରେ ଗାଁକୁ ଆସି ବିଧୁ ବାବୁ ବଡ଼ ଅସୁବିଧାରେ ପଡ଼ନ୍ତି । ସେହି ଅସୁବିଧା ତାଙ୍କ ପତ୍ନୀଙ୍କ ମୁହଁରେ- ''ଚାକିରି ସମୟରେ ତାଙ୍କ ପାଟିରୁ ସହଜରେ କଥା ବହାରେ ନାହିଁ ବୋଲି ତାଙ୍କୁ ସମସ୍ତେ ମୌନୀ ବାବୁ ଡାକୁଥିଲେ । ହେଲେ ଅବସର ନେଲା ପରଠୁ କ'ଣ ହେଲା କେଜାଣି- ଏବେ ତ ଚାଲିଚି- ଅନର୍ଗଳ - ଅନବରତ - ଚାଲିଚି କଥା-''
(ଅବସର ଗ୍ରହଣ ପରେ Script-No -6 )

ଚାକିରି କଲେ ଅବସର ନିଶ୍ଚୟ ଆସିବ ମାତ୍ର ସେଥିପାଇଁ ପ୍ରସ୍ତୁତି ମଧ୍ୟ ଦରକାର ଯାହା ଏହି ଧାରାବାହିକରେ କୁହାଯାଇଛି ।

## ଅନ୍ୟ କେତେକ ବେତାର ନାଟକ

ଗୋପାଳ ଛୋଟରାୟ ବେତାର ନାଟକ ରଚନାରେ ସିଦ୍ଧହସ୍ତ ଥିଲେ । ତାଙ୍କର ଅନେକ ବେତାର ନାଟକେ ବାରମ୍ବାର ପ୍ରସାରିତ ହୋଇ ଲୋକପ୍ରିୟତା ହାସଲ କରିଛି । ସେଗୁଡ଼ିକ ମଧ୍ୟରୁ କେତେକ ବନଲତା ପ୍ରକାଶନ କର୍ତ୍ତୃକ ପ୍ରକାଶିତ 'ଗୋପାଳ ଛୋଟରାୟ ଏକାଙ୍କିକା ସଂକଳନ' ପ୍ରଥମ ଭାଗରେ ସ୍ଥାନିତ । ଲକ୍ଷ୍ମୀ, ଶତରଞ୍ଜି, ଭସାମେଘ, ଭାନୁମତୀ, ବଉଳ ଓ ଜର୍ମାନୀ ଛୁଞ୍ଚି ନାମକ ଛଅଟି ନାଟକକୁ ଆମେ ଆଲୋଚନା କରିବା । ଉଦଣ୍ଡୀ ଝିଅ ଲକ୍ଷ୍ମୀକୁ ବଡ଼ଭଉଣୀ ଏକ ମୂର୍ଖ ବରକୁ ବାହା କରାଇ ଦେଇଛି । ଲକ୍ଷ୍ମୀ ବିବାହର ଦୁଇ ବର୍ଷ ପରେ ନିଜର ଜନ୍ମିତ ସନ୍ତାନକୁ ହରାଇ ଭଉଣୀ ଘରକୁ ଫେରି ଆସିଛି । ଏକଦା ପଡ଼ୋଶୀ ବାସ ଘର ବାଛୁରୀ ଫିଟାଇ

ଦେଇ ତା' କୋପଦୃଷ୍ଟିରେ ପଡ଼ିଥିବା ଲକ୍ଷ୍ମୀ କିନ୍ତୁ ମୃତାବାସର ଏକମାସର ଶିଶୁପୁତ୍ରକୁ ଆପଣାର କ୍ଷୀର ଖୁଆଇ ମାତୃତ୍ୱର ପରାକାଷ୍ଠା ଦେଖାଇଛି। 'ଭାନୁମତୀ'ରେ ଆଧୁନିକା ବିବାହିତା ତରୁଣୀ କଳ୍ପନା ଓ ବିଶାଖା ସଭା କରି 'ନାରୀମାନଙ୍କ ସମାଜିକ କର୍ମରେ ପୁରୁଷମାନଙ୍କ ସ୍ଥାନ' ବିଷୟ ଆଲୋଚନା କରିବାକୁ ଚାହାନ୍ତି। ଭାନୁମତୀ ଓ ମିତ୍ରା ଉଭୟ କଲେଜ ଛାତ୍ରୀ। ସେମାନେ ଏଥିପାଇଁ ଆଗ୍ରହ ପ୍ରକାଶ କରନ୍ତି ମାତ୍ର ପରିବାରର ଦାୟିତ୍ୱ ଆଳରେ ସଭା ହୋଇ ପାରେନାହିଁ। 'ଶତରଞ୍ଜି' ଏକ ହାସ୍ୟରସାତ୍ମକ ନାଟକ ଯେଉଁଠି ମଧ୍ୟବୟସ୍କା ମାଉସୀ ଶିକ୍ଷିତା ବଧୂ ମୀରା ଓ କୁସୁମ, କଲେଜ ଛାତ୍ରୀ ମିନି ଓ ରେଖା, ସ୍କୁଲଛାତ୍ରୀ କବିତାକୁ ନେଇ ପିକ୍‌ନିକ୍ ଆସିଛନ୍ତି। କେଦାରଗୌରୀ ହୋଇଛି ପିକ୍‌ନିକ୍ ସ୍ଥାନ। ଜିନିଷପତ୍ର ହଜାଇବା ଖୋଜିବା ଭିତରେ ଶତରଂଜିଟି କେଉଁଠି ରହିଯାଇଛି। ଅନ୍ୟ ଏକ ଦଳରେ ପିକ୍‌ନିକ୍ ଆସିଥିବା ମାଧବୀ ଶତରଂଜିଟି ଫେରାଇ ଦେଇଛି ମାତ୍ର ପିକ୍‌ନିକ୍ ହୋଇପାରିନାହିଁ। 'ବଉଳ'ରେ ଗରିବ ଝିଅ ରମା ନିଜର ବାନ୍ଧବୀ ବଉଳ ଧନୀଦୁଲାଳୀ କଲ୍ୟାଣୀ ପାଇଁ ନିଜ ବାହାଘର ଭାଙ୍ଗି ଦେଇଛି। 'ଭସାମେଘ' ଭାସିଯାଏ। ଶାନ୍ତି ପାଇଁ ବରଘର ଦେଖାହେବ ବୋଲି ତା'ର ଉଚ୍ଚଶିକ୍ଷିତା ଭାଉଜ ବାସନ୍ତୀ ନିଜର ସାଙ୍ଗ ସଂଜୁକୁ ଡାକିଆଣେ। ଅନ୍ୟ ଏକ ଭାଉଜ ରାଧା ମଧ୍ୟ ଶାନ୍ତି ପାଇଁ ବିବ୍ରତ। ଉଭୟ ନିଜ ନିଜ ରୁଚି ସାବ୍ୟସ୍ତ କରନ୍ତି ମାତ୍ର ବନ୍ଧୁଚର୍ଚ୍ଚା ପାଇଁ କାହାର ଉଦ୍‌ଯୋଗ ନ ଥାଏ। ଶେଷରେ ପଡ଼ୋଶୀ ବିନୁ ଅପା ସମସ୍ୟାର ସମାଧାନ କରନ୍ତି। ଘରସଜା ପାଇଁ ଅହେତୁକ ବ୍ୟସ୍ତତାଠାରୁ ଅତିଥିଚର୍ଚ୍ଚା ପାଇଁ ଗୁରୁତ୍ୱ ଦେବା ଘରଣୀପଣରେ ଗଣା ହୁଏ। 'ଜର୍ମାନୀଛୁଞ୍ଚି'ରେ ମିଥ୍ୟା ଆଡ଼ମ୍ବରର ପରିଣାମ ଚିତ୍ରିତ। ଜର୍ମାନୀରୁ ଆସିଥିବା ଛୁଞ୍ଚିକୁ ନେଇ ଖୁବ୍ ପ୍ରୌଢ଼ୀ ଦେଖାଉଥିବା ସୁଷମା ପଡ଼ୋଶୀ ଝିଅକୁ ଛୁଞ୍ଚିଟି ଦେଖାଇବାକୁ ଯତ୍ନ କରିବା ଭିତରେ ଛୁଞ୍ଚିଟି ଭାଙ୍ଗିଯାଏ।

ତାଙ୍କର ମୁଦ୍ରିତ ନ ହୋଇଥିବା ଅନେକ ନାଟକ ରହିଛି ଯାହା ଆକାଶବାଣୀରୁ ପ୍ରସାରିତ ଓ ବହୁ ଆଦୃତ। ସେଗୁଡ଼ିକ ହେଉଛି - ଧୀର ଆଉ ଧୀରା, ପାରିବାରିକ, ଦୃଷ୍ଟିପାତ, ବିଶେଷ ଦ୍ରଷ୍ଟବ୍ୟ, ବହୁରୂପୀ, ଭାଙ୍ଗିଯାଏ କ୍ଷୁଦ୍ର ପରିବେଶ, ପାହାର, ଅପେକ୍ଷା, ପାଉଣା, ଭୁଲ୍ କାହାର, ପଞ୍ଚାୟତ ଫାର୍ଶ, ପାହାଚ, ଦ୍ୱିଧାରା, ସେବା, ତଥାପି, ଚୋରା ଚଇତି, ଅଭିଳାଷ, ବଉଳା ପ୍ରଭୃତି। 'ଧୀର ଓ ଧୀରା'ରେ କେବଳ ନାମକୁ ନେଇ ହାସ୍ୟରସ ସୃଷ୍ଟି ହୋଇଛି। ଧୀର ନାମକ ବାଳକ 'ଧୀରା' ନାମ ନେଇ ବାବୁଘରେ ଚାକିରି କରିଛି ଓ ଖୁଦୁରୁକୁଣୀ ଓଷାରେ ଭଲ ବର ପାଇବାକୁ ଠାକୁରାଣୀଙ୍କୁ ଡାକ ବୋଲି ବାବୁଙ୍କ ଝିଅମାନେ ତାକୁ କହିବାରୁ ସେ କାନ୍ଦି ପକାଇ ସତ କଥା କହି ଦେଇଛି। 'ପାରିବାରିକ' ୧ ଜାନୁଆରୀ ୧୯୭୧ରେ ପ୍ରଚାରିତ। ଏଥିରେ ଦେଶ ବିଭାଜନ ଓ ସାଂପ୍ରଦାୟିକ ଦଙ୍ଗା ସମ୍ପର୍କରେ ଛୋଟରାୟ ମହାଶୟ ନିଜର ବିଚାର ବ୍ୟକ୍ତ କରିଛନ୍ତି। 'ଦୃଷ୍ଟିପାତ'ର ନରିଭାଇ ସୁବିଧାବାଦୀ ମଣିଷମାନଙ୍କର ପ୍ରତିନିଧି। 'ବିଶେଷ ଦ୍ରଷ୍ଟବ୍ୟ'ର କାହାଣୀ 'ପ୍ରଜାପତି ଘଟସୂତ୍ର ଅଫିସ୍'ର କାହାଣୀ ସହିତ ପ୍ରାୟ ସମାନ। 'ପାରିବାରିକ'ରେ ଯେଉଁ ହିନ୍ଦୁ ମୁସଲମାନ ଦଙ୍ଗା କଥା କୁହାଯାଇଛି, 'ଭାଙ୍ଗିଯାଏ କ୍ଷୁଦ୍ର ପରିବେଶ'ରେ ସେହି ଦଙ୍ଗା ବନ୍ଦ କରିବାର ଉପାୟ ଭାବରେ ମୁସଲମାନ ଯୁବକ ଆଲି ଓ ହିନ୍ଦୁ ଯୁବତୀ ଉତ୍ତରାର

ପ୍ରେମ ବିବାହକୁ ଲେଖକ ଗୁରୁତ୍ୱ ଦେଇଛନ୍ତି। 'ପାହାଚ' ଓ 'ପାହାର'ର କାହାଣୀ ଏକା ଭଳି। ଉଭୟରେ ପ୍ରେମ ରହିଛି। ବିବାହ କରି ତରୁଣୀଜଣକ ଅନ୍ୟର ଗୃହର ଗୃହଲକ୍ଷ୍ମୀ ହେବା ପରେ ମଧ୍ୟ ସେମାନଙ୍କ ପ୍ରେମ ଅତୁଟ ରହିଛି। ତ୍ୟାଗ ଓ ସଦିଚ୍ଛା ଏହି ପ୍ରେମକୁ ଊର୍ଦ୍ଧ୍ୱମୁଖୀ କରି ଦେଇଛି। 'ଅପେକ୍ଷା'ରେ ହାକିମଙ୍କୁ ଅପେକ୍ଷା କରୁ କରୁ ଫୋନ୍‌ର ଅତ୍ୟାଚାର ସହୁଥିବା ଏଜେଣ୍ଟଙ୍କ କଥା କୁହାଯାଇଛି। 'ପାଉଣା' ଲାଞ୍ଚର ଭିନ୍ନ ନାମ। ଫୁଲ ବିକାଳି ରାଜୁ ଦରଓ୍ୱାନକୁ ପାଉଣା ଯାଚି ଉପଦେଶ ପାଇଛି ଯେ 'ପାଉଣା' ଦେବା ବା ନେବା ସ୍ଥାନକୁ ଯିବା ଉଚିତ୍ ନୁହେଁ। 'ଭୁଲ୍ କାହାର'ରେ ଦଳେଇ ଘାଇ ଭାଙ୍ଗିବା ପରେ ଦୁଇଟି କନ୍ୟାଙ୍କୁ ନେଇ ଗଛ ଉପରେ ଆଶ୍ରୟ ନେଇଥିବା ବୁନିୟାଦୀ ପରିବାର ଗୃହସ୍ଥଙ୍କ କିଂକର୍ତ୍ତବ୍ୟବିମୂଢ଼ତା ପ୍ରକାଶିତ। ସେମାନେ ରିଲିଫ୍ ନେବାକୁ ହାତ ବଢ଼ାଇ ପାରନ୍ତିନି। କୁସୁମକୁ ଚାକିରି କରାଇଦେବାକୁ କହି ଶଙ୍କର ବାବୁ ତାକୁ ଅପହରଣ କରନ୍ତି। କୁସୁମ ନିଜର ଅସହାୟତା ନେଇ ରିଲିଫ ବାଣ୍ଟୁଥିବା ଅଶୋକ ବାବୁଙ୍କ ସାହାଯ୍ୟ ଚାହେଁ। 'ପଞ୍ଚାୟତ' ଭାଇଭାଗର କାହାଣୀ କହେ। ନିଜ ନିଜ ଭାଇମାନଙ୍କୁ ଅଲଗା ରାନ୍ଧି ପରିବେଷଣ କରିଥିବା ଦୁଇ ବୋହୂ ଯେତେବେଳେ ଦେଖନ୍ତି ଯେ ତରକାରୀ ବଦଳ ହୋଇଯାଇଛି, ସେମାନଙ୍କ ଭିତରେ ଥିବା ଭୁଲ୍ ବୁଝମଣା ଦୂର ହୋଇଯାଏ। 'ଫାର୍ଶ'ରେ ଗ୍ରାମର ଉନ୍ନତି ଚାହୁଁଥିବା ଅଳିପୁର ଗ୍ରାମର ନିଶାକର ଓ ତା'ର ସ୍ତ୍ରୀ ଅମ୍ବିକା ସାହାଡ଼ା ଗଛରେ ସିନ୍ଦୂର ମାରି ଅମ୍ବିମାତା ବିଜେ କରିଛନ୍ତି ବୋଲି ପ୍ରଚାର କରନ୍ତି। ଫଳରେ ଗାଁରେ ରାସ୍ତାଘାଟ, ପାଣି, ଡାକ୍ତରଖାନା ଏପରି କି ମନ୍ତ୍ରୀଙ୍କ ପାଇଁ ହେଲିପ୍ୟାଡ୍ ମଧ୍ୟ ହୋଇଯାଏ। 'ଦ୍ୱିଧାରା'ରେ କିଶୋର ଲାଲୁ ଡିଟେକ୍‌ଟିଭ୍ ପଢ଼େ। ତା'ର ରେଖା ସହିତ ମିତ୍ରତାକୁ କେହି ଭଲ ଦୃଷ୍ଟିରେ ଦେଖନ୍ତି ନାହିଁ। ଫଳରେ ଲାଲୁ ବିଦ୍ରୋହୀ ହୁଏ। ଏ ନାଟକରେ କିଶୋର ମନସ୍ତତ୍ତ୍ୱ ଉପରେ ଗୁରୁତ୍ୱ ଦିଆଯାଇଛି। 'ସେବା'ରେ ଡାକ୍ତର ମଦନ ସରକାରୀ ଚାକିରିର ଆରାମ ଛାଡ଼ି ଗାଁରେ ରହି ସେବା କରିବାକୁ ଉଚିତ ମଣିଛି। 'ତଥାପି'ରେ ଗାଁର ବୋହୂ ମାଳ ସନ୍ତାନହୀନା ବୋଲି ନିନ୍ଦିତା ହୁଏ ମାତ୍ର ସେ ଜାଣେ ଯେ ତା'ର ସ୍ୱାମୀ ସେଥିପାଇଁ ଯୋଗ୍ୟ ନୁହନ୍ତି। ସେ ନିଜର ପ୍ରେମିକ ସୁରଭାଇଙ୍କୁ ଝୁରି ହୋଇ ବାୟାଣୀ ଭଳି ଆଚରଣ କରେ। ଅବଦମିତ କାମନାର ଏଭଳି ପରିପ୍ରକାଶ ଆଜି ମଧ୍ୟ ସମାଜରେ ପରିଦୃଷ୍ଟ ହୋଇଥାଏ।

'ବହୁରୂପୀ' ୨୦ ଡିସେମ୍ବର ୧୯୬୧ରେ ଆକାଶବାଣୀ କଟକରୁ ପ୍ରସାରିତ। ଶମ୍ଭୁନାଥ, ତାଙ୍କ ପତ୍ନୀ କୁସୁମ ଓ ଭଉଣୀ ମୀରା ଏହାର ମୁଖ୍ୟ ଚରିତ୍ର। ଟ୍ରେନ୍‌ରେ ଯୁଗଳ ଭାଇଙ୍କ ସହିତ ସାକ୍ଷାତ ହେବା ପରେ ଯୁଗଳ ଭାଇଙ୍କ ସୁପାରିଶରେ ପଦବାବୁଙ୍କ ସହିତ ଶମ୍ଭୁନାଥ ଗୋଟିଏ ଘରେ ଭଡ଼ା ରହିଛନ୍ତି। ପ୍ରତି ମୁହୂର୍ତ୍ତରେ ସେମାନେ ଝଗଡ଼ା କରନ୍ତି ମାତ୍ର ପରିଣତିରେ ପଦବାବୁଙ୍କ ସହିତ ମୀରାର ବାହାଘର ଠିକ୍ ହୋଇଯାଏ।

'ଚୋରାଚଇତି' ଯୌତୁକ ପ୍ରଥା ବିରୁଦ୍ଧରେ ରଚିତ। ଗାଁର ଭଦ୍ରଲୋକ ନରହରି ଯୌତୁକ ଦେବାର କ୍ଷମତା ଥାଇ ମଧ୍ୟ ଆଦର୍ଶର ପ୍ରତିଷ୍ଠା ପାଇଁ ନିଜର ଗୁଣବତୀ ଝିଅ ରାଧାକୁ ବିନାଯୌତୁକରେ ବିବାହ ଦେଇଛନ୍ତି। ରାଧାର ଶ୍ୱଶୁର ଏହାକୁ ଅପମାନଜନକ ମନେକରି

ରାଧାକୁ ତଡ଼ି ଦେବାକୁ ବସିଛନ୍ତି । ରାଧା ସ୍ୱାମୀଙ୍କ ପାଖକୁ ଚିଠି ଲେଖି ଶ୍ୱଶୁରଙ୍କ ସମ୍ମାନ ପାଇଁ ନିଜେ ଘରଛାଡ଼ି ଚାଲିଯିବ ବୋଲି ଜଣାଇ ଦେଇଛି ଓ ଏହାପରେ ଶ୍ୱଶୁରଙ୍କ ମନ ବଦଳି ଯାଇଛି । 'ଅଭିଳାଷ'ରେ ଦାମ ସୋଇଁ ଦରିଦ୍ର ଚାଷୀ । ପୁଅ ବାହାଘର ପାଇଁ ସେ ଜମିଦାରଙ୍କଠାରୁ ଋଣ କରିଛି । ଜମିଦାର ବାପ ପୁଅଙ୍କ ଭିତରେ ବିଭେଦର ପ୍ରାଚୀର ସୃଷ୍ଟିକରି କୌଶଳରେ ଦାମର ଏକମାତ୍ର ଦାମୁଡ଼ି ବଉଳାକୁ ନେଇ ଯାଇଛି । ଯେଉଁଥିପାଇଁ ଦାମର ସାନପୁଅ କୁଶିଆ ଖୁବ୍ କଷ୍ଟ ପାଇଛି । ଧନ ଲୋଭ ତଥା ଗୃହପାଳିତ ପଶୁଙ୍କ ପ୍ରତି ମମତା ଏଥିରେ ଗୁରୁତ୍ୱପୂର୍ଣ୍ଣ ଢଙ୍ଗରେ ଉପସ୍ଥାପିତ ହୋଇଛି । 'ଗଜପତି ହୀରା' ଏକଙ୍କିକାରେ ଏକ ରହସ୍ୟରୋମାଞ୍ଚ ନାଟକର ରିହରସାଲ୍ ସମ୍ବନ୍ଧରେ ଉତ୍କଣ୍ଠାର ସହିତ ବର୍ଣ୍ଣନା କରାଯାଇଛି । 'ଶ୍ୱାନ ଉପାଖ୍ୟାନ'ରେ ଗୋଟିଏ କୁକୁରର ଛବି ଟାଙ୍ଗିବାକୁ ନେଇ ଘରେ ଯେଉଁ ବ୍ୟସ୍ତତା ଦେଖାଦେଇଛି ତାହା ବର୍ଣ୍ଣିତ । 'ମଧ୍ୟରାତ୍ରିର ନାଟକ'ରେ ନାଟ୍ୟକାର ଶରତ ଯେଉଁ ଚରିତ୍ରମାନଙ୍କୁ ଚିତ୍ରଣ କରିଛନ୍ତି ସେମାନେ ଜୀବନ୍ତ ପାଲଟି ଯାଇଛନ୍ତି । 'ପଦ୍ମାବତୀର ମୃତ୍ୟୁ' ନାଟକ ଲେଖୁଥିବା ଶରତ ପାଇଁ ମାଉସୀଙ୍କର ଚିନ୍ତା । ସେ ଶରତକୁ କହନ୍ତି- ''ଶରତରେ, ଏ ଦୁନିଆରେ କ'ଣ କିଛି ସୁନ୍ଦର କଥା ଲେଖିବାକୁ ନାହିଁ ? ସୁନ୍ଦର, ମଧୁର-ମଧୁମୟ । ଖାଲି ଚୋରି, ଜୁଆଚୋରି, ହତ୍ୟା, ପାଗଳାମି । ମୁଁ ତ ଭାବୁଛି- ହଁ, ମୁଁ ଯେମିତି ଜାଣିପାରୁଚି, ଶୁଣିପାରୁଚି, ଏସବୁ ଘଟଣା ଆମର ଚାରିପାଖରେ ଘଟିଯାଉଛି । (ଗୋପାଳ ଛୋଟରାୟ ଏକାଙ୍କିକା ସଂକଳନ- ୨ୟ ଭାଗ- ପୃ : ୪୨) ଏ ଚିନ୍ତା ମାଉସୀଙ୍କର ନୁହେଁ ସ୍ୱୟଂ ନାଟ୍ୟକାରଙ୍କର ଯିଏ କି ଜୀବନର ଆଲୋକଉଜ୍ଜ୍ୱଳ ଦିଗନ୍ତର ପରିଚ୍ଛନ୍ନ ଚିତ୍ର ଆଙ୍କିଛନ୍ତି ଓ ମଣିଷର ତ୍ରୁଟି ସଂଶୋଧିତ ହୋଇପାରିବ ବୋଲି ଆଶ୍ୱାସନା ଦେଇଛନ୍ତି । 'ପ୍ରହସନ କବିରାଜ'ରେ କାଠୁରିଆ ସଦାନନ୍ଦ ଓ ତା'ର ପତ୍ନୀ ଚମ୍ପାବତୀ ହେଉଛନ୍ତି ମୁଖ୍ୟ ଚରିତ୍ର । ସଦାନନ୍ଦ ତା'ର ସ୍ତ୍ରୀକୁ ପିଟିବାରୁ ରତ୍ନାକର ଭଲଲୋକି କରିଛି ମାତ୍ର ଚମ୍ପା ଏଥିପାଇଁ ରତ୍ନାକରକୁ ଗାଳି ଦେଇଛି । ସଦାନନ୍ଦ କାଠ କାଟିବାକୁ ଯିବା ପରେ ଲଛମନ ଓ ବୀରବର କବିରାଜ ଖୋଜି ଖୋଜି ଆସିଛନ୍ତି । ଚମ୍ପା ତାଙ୍କୁ ସୂଚନା ଦେଇଛି ଯେ କୁରାଢ଼ିରେ କାଠ ଚିରୁଥିବା ଲୋକଟି କବିରାଜ କିନ୍ତୁ ସିଏ ପ୍ରଥମେ ଏକଥା ମାନିବେ ନାହିଁ । ତାଙ୍କୁ ଖୁବ୍ ମାଡ଼ ଦେଲେ ହିଁ ସିଏ ନିଜକୁ କବିରାଜ ବୋଲି କହିବେ । ପଦ୍ମାବତୀର ରୋଗ ଭଲ କରିବାକୁ ଆସି ସେ ପଦ୍ମାବତୀକୁ ବୁଟଛତୁ ଖାଇବାକୁ ପରାମର୍ଶ ଦେଇଛନ୍ତି । ପଦ୍ମାବତୀର ପ୍ରେମିକ ବ୍ରଜସୁନ୍ଦରକୁ ସାନ କବିରାଜ ସଜାଇ ସଦାନନ୍ଦ ପୁନର୍ବାର ପଦ୍ମାବତୀକୁ ଦେଖିବାକୁ ଆସିଛନ୍ତି ଓ ପଦ୍ମାବତୀ କଥା କହିଛି । ଶେଷରେ ପଦ୍ମାବତୀକୁ ନେଇ ବ୍ରଜସୁନ୍ଦର ପଳାୟନ କରିଛି । ତାକୁ ମାମୁଘର ଅଟଳାଟଳ ସମ୍ପତ୍ତି ମିଳିବାର ଖବର ପାଇ ଜମିଦାର ପଦ୍ମାକୁ ତା ସହିତ ବିବାହ ଦେବାକୁ ରାଜି ହୋଇଛନ୍ତି । ଖୁବ୍ ହାଲୁକା ଭାବରେ ନାଟକ ଶେଷ ହୋଇଛି । ପଦ୍ମା ଓ ସଦାନନ୍ଦଙ୍କ କଳିଗୋଳ ଭିତରେ ମଧୁର ଦାମ୍ପତ୍ୟର ଯେଉଁ ପ୍ରଚ୍ଛନ୍ନ ସ୍ୱର ଶୁଣାଯାଏ ତାହା ସେମାନଙ୍କର ସବୁ ଅଭାବକୁ ଦୂରେଇ ଦେବାର କ୍ଷମତା ରଖେ । ଜମିଦାର ନିଜ କନ୍ୟାର ବିବାହ ଧନୀକ ସନ୍ତାନ ସହିତ କରିବାକୁ ଚାହୁଁଥିବା ମଧ୍ୟ ଗୋଟିଏ ଦୃଷ୍ଟିରୁ ଠିକ୍ ମନେହୁଏ ମାତ୍ର ପ୍ରେମ ପାଇଁ କବିରାଜ

ସାଜିବା ଓ କନ୍ୟାକୁ ନେଇ ପଳାଇବା ଭିତରେ ବ୍ରଜସୁନ୍ଦରର ନାୟକପଣ ଫୁଟି ଉଠିଛି।

ନାଟ୍ୟକାର ଗୋପାଳ ଛୋଟରାୟ ପାରିବାରିକ ଜୀବନର ସାନବଡ଼ ସମସ୍ୟାକୁ ଉତ୍‌ଥାପନ କରିଛନ୍ତି। ହିନ୍ଦୁ ମୁସଲମାନ ସମସ୍ୟା, ପ୍ରେମ ଓ ଅସମବିବାହ ସମସ୍ୟା ସହିତ କରଜ ଶୁଝିବା, ଯୌତୁକ ପ୍ରଥା, ପରିବାର ପାଇଁ ଗ୍ରାମ୍ୟବଧୂର ଅପରିସୀମ ତ୍ୟାଗ ଇତ୍ୟାଦିକୁ ସିଏ ଖୁବ୍ ସନ୍ତର୍ପଣରେ ରୂପ ଦେଇଛନ୍ତି। ସ୍ୱାମୀର ଅପାରଗତାକୁ ଲୁଚାଇବାକୁ ବଧୂଟିଏ ଭୂତ ଲାଗିବାର ବାହାନା କରେ। ବଡ଼ ଅଫିସରଙ୍କୁ ଦେଖା କରିବାକୁ ଯିବାବେଳେ ଅପେକ୍ଷା ହିଁ ସାର ହୁଏ। ସୁପାରିଶ ଓ ପାଉଣାକୁ ନେଇ ସତୁରୀ ଦଶକରେ ନାଟ୍ୟକାରଙ୍କର ମନୋଭାବ, ଅନ୍ଧ ବିଶ୍ୱାସକୁ ଗ୍ରାମର ଉନ୍ନତି କଳ୍ପେ ବିନିଯୋଗ କରିବାର ମାନସିକତାକୁ ମଧ୍ୟ ଏହି ନାଟକରେ ଦେଖାଇ ଦିଆଯାଇଛି। ନାଟ୍ୟକାରଟିଏ ଚରିତ୍ର ସୃଷ୍ଟି କରେ ମାତ୍ର ଚରିତ୍ର ଯଦି ଜୀବନ୍ତ ପାଲଟି ତାକୁ ପ୍ରଶ୍ନ ପଚାରେ ସେ ତା'ର ଉତ୍ତର ଦେଇପାରେ ନାହିଁ। ଏସବୁ କଥା ନାଟ୍ୟକାରଙ୍କ ଲେଖନୀ ମୁନରେ ରୂପାୟିତ ହୋଇଛି ଓ ଗୋପାଳ ଛୋଟରାୟ ନିଜ ନାଟକ ସହିତ ଅଭିନ୍ନ ପାଲଟି ଆମ ସମାଜିକ ଜୀବନ ସହିତ ଏକାତ୍ମ ହୋଇ ଯାଇଛନ୍ତି।

## ନାରୀ ଚରିତ୍ର ପ୍ରଧାନ ନାଟକ

'ଶାଖା ପ୍ରଶାଖା' ନାଟ୍ୟକାର ଛୋଟରାୟଙ୍କର ନଅଟି ନାଟକର ସଂକଳନ। ତାଙ୍କର ପ୍ରତ୍ୟେକ ନାଟକରେ ନାରୀର ସ୍ୱାତନ୍ତ୍ର୍ୟ ରହିଥିଲେ ହେଁ ନାରୀ ଜୀବନର ଅବସାଦ ଅପୂର୍ଣ୍ଣତା ଓ ହାହାକାରକୁ ନେଇ ରଚିତ ଏହି ନଅଟି ନାଟକର ଆବେଦନ ସ୍ୱତନ୍ତ୍ର। ପ୍ରଥମ ନାଟକ 'ଶୋଭା'ରେ କଳାକାର ମଦନ ଭିକାରୁଣୀ ଶୋଭାକୁ ନେଇ ନାଟକ ଲେଖି ନାଟ୍ୟକାରର ମର୍ଯ୍ୟାଦା ପାଏ। ଶ୍ରମିକ ଆନ୍ଦୋଳନରେ ଶୋଭାର ବାପା ମୃତ ଓ ଭାଇ ଦେଶାନ୍ତରୀ। ତା'ର ସମ୍ମାନ ରକ୍ଷା କରିବା ପାଇଁ ଯାଇ ପ୍ରେମିକ ମନୁଆ କାଲୁସର୍ଦ୍ଦାରକୁ ମାରି ଜେଲ୍‌ରେ। ମଦନ ବାବୁ ଶୋଭାକୁ ବଞ୍ଚିବାର ଭରସା ଦେଇଛନ୍ତି ମାତ୍ର ତାକୁ ଭୁଲି ଧନୀ କନ୍ୟା ମାଧବୀକୁ ବିବାହ କରିଛନ୍ତି। 'ବସୁନ୍ଧରା'ରେ ନାୟିକା ବସୁନ୍ଧରା ନିଜ ପିତାଙ୍କ ଜୀବନରକ୍ଷା ପାଇଁ ଡାକ୍ତର ପ୍ରଶାନ୍ତ ରାୟ ପାଖରେ ନିଜକୁ ଉତ୍ସର୍ଗ କରିଛି। ଚିତ୍ରକର ନିକୁଞ୍ଜ ମହାପାତ୍ରଙ୍କୁ ଆରୋଗ୍ୟ କରି ଡାକ୍ତର ପ୍ରଶାନ୍ତ ଖୁବ୍ ପ୍ରଶଂସା ପାଇଛନ୍ତି ମାତ୍ର ବସୁନ୍ଧରା ସବୁ ସହି ନୀରବରେ ଅଶ୍ରୁ ଢାଳିଛି। 'ଛାୟା' ନାଟକରେ ଛାୟା ବେଶ୍ୟାପଡ଼ାର ଝିଅ ଯିଏ ସ୍ୱପ୍ନରେ ଅତନୁ ନାମକ ଯୁବକକୁ ଦେଖି ତା'ପାଇଁ ଦଶ ବର୍ଷ ଅପେକ୍ଷା କରିଛି। ପ୍ରୌଢ଼ ସାଗର ବାବୁ ତାକୁ କିଣିନେବା ପରେ ମଧ୍ୟ ତା'ର ସ୍ୱପ୍ନଦେଖା ଅବ୍ୟାହତ ରହିଛି। ପରିଣତିରେ ପ୍ରକୃତ ଅତନୁ ପରିବାର ଧରି ସେହି ସ୍ଥାନରେ ରହିବାକୁ ଆସି ବେଶ୍ୟାପଡ଼ା ଉଠାଇ ଦେବାର ଯୋଜନା କରିଛନ୍ତି। 'ଭସ୍ମାଚ୍ଛାଦିତ ବହ୍ନି'ରେ ଭାରତ ପାକିସ୍ତାନର ଯୁଦ୍ଧ ବିଷୟ ବର୍ଣ୍ଣିତ। ଦେଶପ୍ରେମ ନିକଟରେ ବ୍ୟକ୍ତିପ୍ରେମ କିଭଳି ତୁଚ୍ଛ ତାହା ହେମନ୍ତ ଓ ସନ୍ଧ୍ୟା ପ୍ରମାଣ କରିଦେଇଛନ୍ତି। 'ବାନ୍ଧବୀ'ରେ ପିତୃମାତୃହୀନା ଲଳିତା କକାଙ୍କ ଆଶ୍ରିତା। ସେ ଗୋପେନ୍ଦ୍ରକୁ ଭଲପାଏ, ମାତ୍ର ତା'ର ଟି.ବି ହେବା ଶୁଣି ଗୋପେନ୍ଦ୍ର ତା'ଠାରୁ ଦୂରେଇଯାଏ। ଅପରପକ୍ଷରେ

ଟି.ବି ରୋଗୀ ମହେଶ ତା'ମନରେ ବଞ୍ଚିବାର ପ୍ରେରଣା ଦିଏ ଓ ନିଜେ ବଞ୍ଚିରହି ଶୋଭାକୁ ବାନ୍ଧବୀ ଭାବରେ ସ୍ୱୀକାର କରେ। ଔଷଧ ସହିତ ସହାନୁଭୂତି ଯେ ଟି.ବି.କୁ ଆରୋଗ୍ୟ କରିପାରେ ଏହା 'ଶୋଭା'ର ବାର୍ତ୍ତା। 'ସଂଗ୍ରାମ'ରେ ଏକମାତ୍ର ପୁଅ ବିଜୟକୁ ମଣିଷ କରିବାକୁ ଜୀବନର ସର୍ବୋତ୍ତମ ପଚିଶି ବର୍ଷ ସୁରେଶ ଓ ମାୟା ଝଗଡ଼ାକରି କାଟି ଦେଇଛନ୍ତି। ପୁଅ ଏମାନଙ୍କୁ ଏକାଠି କରି ପରିବାରର ଶାନ୍ତି ଫେରାଇ ଆଣିବାକୁ ଘରଠାରୁ ଦୂରକୁ ଚାଲିଯାଇଛି। 'ସୀମା'ରେ ବିକାଶର ପ୍ରେମିକା ସୀମା ମୃତ୍ୟୁ ପରେ ମଧ ବିକାଶର ଜୀବନକୁ ଭୂତୁଣୀ ସାଜି ବିପର୍ଯ୍ୟସ୍ତ କରି ଦେଇଛି। ଏହା ୬ ଜୁନ୍ ୧୯୮୯ରେ ସନ୍ଧ୍ୟା ୬.୩୦ ମିନିଟ୍‌ରେ ଦୂରଦର୍ଶନରେ ପ୍ରଚାରିତ ହୋଇଛି। 'ଅନାଗତ'ର ନାୟିକା ସୀମା ଏକ୍‌ଜିବିସନରେ କଳାକୋର୍ଟ ଓ ଫେଲ୍‌ଟ୍‌ହ୍ୟାଟ ପିନ୍ଧିଥିବା ମଣିଷକୁ ତା'ର ପୂର୍ବତନ ପ୍ରେମିକ ସମର ବୋଲି ଭାବିଛି। ତା'ର ବିବ୍ରତ ଭାବ ଦେଖି ସ୍ୱାମୀ ପ୍ରଦୀପ ତାକୁ ସନ୍ଦେହ କରିଛି, ଫଳରେ ସୀମା ଆତ୍ମହତ୍ୟା କରିଦେଇଛି। 'ସମୁଦ୍ର ମନ୍ଥନ'ରେ ନାୟକ ବିକାଶ ଭିନେ ଭାବରେ ବଞ୍ଚିବାକୁ ଚାହିଁ ମଦ ପିଇଛି, ଜୁଆ ଖେଳିଛି। କୁସ୍ଥାନରେ ରାତି ମଧ କଟାଇଛି। ଶେଷରେ ଦଶ ବର୍ଷ ତଳେ ଭେଟିଥିବା ରେଖା ସହିତ ହୋଟେଲରେ ରାତିଟିଏ କଟାଇ ସାରିବା ପରଦିନ ଆତ୍ମହତ୍ୟା କରିଛି। ଜୀବନର ଶ୍ରେଷ୍ଠ ଦାର୍ଶନିକଟିଏ ହିଁ ଆତ୍ମହତ୍ୟା କରିପାରେ। 'ଶାଖା ପ୍ରଶାଖା'ର ନଅଟି ନାଟକ ଭିତରୁ କେବଳ 'ସମୁଦ୍ର ମନ୍ଥନ'ର ମୁଖ୍ୟ ଚରିତ୍ର ହେଉଛି ବିକାଶ। ଅନ୍ୟ ସମସ୍ତ ନାଟକରେ ନାୟିକାମାନେ ସମୟ ଓ ପରିବେଶ କର୍ତ୍ତୃକ ବିପର୍ଯ୍ୟସ୍ତା ହୋଇପଡ଼ିଛନ୍ତି ଯାହାକୁ ନାଟ୍ୟକାର ଖୁବ୍ ସହାନୁଭୂତି ସହିତ ଚିତ୍ରଣ କରିଛନ୍ତି।

## ଐତିହାସିକ ନାଟକ

ନାଟ୍ୟକାର ଗୋପାଳ ଛୋଟରାୟ ଖୁବ୍ ବେଶି ଐତିହାସିକ ନାଟକ ରଚନା କରିନାହାନ୍ତି। ତାଙ୍କର ପ୍ରଥମ ବେତାର ନାଟକ କିନ୍ତୁ ଐତିହାସିକ ନାଟକ, ଯାହାର ନାମ ହେଉଛି 'ସମ୍ରାଟ ନନ୍ଦିନୀ ଜାହାନ୍ନାରା'। ଏହି ନାଟକ ୬ ଜୁନ୍ ୧୯୪୯ରେ ଆକାଶବାଣୀରୁ ପ୍ରସାରିତ ହୋଇଛି। ସେ ସର୍ବମୋଟ ନଅଟି ଐତିହାସିକ ନାଟକ ରଚନା କରିଛନ୍ତି। ବିଭିନ୍ନ ସମୟରେ ଏଗୁଡ଼ିକ ପ୍ରସାରିତ ହୋଇଥିଲେ ହେଁ କେତେକ ଐତିହାସିକ ଚରିତ୍ରର ମାନବୀୟ ସମ୍ବେଦନଶୀଳତା ଓ ଦେଶାତ୍ମବୋଧର ପ୍ରଖ୍ୟାପନ ଏହି ନାଟକଗୁଡ଼ିକର ପ୍ରାଣଧର୍ମ।

ସମ୍ରାଟ ନନ୍ଦିନୀ ଜାହାନ୍ନାରା ସମ୍ରାଟ ଶାହାଜାହାନଙ୍କ କନ୍ୟା ଯିଏ କି ପିତାଙ୍କ ସହିତ ବନ୍ଦିନୀ ଜୀବନକୁ ଆପଣାର କରିଛନ୍ତି। ବୀର ଛତ୍ରଶାଳଙ୍କୁ ମନ ମଧରେ ସ୍ଥାନ ଦେଲେ ହେଁ ନିରବ ରହି ଛତ୍ରଶାଳଙ୍କ ମୃତ୍ୟୁ ସମ୍ବାଦ ପାଇଛନ୍ତି। ସତେଯେପରି ଅବହେଳିତା ଏହି ରାଜକନ୍ୟାଙ୍କ ପାଇଁ ନାଟ୍ୟକାରଙ୍କର ସହାନୁଭୂତି ସହସ୍ରଧାରାରେ ଝରିଯାଇଛି। 'ଅଠରଶହ ସତାବନ' ସିପାହୀ ବିଦ୍ରୋହର ପୃଷ୍ଠଭୂମିରେ ରଚିତ। 'ନନ୍ଦିକା' ରାଧାନାଥ ରାୟଙ୍କର 'ନନ୍ଦିକେଶ୍ୱରୀ' କାବ୍ୟ ଅବଲମ୍ବନରେ ରଚିତ। ରାଜକନ୍ୟା ନନ୍ଦିକା ଏକପକ୍ଷରେ ରାଜ୍ୟ ଓ ପିତା, ଅପରପକ୍ଷରେ

ପ୍ରେମିକ ଚୋରଗଙ୍ଗଙ୍କ ପ୍ରତି ଆକର୍ଷଣ ମଧ୍ୟରେ ଦିଶାହରାଇ ମୃତ୍ୟୁକୁ ଆଲିଙ୍ଗନ କରିଛନ୍ତି। 'ତାମ୍ବୁଲସେବା'ରେ ରାଜା ନରସିଂହଦେବ ଆତ୍ମଭୋଳା ଶିଳ୍ପୀ ଅନନ୍ତ ହାତକୁ ପାନ ବଢ଼ାଇ ଦେବା ତାଙ୍କର ମହାନୁଭବତାର ନିଦର୍ଶନ। ଲୀଳାବତୀ ବିଖ୍ୟାତ ଜ୍ୟୋତିଷ ପଣ୍ଡିତ ଭାସ୍କରାଚାର୍ଯ୍ୟଙ୍କର ବିଦୂଷୀକନ୍ୟା। ତଥାପି ପଣ୍ଡିତ ଭାସ୍କରାଚାର୍ଯ୍ୟ ନିଜ କନ୍ୟାର ଭବିଷ୍ୟତକୁ ଏଡ଼ାଇ ଦେଇପାରନ୍ତି ନାହିଁ। ସମୟର ସଙ୍କେତ ଦେଉଥିବା ଘଟର ଛିଦ୍ର ଲୀଳାବତୀଙ୍କର ମଥାମଣିର ସୁନାଝରି ଛିଣ୍ଡି ବନ୍ଦ ହୋଇଯାଏ। ମାତ୍ର ବୈଧବ୍ୟଯୋଗ ଥିବା ଜାଣି ମଧ୍ୟ ଲୀଳାବତୀ ବିବାହ ପାଇଁ ରାଜି ହୁଅନ୍ତି। 'ରାଜରାଣୀ ମୀରା'ରେ ଗିରିଧର ଗୋପାଳଙ୍କ ପାଇଁ ପାଗଳିନୀ ମୀରାଙ୍କର ଜୀବନାଲେଖ୍ୟ ଚିତ୍ରିତ। 'ହର୍ଷବର୍ଦ୍ଧନ' ବୀର। ଅନେକ ରାଜ୍ୟଜୟ କରିବାପରେ ସେ ଜୀବନର ଅସାରତା ଉପଲବ୍‌ଧିକରି ବୌଦ୍ଧଧର୍ମାବଲମ୍ବୀ ହୋଇଛନ୍ତି। 'ନନ୍ଦକୁମାର ଫାଶୀ' ଇତିହାସର ଏକ କାଳିମାମୟ ଅଧ୍ୟାୟ। ବଂଗଳାର ରାଜକୁମାର ନନ୍ଦକୁମାରଙ୍କୁ ମିଥ୍ୟା ଜାଲ୍ ଦଲିଲ ଦସ୍ତଖତ ଅଭିଯୋଗରେ ୧୭୭୫ ମସିହା ଅଗଷ୍ଟ ୪ ତାରିଖରେ ବ୍ରିଟିଶ୍ ପାର୍ଲାମେଣ୍ଟ ଆଇନ୍ ବଳରେ ଫାଶୀ ହୁକୁମ୍ ହୋଇଥିଲା। ଏ ବିଚାର ଥିଲା ସମ୍ପୂର୍ଣ୍ଣ ଅଭିସନ୍ଧିମୂଳକ ଓ ହେଷ୍ଟିଂସ୍ ନିଜେ ତାଙ୍କୁ ଫାଶୀ ଆଦେଶ ଦେଇଥିଲେ। ନାଟ୍ୟକାର ନନ୍ଦକୁମାରଙ୍କ କିଂକର୍ତ୍ତବ୍ୟବିମୂଢ଼ତାର ଚିତ୍ରଣ କରିବାରେ ନିଜର ସକଳ ସହାନୁଭୂତି ବିନିଯୋଗ କରିଛନ୍ତି। 'ମନିବେଗମ୍' ନାଟକରେ ମନିବେଗମ୍ ବୁଦ୍ଧିମତୀ ଓ ଦୂରଦୃଷ୍ଟିସମ୍ପନ୍ନା କିନ୍ତୁ ସେ କ୍ଷମତା ମୋହରେ ଅନ୍ଧ। ନିଜର ସ୍ୱାର୍ଥରକ୍ଷା ପାଇଁ ସେ ୱାରେନ୍ ହେଷ୍ଟିଂସ୍‌କୁ ଲାଞ୍ଚ ଦେଇପାରନ୍ତି। ପରିଣତିରେ ସେ ଦେଶର ସ୍ୱାଧୀନତା ପାଇଁ ଈଶ୍ୱରଙ୍କୁ ଡାକିଛନ୍ତି।

## ରୂପକ ସ୍ରଷ୍ଟା

ଏହା ନାଟକ ଭଳି ମନେହେଉଥିଲେ ହେଁ ନାଟକଠାରୁ ଭିନ୍ନ। ଏଗୁଡ଼ିକ ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟପୂର୍ତ୍ତି ପାଇଁ ରଚିତ। ଏହି ରୂପକ ତଥ୍ୟପୂର୍ଣ୍ଣ ତଥା ଯୁକ୍ତିସଙ୍ଗତ। କଳ୍ପନାଠାରୁ ବାସ୍ତବତା ଏଥିରେ ଅଧିକ। ଆକାଶବାଣୀରେ ରୂପକର ସ୍ଥାନ ବେଶ୍ ଗୁରୁତ୍ୱପୂର୍ଣ୍ଣ। ନାଟ୍ୟକାର ଗୋପାଳ ଛୋଟରାୟ ସମୟର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଅନେକ ବେତାର ରୂପକ ସୃଷ୍ଟି କରିଛନ୍ତି। ବିଷରୁ ଅମୃତ, ଅପରାଜେୟ, ସ୍ମରଣିକା, ଓଡ଼ିଶାର ଯାତ୍ରା, ଗଣକବି ବୈଷ୍ଣବ ପାଣି, ପଣ୍ଡିତ ନୀଳକଣ୍ଠ, ଢାକା ପତନ, ଚାରଣବାଣୀ, ଜାତିର ଆହ୍ୱାନ, ଦରିଦ୍ର ନାରାୟଣ, ଜାଗିଉଠେ ଭାରତ, ସେମାନେ ଓ ଆମେ, ଛବିଶି ଜାନୁୟାରୀ ପ୍ରଭୃତି ତାଙ୍କର ରୂପକ। ବିଷରୁ ଅମୃତ, ତାଳଗୁଡ଼ ପ୍ରସ୍ତୁତି ସମ୍ପର୍କୀୟ। 'ଦରିଦ୍ର ନାରାୟଣ' ଗାନ୍ଧୀଜୟନ୍ତୀ ଉପଲକ୍ଷେ ୨ଅକ୍ଟୋବର୧୯୬୨ରେ ପ୍ରଚାରିତ। 'ଓଡ଼ିଶାର ଯାତ୍ରା' ଶୀର୍ଷକରେ ଏକାଧିକ ରୂପକ ସେ ରଚନା କରିଛନ୍ତି ଯେଉଁଥିରେ ଯାତ୍ରାର ଲୋକପ୍ରିୟତା, ଯାତ୍ରା ସଂସ୍କାରର ଉଦ୍ୟମ, ନଟନଟୀ, ମାଲ୍ୟାଣୀ, ଡଗର ଦ୍ୱାରା ଚରିତ୍ରମାନଙ୍କର ବୈଶିଷ୍ଟ୍ୟ ଇତ୍ୟାଦି ରୂପ ପାଇଛି। 'ସ୍ମରଣିକା' ମହାତ୍ମା ଗାନ୍ଧିଙ୍କ ଜୀବନୀ ଆଧାରିତ। ଗଣକବି ବୈଷ୍ଣବ ପାଣି, ପଣ୍ଡିତ ନୀଳକଣ୍ଠ ରୂପକଦ୍ୱୟରେ ସେହି ମହାନ ସ୍ରଷ୍ଟାପୁରୁଷମାନଙ୍କ ଜୀବନୀ ରୂପାନ୍ତରିତ ହୋଇଛି। 'ଛବିଶି ଜାନୁୟାରୀ' ୨୬ ଜାନୁଆରୀ

୧୯୬୨ରେ ପ୍ରଚାରିତ। ଏହି ରୂପକରେ ଭାରତର ଭବିଷ୍ୟତ ସମ୍ପର୍କୀୟ ଆଶା ଓ ଆଗ୍ରହ ପରିଲକ୍ଷିତ ହୋଇଛି। 'ଜାଗିଉଠେ ଭାରତ' ଭାରତ ଚୀନ ଯୁଦ୍ଧ ଘୋଷଣା ଉପରେ ଆଧାରିତ। ଭାରତର ଶାନ୍ତି ପ୍ରସ୍ତାବକୁ ଉପେକ୍ଷା କରି ଚୀନ ସରକାର ଯୁଦ୍ଧର ଯେଉଁ ଧମକ ଦେଲେ ସେଥିପାଇଁ ଭାରତୀୟମାନେ ନିଜକୁ କିଭଳି ପ୍ରସ୍ତୁତ କରିବେ ତାହା ଏହି ରୂପକରେ ଉଦ୍‌ବୋଧନ ଭାବରେ ପ୍ରକାଶ ପାଇଛି। ଏହାର ଅନ୍ୟନାମ 'ଆମେ ପ୍ରସ୍ତୁତ'। ସେହିପରି 'ଜାତିର ଆହ୍ୱାନ' ଶୀର୍ଷକରେ ୨୪ ଅକ୍ଟୋବର ୧୯୬୫ରେ ପ୍ରସାରିତ ରୂପକରେ ଦେଶ ପ୍ରତି ଦେଶବାସୀଙ୍କର କର୍ତ୍ତବ୍ୟ କଥା କୁହାଯାଇଛି। 'ସେମାନେ ଓ ଆମେ' ରୂପକ 'ଜାଗିଉଠେ ଭାରତ' ଶୀର୍ଷକରେ ମଧ୍ୟ ପ୍ରସାରିତ ହୋଇଛି। ଏଥିରେ ଦେଶମାତୃକା ପାଇଁ ନାଗରିକର ଦାୟବଦ୍ଧତା ସମ୍ପର୍କରେ ବିଚାର ବ୍ୟକ୍ତ କରାଯାଇଛି। ବିଭିନ୍ନ ଉଦାହରଣ ସାହାଯ୍ୟରେ, ସହଜ ଭାବରେ ତଥ୍ୟ ଉପସ୍ଥାପନ ଓ ସେଥିପାଇଁ ଶ୍ରୋତାମାନଙ୍କର ଆଗ୍ରହକୁ ବଳବତ୍ତର ରଖିବାର କଳା ଛୋଟରାୟ ମହାଶୟ ଜାଣିଥିଲେ। ସେଥିପାଇଁ ଏକାଧିକ ରୂପକ ରଚନା କରି ସେ ସଫଳ ହୋଇଛନ୍ତି।

## ଶ୍ରୁତିମଧୁର ସଂଳାପର ସ୍ରଷ୍ଟା

ସଂଳାପ ନାଟକର ବାର୍ତ୍ତାକୁ ବହନ କରି ଦର୍ଶକ ପାଖରେ ପହଞ୍ଚାଏ। ନାଟକ ପାଇଁ ସଂଳାପର ଗୁରୁତ୍ୱ ସର୍ବାଧିକ। ନାଟ୍ୟକାର ଗୋପାଳ ଛୋଟରାୟ ମଧୁସ୍ରାବୀ ସଂଳାପକାର ଭାବରେ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ। ପାତ୍ରମୁଖୀ ଜୀବନ୍ତ ସଂଳାପ ପ୍ରୟୋଗରେ ସେ ଅଦ୍ୱିତୀୟ। ସଂଳାପର ବୈଚିତ୍ର୍ୟ ନେଇ ତାଙ୍କର ନାଟକ ଶ୍ରୋତା / ଦର୍ଶକମାନଙ୍କର ଲୋକପ୍ରିୟ ହୋଇପାରିଛି। ସତେଯେପରି ଶ୍ରୋତା ବା ଦର୍ଶକ ସେହି ସଂଳାପ ଉଚ୍ଚାରଣ କରିବା ଭଳି ବୋଧ କରିଛନ୍ତି। ବିଶେଷ କରି ବେତାର ନାଟକ ରଚନା ସମ୍ପୂର୍ଣ୍ଣ ଭାବରେ ସଂଳାପ ଉପରେ ନିର୍ଭରଶୀଳ। ଅଭିନେତା ଅଭିନେତ୍ରୀଙ୍କ କଣ୍ଠସ୍ୱର ଶୁଣି ସେମାନଙ୍କୁ ଚିହ୍ନିବା ଓ ବୁଝିବା ପାଇଁ ହୋଇଥାଏ। ଭାଷା ଉପରେ ରୀତିମତ ଦକ୍ଷତା ନ ଥିଲେ ନାଟ୍ୟକାର ବେତାର ନାଟକ ଲେଖିବା ସମ୍ଭବ ନୁହେଁ। ସରଳ, ପରିଚ୍ଛନ୍ନ ଓ ଶ୍ରୁତିମଧୁର ସଂଳାପ ସାହାଯ୍ୟରେ ଚରିତ୍ରମାନଙ୍କୁ ବିଶ୍ୱାସଯୋଗ୍ୟ ଭାବରେ ଉପସ୍ଥାପନ କରିବା – ନାଟ୍ୟକାରଙ୍କର ବୈଶିଷ୍ଟ୍ୟ। କେତୋଟି ଉଲ୍ଲେଖଯୋଗ୍ୟ ନାଟକ ଓ ଏକାଙ୍କିକାରୁ ଉଦାହରଣ ଦେଇ ତାଙ୍କର ସଂଳାପ ଗୁମ୍ଫନ କାରିଗରୀ ସମ୍ପର୍କରେ ଆଲୋଚନା କରିବା।

### କେତୋଟି ଉଦ୍ଦେଶ୍ୟଭିତ୍ତିକ ସଂଳାପ

'ଭରସା'ରେ ଆନନ୍ଦ ମହାପାତ୍ରଙ୍କୁ 'ମଣିଷ କାହିଁକି ଶ୍ରେଷ୍ଠ' ପ୍ରଶ୍ନର ଉତ୍ତରରେ କହିଛି–

ଆନନ୍ଦ– କାରଣ ସେ ମଣିଷ। ସେ ବେଦ ଉପନିଷଦ, ଗୀତା, ଭାଗବତ ରଚନା କରିଚି। କୋଣାର୍କ ତୋଳିଚି। ତାଜମହଲ ତୋଳିଚି। ପାଣିରେ ବୁଡ଼ିଛି। ପବନରେ ଉଡ଼ିଛି। ଲଣ୍ଡନରେ କଥା କହି କଟକରେ ଶୁଣିଛି। ଧର୍ମ ସ୍ଥାପନ

କରିଚି । ଶିକ୍ଷାଦାନ କରିଚି । ସଂସ୍କୃତି ରକ୍ଷା କରିଚି । ବୁଦ୍ଧ, ଚୈତନ୍ୟ, ଯୀଶୁ, ମହମ୍ମଦ, ଗାନ୍ଧି ରୂପରେ ଜନ୍ମଗ୍ରହଣ କରି ଏ ମାନବ ସମାଜର ଅଶେଷ କଲ୍ୟାଣ ସାଧନ କରିପାରିଚି ।(ଭରସା-ପୃ: ୧୦୪)

'ଶଙ୍ଖା ସିନ୍ଦୂର'ରେ ଏହି ଉଦ୍ଦେଶ୍ୟଭିତ୍ତିକ ସଂଳାପ କିଛି ଦେଖିବା । ଶରତ ଓ ବାଣୀର ପାରିବାରିକ ଜୀବନରେ ବାଣୀର ବାପା ରାସବିହାରୀ ଅଯଥା ହସ୍ତକ୍ଷେପ କରନ୍ତି । ତେଣୁ ଶରତର ସାନଭାଇ ଉତ୍ତମ ରାସବିହାରୀଙ୍କୁ କୁହେ-

ଉତ୍ତମ- (ଗୋଟିଏ ସ୍ଥାନରୁ କଇଁଚିଟିଏ ଉଠାଇନେଇ) ଏ କଇଁଚିଟା ଦେଖୁଛନ୍ତି ? ଏ ପତ୍ର ଦୁଇଟିକୁ ମୁଁ ସ୍ୱାମୀ ସ୍ତ୍ରୀ ବୋଲି ଧରିନେଇଚି । (କଇଁଚିଟିକୁ ଚଲେଇ) ସେମାନେ ତାଙ୍କ ବାଟରେ ଠିକ୍ ଚାଲିଛନ୍ତି । କିନ୍ତୁ ତାଙ୍କ ବାଟ ଭଲ କି ମନ୍ଦ, ତାଙ୍କ ବନ୍ଧ ଦଦରା ବି ମଜବୁତ୍ ଏକଥା ଜାଣିବାପାଇଁ ଯଦି ଆପଣ ଆଗ୍ରହୀ ହୋଇ ନାକଟି ଦେଖାନ୍ତି,ତେବେ ଆପଣଙ୍କର ନାକଟି କଟିବା ସାର ହେବ । ତାଙ୍କର କିଛି ହବନାହିଁ । ବୁଝିଲେ- ('ଶଙ୍ଖା ସିନ୍ଦୂର'- ପୃ: ୭୮)

'ଫେରିଆ' ନାଟକରେ ଏହିଭଳି ଉଦ୍ଦେଶ୍ୟଭିତ୍ତିକ ସଂଳାପରୁ ଉଦାହରଣଟିଏ ନେବା । ପ୍ରଫେସର ଦାସ ମୀରା ସହିତ ନିଜର ବିବାହ ପ୍ରସ୍ତାବକୁ ଟାଳିଦିଅନ୍ତି, ମାତ୍ର ମୀରାର ସାହଚର୍ଯ୍ୟ ଚାହାନ୍ତି । ସୁରେଶକୁ ପ୍ରଫେସର ଦାସ ଯେଉଁଭଳି ଅସୁବିଧାରେ ପକେଇଥିଲେ ରଙ୍ଗାଧର ମୀରା ଓ ତାଙ୍କର ବିଭିନ୍ନ ଫଟୋ ଉଠାଇ ତାଙ୍କୁ ସେହିଭଳି ଅସୁବିଧାରେ ପକାଇଛି । ମୀରାକୁ ଇନ୍ଧନ କରି ପ୍ରଫେସର ଦାସ ନିଜର ଲକ୍ଷ୍ୟ ହାସଲ କରିବାକୁ ଚାହାନ୍ତି ।

ସେ ମୀରାକୁ କହନ୍ତି- ''ଗୋଲାପର ଗନ୍ଧ, ସିରାଜୀର ନିଶା ଆଉ ଡେଭିଲ୍‌ର ରକ୍ତ- ଏସବୁର ସନ୍ଧାନ ମୁଁ ତୁମଠାରେ ପାଇଛି ମୀରା- ମୁଁ ତୁମକୁ ଚାହେଁ । ଅକ୍‌ସଫୋର୍ଡ ୟୁନିଭରସିଟି ମତେ ଗୋଟିଏ ରିଭଲଭର୍ ଦେଇଥିଲା- ଏ ଦେଶର ବଡ଼ଲୋକମାନେ ସେଥିରେ ଭରି ଦେଇଛନ୍ତି ଗୁଳି । ଆଉ ସେହି ଗୁଳିଭରା ରିଭଲ୍‌ଭର୍ ଚାଲୁ କରିବାପାଇଁ ତୁମେ ହବ ମୋର ଲାଇସେନ୍‌ସ-'' ଏ ଭଳି କଥାବାର୍ତ୍ତା ସାଧାରଣ ଭାବରେ କେହି କରନ୍ତି ନାହିଁ ମାତ୍ର ନାଟକର ଆବଶ୍ୟକତା ଦୃଷ୍ଟିରୁ ଏଭଳି ସଂଳାପର ଆବଶ୍ୟକତା ରହିଛି, ଯାହା ନାଟକକୁ ଗତିଶୀଳ ତଥା ଉଦ୍ଦେଶ୍ୟମୁଖୀ କରିଥାଏ ।

କରୁଣରସାଶ୍ରୟୀ ସଂଳାପ:

କରୁଣରସର ଆବେଦନ ଦୀର୍ଘସ୍ଥାୟୀ । ଗୋପାଳ ଛୋଟରାୟ ତାଙ୍କ ନାଟକଗୁଡ଼ିକରେ କରୁଣରସର ଅନେକ ସଂଳାପ ଖଞ୍ଜି ଦର୍ଶକମନରେ ପ୍ରଭାବ ପକାଇବାକୁ ସମର୍ଥ ହୋଇଛନ୍ତି । 'ଅର୍ଦ୍ଧାଙ୍ଗିନୀ' ନାଟକରେ ପାଦହୀନ କିଶୋରକୁ ଦେଖି ତୁଳସୀ ବିଳାପ କରନ୍ତି- ''ଆଜି କ'ଣ କଲୁ ସେଇ ସୁନାପାଦ ? ଦେ, ଦେ ମତେ, ମୁଁ ଯୋଡ଼ିଦେବି, ଡାକ୍ତର ପାରି ନାହାନ୍ତି । ଏମାନେ କେହି ପାରିନାହାନ୍ତି- ମତେ ଦେ, ମୁଁ ଯୋଡ଼ିଦେବି । ମୋର ସେଇ ସୁନା ପାଦ ମତେ ଫେରେଇ ଦେ'ରେ ଚଣ୍ଡାଳ, ମତେ ଫେରେଇ ଦେ ।''

### ବ୍ୟଙ୍ଗାତ୍ମକ ସଂଳାପ

ବ୍ୟଙ୍ଗ ମାଧ୍ୟମରେ ଶ୍ରୋତା ବା ଦର୍ଶକଙ୍କୁ ପରିବେଶ ସଚେତନ କରିବା ଏ ଧରଣର ସଂଳାପର ଉଦ୍ଦେଶ୍ୟ। ଗୋପାଳ ଛୋଟରାୟ ଛୋଟ ଛୋଟ ଭୁଲ୍‌କୁ ବ୍ୟଙ୍ଗକରି ନାଟକର ଚିତ୍ରମାନଙ୍କୁ ସୁଧାରିବା ପାଇଁ ପଥ ପ୍ରସ୍ତୁତ କରିଛନ୍ତି- 'ଶେଷ ପର୍ଯ୍ୟନ୍ତ' ଏକାଙ୍କିକାରେ ପୁଅର ବିବାହବାର୍ଷିକୀକୁ ବାପା ଆସିବେ ନାହିଁ ବୋଲି ଚିଠି ଲେଖିଛନ୍ତି- ''ଗତବର୍ଷ ତୁମ ଦ୍ୱିତୀୟ ବାର୍ଷିକୀ ଉତ୍ସବକୁ ମୁଁ ଯାଇ ସବୁ ଦେଖିଛି। କେତେଜଣ ପୁଅ ଝିଅ ଏକାଠି ହୋଇ କଙ୍ଗୋ ବଙ୍ଗୋ ନାମକ ଅଦ୍ଭୁତ ବାଜା ବଜାଇ, ଲାରେ ଲାରେ ଟାରେ ଟାରେ ଭାଷାରେ ଅବୋଧ ଗୀତଗାଇ ନାଚକୁଦ କରିବେ। ଡିସ୍କୋଡିସ୍କୋ ନାଚିବେ। ଏହାକୁ କୌଣସିମତେ ଉତ୍ସବ କୁହାଯାଇ ପାରିବ ନାହିଁ। ଅତଏବ ଏ ଉତ୍ସବକୁ ମୁଁ ଯିବିନାହିଁ। (ହାସ୍ୟରସର ନାଟକ- ପୃ :୨୯)

'ପୂରାପୂରି ପାରିବାରିକ'ର ଓଭରସିଅର ବାବୁଙ୍କ ପରିବାରରେ ଦିବାକର ବାବୁଙ୍କ ପତ୍ନୀ ଅଭିମାନ କରି ରଜରେ ପିଠା କରି ନାହାନ୍ତି। ତେଣୁ ଦିବାକର ବାବୁ ପିଠା କରିବାକୁ ଅଣ୍ଟା ଭିଡ଼ିଛନ୍ତି। ପିଠା କରି ନ ପାରି ସେ ପତ୍ନୀଙ୍କର ବ୍ୟଙ୍ଗବାଣରେ ଜର୍ଜରିତ। ''ଧାଡ଼ି ଧାଡ଼ି କୋଠା ତିଆରି କରେଇଛନ୍ତି, ଭାଟି ଭାଟି ଇଟା ପୋଡ଼େଇଛନ୍ତି ଅଥଚ ପିଠାଟିଏ ପୋଡ଼େଇ ପାରିଲେ ନାହିଁ। (ଗୋପାଳ ଛୋଟରାୟ ଏକାଙ୍କିକା ସଂକଳନ ଭାଗ-୧- ପୃ: ୨୭୪) ଏଠାରେ ପ୍ରଥମ ସଂଳାପରେ ଗୋପାଳ ଛୋଟରାୟଙ୍କର ପାରମ୍ପରିକ ଜୀବନଦୃଷ୍ଟି ଓ ଦ୍ୱିତୀୟରେ ଘରଣୀପଣର ପରିହାସ ସ୍ପଷ୍ଟ ହୋଇଛି। ବିବାହବାର୍ଷିକୀର ପାଶ୍ଚାତ୍ୟ ନୃତ୍ୟ ସଙ୍ଗୀତ ବାପାଙ୍କ ମନକୁ ପାଉନାହିଁ ବା ଘରଣୀକୁ ଛାଡ଼ି ଘର ଯେ ଚଳିପାରିବ, ଏ କଥାରେ ମଧ୍ୟ ତାଙ୍କର ସନ୍ଦେହ ରହିଛି।

### ପ୍ରେମମୂଳକ ସଂଳାପ

ଗୋପାଳ ଛୋଟରାୟଙ୍କ ନାଟକରେ ପ୍ରେମର ତରଳ ପରିପ୍ରକାଶ ଦେଖିବାକୁ ମିଳେନାହିଁ। ତେଣୁ ପ୍ରେମମୂଳକ ସଂଳାପ ଭିତରେ ମଧ୍ୟ ସେ ମୂଲ୍ୟବୋଧକୁ ଉଚ୍ଚସ୍ଥାନ ଦିଅନ୍ତି ଓ ଖୁବ୍ ପରିଚ୍ଛନ୍ନ ଯୁକ୍ତିସଙ୍ଗତ ଓ ପ୍ରଭାବଶାଳୀ ଢଙ୍ଗରେ ପ୍ରେମପ୍ରସଙ୍ଗର ଉତ୍‌ଥାପନ କରନ୍ତି- 'ଝଞ୍ଜା' ଉପନ୍ୟାସର ନାଟ୍ୟରୂପରେ ତୁଷାରକାନ୍ତି ନିକଟରେ ନାୟିକା କ୍ଷଣପ୍ରଭାର ପ୍ରେମନିବେଦନ ଏହିଭଳି- ''ମୋ' ଅନ୍ଧସ୍ୱାମୀର ସଂସାର ଚଳାଇବାକୁ, ମୁଁ ଦାଣ୍ଡକୁ ବାହାରି ଭିକ୍ଷା କଲେ ମତେ ଲଜ୍ଜା ହେବନାହିଁ, ଅପମାନ ହେବନାହିଁ। କିନ୍ତୁ ଏ ବନ୍ଦୀଶାଳାରୁ ମତେ ମୁକ୍ତକର- ଏ ଜଞ୍ଜାଳରୁ ମତେ ବଞ୍ଚାଅ... ମୁଁ ଏ ରାଜପ୍ରାସାଦ ଚାହିଁ ନ ଥିଲି, ମୁଁ ଚାହିଁଥିଲି ତୁମକୁ। ତୁମର ଏ ପାଦ ତଳେ ଆଶ୍ରୟ। ଏଇ ମୋର ସ୍ୱର୍ଗ। ଏଇଠି ମୋର ମୁକ୍ତି। ମୁଁ ତୁମକୁ ଅନୁନୟ କରୁଚି, ତମେ ଚାଲ। ଆମେ ଏଠୁ ଚାଲିଯିବା। ଏ ସହର ଛାଡ଼ି କେଉଁ ଦୂର ପଲ୍ଲୀକୁ। ସେଇଠି ପତ୍ରକୁଡ଼ିଆ ବାନ୍ଧି ରହିବା''- (ଝଞ୍ଜା, Script No-22)

ଏ ପ୍ରେମରେ ଆତ୍ମସମର୍ପଣର ଭାବନା ହିଁ ମୁଖ୍ୟ, ଯାହା କ୍ଷଣପ୍ରଭା ଚରିତ୍ରକୁ ଅପୂର୍ବ ଦୀପ୍ତି ପ୍ରଦାନ କରିଛି।

ହାସ୍ୟରସାତ୍ମକ ସଂଳାପ

ହାସ୍ୟରସାତ୍ମକ ସଂଳାପ ସୃଷ୍ଟିରେ ଗୋପାଳ ଛୋଟରାୟଙ୍କର ସିଦ୍ଧି ରହିଛି। ସ୍ନିଗ୍ଧ ସରସ ହାସ୍ୟର ଛଟା ନେଇ ତାଙ୍କର ଚରିତ୍ରମାନେ ଶ୍ରୋତା ବା ଦର୍ଶକଙ୍କୁ ସନ୍ତୁଷ୍ଟ କରିଥାଆନ୍ତି- 'ଭରସା'ରେ ଆନନ୍ଦ ଓ ବସ୍ତିର କିଶୋର ରଘୁର କଥୋପକଥନ୍-

ଆନନ୍ଦ- ହଇରେ ତୁ ଗୋଲି ମାରିଥିଲୁ ?

ରଘୁ - ହଁ ବାବୁ, ମାରିଥିଲି ତ କ'ଣ ହେଲା ?

ଆନନ୍ଦ - ବେଶ୍ କରିଥିଲୁ, ହଇରେ ସେଇଟା ତୋର ହାତ ନା ବନ୍ଧୁକ ? ଏଇ ହାତରେ ଛୁର୍‌ରା ଫିଙ୍ଗି ମଣିଷକୁ ମାରି ଦେବୁ ତ ? ଲାଇସେନ୍‌ସ କର। ତୁ ଚଞ୍ଚଳ ଲାଇସେନ୍‌ସ କର। ବନ୍ଧୁକ ଲାଇସେନ୍‌ସ ଭଳି ତୋ ହାତ ଦି'ଟାକୁ ଲାଇସେନ୍‌ସ କର। (ଭରସା- ପୃ: ୧୯)

'ବନନାସିକା' ଏକାଙ୍କିକାରେ ଅଭିନେତ୍ରୀ ବନବାଳାଙ୍କ ନାକଭଳି ନାକ ଥିବା ତରୁଣୀକୁ ବିବାହ କରିବ ବୋଲି ନାୟକ ଆନନ୍ଦ ଖବରକାଗଜରେ ବିଜ୍ଞାପନ ଦେଇଛି। ସେ ବିଜ୍ଞାପନ ପଢ଼ି ରମା ଦାସ ଚିଠି ଲେଖିଛନ୍ତି "ମୁଁ ଜଣେ ପ୍ରାର୍ଥୀ ହେବାକୁ ଚାହେଁ ଏବଂ ମୁଁ ବନନାସିକା ବୋଲି ମୋର ବିଶ୍ୱାସ। କିନ୍ତୁ ବନବାଳାଙ୍କ ନାକର ମାପଟା ମୁଁ ଜାଣେ ନାହିଁ ବୋଲି ଦରଖାସ୍ତ କରିପାରୁନି। ଦୟାକରି ତାଙ୍କଠୁ ମାପଟା ଆଣିପଠାଇବେ।" (ହାସ୍ୟରସର ନାଟକ-ପୃ : ୧୪)

'ଦେଖାଦେଖି' ଏକାଙ୍କିକାରେ ବରଘର ଦେଖିବାକୁ ଆସିଥିବା ଭଦ୍ରଲୋକଙ୍କୁ ବଳଦ କିଣିବାକୁ ଆସିଥିବା ଲୋକ ଭାବି ବାରିପିଣ୍ଡାରେ ବସାଇ ପ୍ରକୃତ ବଳଦ କିଣିବାକୁ ଆସିଥିବା ଲୋକଙ୍କୁ ସ୍ୱାଗତସତ୍କାର କରାଯାଉଛି। ସେମାନେ ଏତେ ଆଗ୍ରହ ବିଷୟ ବୁଝିପାରୁ ନାହାନ୍ତି। ମାତ୍ର ବରର ମାମୁ କନ୍ୟାପିତା ମନେକରି ବଳଦକିଣାଳିଙ୍କୁ ବାହାଘର ତାଲିକା ଦେଖାଇଛନ୍ତି ସେତେବେଳେ ମନ୍ଦରଧର କହନ୍ତି- "ମୁଁ ତ ଶୁଣିଥିଲି ଆପଣଙ୍କର ଗୋଟିଏ ଦାମୁଡ଼ି ଅଛି। ଆପଣ କ'ଣ ତାଲିକା ବାହାର କଲେଣି ? ଆପଣଙ୍କର କେତୋଟି ? କ'ଣ ଶହେ-ପଚାଶ ?" (ହାସ୍ୟରସର ନାଟକ- ପୃ : ୨୦୦)

'ଶଙ୍ଖା ସିନ୍ଦୂର' ନାଟକରେ ମୁରାରୀ ଓ ବ୍ରହ୍ମଚାରୀ ଶିକ୍ଷିତ ବେକାର। ସେମାନଙ୍କର ବିବାହ ବୟସ ହୋଇଛି। ଫୁର୍ତ୍ତି କରିବାକୁ ଆଗ୍ରହ ମଧ୍ୟ ଅଛି। ମାତ୍ର ଅଭାବ ସେମାନଙ୍କ ଇଚ୍ଛାପୂରଣରେ ବାଧକ। ମାସର ପହିଲି ପାଞ୍ଚଦିନ ସେମାନେ ସ୍ତ୍ରୀକୁ ନେଇ ମନଖୁସିରେ ଚଳିପାରିବେ। ତେଣୁ ବ୍ରହ୍ମଚାରୀ ମାଷ୍ଟରକୁ କହେ- "ସେଇଥିପାଇଁ, ଯଦି ଏମିତି କେହି ପାତ୍ରୀ ମିଳେ, ଯିଏ ଭୂଦାନ ଯଜ୍ଞ ସୂତ୍ର ଅନୁସାରେ ତା' ପ୍ରେମର ଛଅଭାଗରୁ ଭାଗେ ଆମକୁ ଦେବ, ତା'ହେଲେ ଆମେ ବିବାହର ଚିନ୍ତା କରିବୁ।" (ଶଙ୍ଖା ସିନ୍ଦୂର - ପୃ : ୧୩୮)

ଏହା ଆପାତଃ ହାସ୍ୟକର ମନେ ହେଉଥିଲେ ମଧ୍ୟ ବେକାର ଶିକ୍ଷିତ ଯୁବକର ହତାଶ ଏହି ସଂଳାପରୁ ସ୍ପଷ୍ଟ ହୋଇଥାଏ।

## ସାହିତ୍ୟିକ ସଂଳାପ

ସଂଳାପ ସର୍ବଦା ଦୈନିକ କଥାବାର୍ତ୍ତାଠାରୁ ଭିନ୍ନ । ଏହା ଉଦ୍ଦେଶ୍ୟମୁଖୀ, ପରିଚ୍ଛନ୍ନ ତଥା ପରିବେଶ ଅନୁସାରୀ । ଶ୍ରୋତା ବା ଦର୍ଶକ ବେଳେବେଳେ ମର୍ଯ୍ୟାଦାବନ୍ତ ସାହିତ୍ୟିକ ସଂଳାପ ଶୁଣିବାକୁ ଆଗ୍ରହୀ ହୋଇଥାଏ । ପରିବେଶ ଅନୁସାରୀ ହୋଇ ସଂଳାପର ଗୁରୁତ୍ୱ ବୃଦ୍ଧି ପାଇଥାଏ । 'ଭସ୍ମାଚ୍ଛାଦିତ ବହ୍ନି' ନାଟକରେ ଦେଶପ୍ରେମୀ ସନ୍ଧ୍ୟା ନିଜ ପ୍ରେମିକ ମହେଶ ଗୁପ୍ତଚର ବୋଲି ଜାଣି ତାକୁ ଛୁରି ଭୁଷି ହତ୍ୟା କରିଛି- ତା' ମୁଖରେ ''ମୁଁ ତମକୁ କ୍ଷମା କଲେ, ମୋ' ଦେଶ, ମୋ' ଜାତି ମତେ କେବେହେଲେ କ୍ଷମା କରିପାରିବ ନାହିଁ । ତମ ମୃତ୍ୟୁରେ ଏ ଦେଶ ଯେଉଁ ବିପର୍ଯ୍ୟୟରୁ ରକ୍ଷାପାଇଲା... ତମ ପ୍ରତି ମୋର ସ୍ନେହ- ମମତା- ପ୍ରୀତିର ବିନିମୟରେ ତାହାହିଁ ଭଗବାନଙ୍କର ମୋ' ପ୍ରତି ଆଶୀର୍ବାଦ, ଆଉ ସେତିକିରେ ମୋର ସାନ୍ତ୍ୱନା ।''

(ଭସ୍ମାଚ୍ଛାଦିତ ବହ୍ନି Script)

'ସମୁଦ୍ର ମନ୍ଥନ' ଏକାଙ୍କିକାରେ ବିକାଶ ଦୀର୍ଘ ଦଶ ବର୍ଷ ପରେ ରେଖାକୁ ପାଇଛି ଓ ତା' ସହିତ ହୋଟେଲ୍ କକ୍ଷରେ ରାତି କଟାଇଛି । ପରଦିନ ବିକାଶର ମୃତ୍ୟୁଖବରରେ ବିଚଳିତ ରେଖା ବିକାଶଠାରୁ ଯେଉଁ ଚିଠି ପାଇଛି ତାହା ଏହିଭଳି ''ରେଖା, ହୋଟେଲର ନିର୍ଜନ କୋଠରୀରେ କେତେ ଘଣ୍ଟା ରହି ଆମେ ଆମ ଜୀବନର ପରମ ଆନନ୍ଦ ଉପଭୋଗ କରି ପାରିଚୁ ବୋଲି ଆମେ ଜାଣିଥିଲୁ । କିନ୍ତୁ କ'ଣ ଏ ଆନନ୍ଦ ? କ'ଣ ଏ ଉପଭୋଗ ? ତୁମକୁ ଛାଡ଼ି ଆସିବା ପରେ, ଏଇ ଗୋଟାଏ ଚିନ୍ତା ବାରମ୍ବାର ମୋତେ ଆଘାତ କଲା ଯେ, ଏ ଯେଉଁ ମହାସୁଖ ଏଥିରୁ ଯଦି ପୃଥିବୀ ତମକୁ ଥରେ ବଞ୍ଚିତ କରେ- ତେବେ ଠିକ୍ ସେହି ସୁଖତ ତମକୁ ସେ ଆଉ କେବେ ଦେଇ ପାରିବ ନାହିଁ । ଏହି କଥା ତ ମହାକବି କହି ଯାଇଛନ୍ତି- "There is not a joy the world can give, like that it takes away." ଏ ପୃଥିବୀରେ ତେବେ ମଣିଷ ଜୀବନର ସାର୍ଥକତା କାହିଁ ? ଆବଶ୍ୟକତା ବା କାହିଁ ?'' (ଶାଖା ପ୍ରଶାଖା- ପୃ : ୨୪)

ଏହି ଏକାଙ୍କିକାକୁ ଲେଖକ ନିଜେ ମନସ୍ତତ୍ତ୍ୱବିଦ୍‌ଙ୍କ ଭାଷାରେ Byronic Cynicism ବା lamentationର ଅଭିବ୍ୟକ୍ତି ବୋଲି ପୁସ୍ତକର ମୁଖବନ୍ଧରେ ସୂଚନା ଦେଇଛନ୍ତି ।

## ପାତ୍ରୋପଯୋଗୀ ସଂଳାପ

ନାଟ୍ୟକାର ଗୋପାଳ ଛୋଟରାୟ କଟକ ସହରକୁ ପୃଷ୍ଠଭୂମିରେ ରଖି ଅଧିକାଂଶ ନାଟକ ରଚନା କରିଛନ୍ତି । ତାଙ୍କର ଗ୍ରାମ୍ୟ ଚରିତ୍ରମାନଙ୍କ ପାଇଁ କଟକ ଏକ ସ୍ୱପ୍ନ । କଟକୀ ଚରିତ୍ରଙ୍କ ପାଇଁ କଟକରୁ ହୁଏତ ଅନ୍ୟ ସହରକୁ ଯାତ୍ରା ଏକ ଆବଶ୍ୟକତା କିନ୍ତୁ ଏସବୁ ଭିତରେ ମଧ୍ୟ ସେ ପାତ୍ର ଉପଯୋଗୀ ସଂଳାପ ରଚନାରେ ସିଦ୍ଧହସ୍ତ । 'ପରକଲମ' ନାଟକରେ ମନ୍ଦର ମହାନ୍ତି ଅଭାବୀ । ସେ କୋଳଥ ଡାଲି ଖାଇ ତୃପ୍ତିରେ ହାକୁଟିମାରି ପତ୍ନୀ ସୀତା ଦେଇଙ୍କୁ କହନ୍ତି- ''ହାତ ଖଣ୍ଡେ ତ- ହାତ ଖଣ୍ଡେ ଏକା ପାଇଚ । ଅମୃତ ଚଖେଇ ଦେଲ । ହଇ ହେ,

କୋଉ ଅମଳର ପୋକା କୋଳଥ- ସେ ଡାଲି ପୁଣି ଏତେ ସୁନ୍ଦର। ନାଃ ଏଇ ଗୁଣରେ ତମ ହରିପୁରିଆଣୀ ଝିଅ ସବୁ ମାଇପିଙ୍କୁ ଟପିଯିବେ।'' (ପରକଲମ- ପୃ : ୨୬) ମନ୍ଦର ମହାନ୍ତିଙ୍କ ସଂଳାପ ଭିତରେ ବୁନିୟାଦୀ ସମ୍ପନ୍ନ ପରିବାରର ତଥା ନିର୍ଦ୍ଦିଷ୍ଟ ଗାଁର ଝିଅମାନଙ୍କର ଘରଣୀପଣର ଛବି ଦିଶିଯାଏ।

'ଘଟକ' ନାଟକରେ ନାଟ୍ୟକାର ସମ୍ବଲପୁରୀ, ବାଲେଶ୍ୱରୀ ଓ ବ୍ରହ୍ମପୁରୀ ଓଡ଼ିଆର ସଂଳାପ ଖଞ୍ଜି ବିମଳ ହାସ୍ୟରସ ସୃଷ୍ଟି କରିପାରିଛନ୍ତି। ଅବିବାହିତ ଶିକ୍ଷିତ ଯୁବକ ବର କନ୍ୟା ଓ ବିବାହକୁ ନେଇ ବ୍ୟବସାୟ କରିବାକୁ ଘଟସୂତ୍ର ଅଫିସ ଖୋଲିଛି। ସେଠାରେ ଚନ୍ଦ୍ରା ପ୍ରବେଶ କରି କୁହନ୍ତି-

ଚନ୍ଦ୍ରା- ନାହିଁ ହେ ବାବୁ, ଦେଖିବି ଆଉ କିସ ? ସମାନ ଆଠଘଣ୍ଟାରୁ ଆସି ଏଠି ଆଣ୍ଟ କରି ବସିଚି। ଗୋଟେ ଭଲ ବରପାତ୍ର ନେବି।(ଘଟକ- ୧ମ ଅଂକ- ୧ମ ଦୃଶ୍ୟ)

ଅନ୍ୟଏକ ଦୃଶ୍ୟରେ ମଥୁରୀ ନାମକ ବ୍ୟକ୍ତି ଘଟସୂତ୍ର ଅଫିସର ମ୍ୟାନେଜରଙ୍କୁ କହନ୍ତି-
ମଥୁରୀ - ଲୁକିବେ ? ଏନ୍ତା ଲୁକିଲାବାଲା। ବୁଝିଲ ନାଁ, ମୁଇଁ ହାଇକୋର୍ଟ କେସ୍ କେ ଆଇସି। ଠକାଠକି କଲେଁ ତୁମର କମ୍ପାନୀ କେ ହାଇକୋର୍ଟ ଦେଖେଇଦେମି (ଘଟକ-୨ୟ ଅଂକ- ୧ମ ଦୃଶ୍ୟ)

## ଶ୍ଳେଷାତ୍ମକ ସଂଳାପ

ହାସ୍ୟରସ ଭଳି ବ୍ୟଙ୍ଗ ଓ ଶ୍ଳେଷାତ୍ମକ ସଂଳାପ ରଚନାରେ ମଧ୍ୟ ନାଟ୍ୟକାର ଛୋଟରାୟ ମହାଶୟ ସିଦ୍ଧହସ୍ତ। ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଚରିତ୍ରଟିର ମାନସିକତାକୁ ସମ୍ପୂର୍ଣ୍ଣରୂପେ ଆତ୍ମସ୍ଥ କରିଥାଏ। ତେଣୁ 'ଶଙ୍ଖା ସିନ୍ଦୂର' ଭଳି ପାରମ୍ପରିକ ମୂଲ୍ୟବୋଧର ସୁରକ୍ଷା କରୁଥିବା ନାଟକରେ ଫୁଲାଫାଙ୍କିଆ ଯୁବକ ଉତ୍ତମ ଭିତରେ ସମୟ ପରିବର୍ତ୍ତନରେ ନାୟକପଣ ଆତ୍ମପ୍ରକାଶ କରେ। ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହିଭଳି ସଂଳାପ ବେଶ୍ ପ୍ରଭାବଶାଳୀ- ଲଳିତା ଦେବୀଙ୍କର ତଥାକଥିତ ସମାଜସେବା ପାଇଁ ରାମଲୀଳା ଆୟୋଜନରେ ମାଧବୀ ଅପମାନିତା ହୋଇଛି। ଉତ୍ତମ ଲଳିତା ଦେବୀଙ୍କୁ ଉପଯୁକ୍ତ ଶିକ୍ଷା ଦେବା ପାଇଁ କହେ-

ଉତ୍ତମ- ''x x x କିନ୍ତୁ ସ୍ତ୍ରୀ ଲୋକମାନଙ୍କ ସମ୍ବନ୍ଧରେ ସେ ହୁଏତ ଏଇଆ ଭାବୁଥିବ ଯେ ଏଠି ଯେତେ ସ୍ତ୍ରୀ ଅଛନ୍ତି, ସେମାନେ ସମସ୍ତେ ପରୀକ୍ଷା ଦେବା ପାଇଁ କଣା ମାଠିଆରେ ପାଣି ଭର୍ତ୍ତିକରି କାଠଯୋଡ଼ି କୂଳରୁ ମହାନଦୀ କୂଳ ପର୍ଯ୍ୟନ୍ତ ଚାଲିଯିବେ। ହେଲେ କଣାବାଟେ ଟୋପାଏ ସୁଦ୍ଧା ପାଣି ବୋହିବ ନାହିଁ। (ଶଙ୍ଖା ସିନ୍ଦୂର- ପୃ : ୨୯)

ଏହା ଶ୍ରୀରାଧାଙ୍କର ସତୀତ୍ୱ ପରୀକ୍ଷା ପାଇଁ ଛିଦ୍ରଯୁକ୍ତ ମାଠିଆରେ ପାଣି ଆଣିବା ପ୍ରସଙ୍ଗ ସୂଚାଇଦିଏ। ଅର୍ଥାତ୍ ଅନ୍ୟର ଚରିତ୍ରକୁ ସନ୍ଦେହ କରୁଥିବା ନାରୀ ଯେ ନିଜ ଚରିତ୍ର ସମ୍ପର୍କରେ ସଚେତନ ନୁହେଁ, ଏହା ଶ୍ଳେଷାତ୍ମକ ଢଙ୍ଗରେ ଉପସ୍ଥାପିତ ହୋଇଛି।

# ଆତ୍ମଜୀବନୀ ଲେଖକ ଗୋପାଳ ଛୋଟରାୟ

ସମାଜସଚେତନ ତଥା ନିଜ ସମ୍ପର୍କରେ ସଚେତନ ସ୍ରଷ୍ଟାଟିଏ ହିଁ ଆତ୍ମଜୀବନୀ ଲେଖିପାରେ। ଗୋପାଳ ଛୋଟରାୟ ନିଜର ଆତ୍ମଜୀବନୀର ନାମ ରଖିଛନ୍ତି 'ପଥିକ'। ମୁଖବନ୍ଧରେ ଲେଖକ କହନ୍ତି ''ଏଇ ରଚନାଟି ମୋର ଜୀବନୀ ନୁହେଁ କି ଆତ୍ମଜୀବନୀ ନୁହେଁ। ଏଥିପାଇଁ ମୁଁ ବେଳାଭୂମିରୁ ଉପଳ ସଂଗ୍ରହ କରିନି କି ମହୋଦଧିରୁ ମୁକ୍ତା ଆହରଣ କରିନି। ମୋର ପ୍ରିୟ ସହର / ଲକ୍ଷ୍ମୀସହର କଟକର କିଛି ମାଟି ଗୋଡ଼ି ସଂଗ୍ରହ କରି ସେଇଥିରେ ମୁଁ ପଥିକର କଳେବରକୁ ସୁସଜ୍ଜିତ କରିବାର ପ୍ରୟାସ କରିଛି ମାତ୍ର।'' ଏହି ଆତ୍ମଜୀବନୀ ରଚନା ପାଇଁ ତାଙ୍କୁ ପ୍ରଥିତଯଶା ଔପନ୍ୟାସିକ ବିଭୂତି ପଟ୍ଟନାୟକ ହିଁ ଉତ୍ସାହିତ କରିଥିଲେ। ୧୭୯ ପୃଷ୍ଠାର ଏହି ଆତ୍ମଜୀବନୀରେ ସମକାଳୀନ ରାଜନୀତି, ସାମାଜିକ ବିଧିବ୍ୟବସ୍ଥା, ତତ୍‌କାଳୀନ ପ୍ରମୁଖ ରାଜନୀତିଜ୍ଞ, କବି ଲେଖକ ଚିତ୍ରକର, ଖେଳ ଓ ଖେଳାଳି, ଦ୍ୱିତୀୟ ବିଶ୍ୱଯୁଦ୍ଧ, ଗାନ୍ଧି ଓ ଗୋପବନ୍ଧୁ, ଜରୁରୀକାଳୀନ ଅବସ୍ଥାର ଚିତ୍ରର ବ୍ୟାପକ ଅନୁଶୀଳନ କରାଯାଇଛି।

ବାଲ୍ୟକାଳରୁ ପାରିବାରିକ ଦାୟଗ୍ରସ୍ତ ଗୋପାଳବାବୁ କିଭଳି ଜୀବନକୁ ବୁଝିଛନ୍ତି ଓ ଜୀବନସଂଗ୍ରାମର ସମ୍ମୁଖୀନ ହୋଇଛନ୍ତି ତାହା ସେ 'ପଥିକ'ରେ ସୂଚାଇଛନ୍ତି। ରମା ଦେବୀ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଝିଅ। ସେ ନିଜର ସବୁ ସଂଭ୍ରାନ୍ତପଣକୁ ଆଡ଼େଇ ଦେଶସେବାରେ ବ୍ରତୀ ହୋଇଛନ୍ତି। ତାଙ୍କୁ ଦେଖି ଲେଖକଙ୍କ ମନରେ ପ୍ରଶ୍ନ- ''x x x କିନ୍ତୁ ତାଙ୍କୁ ଆଜି ମୁଁ କି ବେଶରେ ଦେଖୁଚି। ଏଥିରେ ମୋ' ଆଖି ଲୁହ ଛଳଛଳ ହୋଇଯିବ ନା ତାଙ୍କର ଏ ଦେଶସେବା ପାଇଁ ଆନନ୍ଦରେ ମୁଁ ଉଲ୍ଲସି ଉଠିବି ! ଇଏ କ'ଣ ଚୌଧୁରୀ ବଂଶର ସେଇ ବୋହୂ, ଯାହାଙ୍କ ଉପରେ ଭୁଲ୍‌ରେ ଟିକେ ଆଖି ପଡ଼ିଯାଇଥିଲା ବୋଲି ତାଙ୍କ ଶ୍ୱଶୁର ଘରର ଏକ ସମ୍ପର୍କୀୟ ପରିବାରର ଜଣେ ଗୁମାସ୍ତା ପ୍ରାଣ ବିକଳରେ କଟକ ସହରରୁ ପ୍ରାୟ ଚାଳିଶି ମାଇଲି ବାଟ କେବଳ ଦୌଡ଼ି ଦୌଡ଼ି ପଳାଇ ଯାଇଥିଲା ! (ପଥିକ- ପୃ : ୪୯)

ଉତ୍କଳଗୌରବଙ୍କ ଧଳାପଗଡ଼ି, ପ୍ରଥମ ପ୍ରାଦେଶିକ ନିର୍ବାଚନରେ ସରଳା ଦେଇ, ଲତିକା ଦେବୀ, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ, ଓଡ଼ିଶାର ଦୁର୍ଭିକ୍ଷ, ଲୋକେ ଗୁଆ ବଦଳରେ ଶୁଖିଲା ନଡ଼ିଆ ଓ ତାଳମଞ୍ଜି ଖାଇବା ପ୍ରସଙ୍ଗ, ଯୁଦ୍ଧ ଯୋଗୁଁ କଟକ ଆକାଶରେ ଯୁଦ୍ଧଜାହାଜ ଓ ରାସ୍ତାରେ ମିଲିଟାରୀ ଟ୍ରକ୍ ପ୍ରଭୃତିର ବର୍ଣ୍ଣନା ପାଠକକୁ ସେହି ସମୟକୁ ନେଇଯାଏ। ଏଥିସହିତ ଓଡ଼ିଶାର ଫୁଟ୍‌ବଲ୍ ଖେଳ, ବୁଲୁ ବଟନ ଗୋପାଳ ଓ ଇଂଲିଶଟିମ୍‌ର ଜୀବନ୍ତ ବର୍ଣ୍ଣନା 'ପଥିକ'ର ବୈଶିଷ୍ଟ୍ୟ।

ବ୍ରଜସୁନ୍ଦର ଦାସଙ୍କ ସହିତ ତାଙ୍କର ସାକ୍ଷାତ ତାଙ୍କ ଜୀବନକୁ ଏକ ନୂଆ ମୋଡ଼ ଦେଇଛି। ଫଳରେ ନାଟକ ରଚନା ପାଇଁ ସେ ଆଗ୍ରହୀ ହୋଇଛନ୍ତି। କଟକରେ ଆକାଶବାଣୀ ପ୍ରତିଷ୍ଠା ପରେ ଛୋଟରାୟ ମହାଶୟ ରେଡିଓକୁ ତାଙ୍କର ନାଟକ ପାଇଁ ଉପଯୁକ୍ତ ମାଧ୍ୟମ ଭାବରେ ଗ୍ରହଣ

କରିଛନ୍ତି ଓ କ୍ରମାନ୍ୱୟରେ ନାଟକ ରଚନା କରିଚାଲିଛନ୍ତି । ଉତ୍କଳମଣି ଓ ଗାନ୍ଧିଙ୍କ ସ୍ୱର୍ଗବାସ ସମୟରେ ସେ ଶୋକ ପାଳନ କରି ଶ୍ରାଦ୍ଧ ଓ ତର୍ପଣ ଇତ୍ୟାଦି କରିଥିଲେ । ଏହା ତାଙ୍କର ଗୋପବନ୍ଧୁ ତଥା ଗାନ୍ଧିଙ୍କ ବ୍ୟକ୍ତିତ୍ୱ ପ୍ରତି ସମ୍ମାନର ପରିଚୟ ଦେଇଥାଏ । ପାରମ୍ପରିକ ଗୀତିନାଟ୍ୟର ପୁନରୁତ୍‌ଥାନ ପାଇଁ ସେ କେତେ ପରିଶ୍ରମ କରିଛନ୍ତି ତାହାର ସୂଚନା ମଧ୍ୟ ଏ ପୁସ୍ତକରେ ସ୍ଥାନିତ । ପୁସ୍ତକର ପ୍ରାନ୍ତଭାଗରେ ଗୋପାଳ ବାବୁଙ୍କର ପୁସ୍ତକ ସୂଚୀ, ସମ୍ମାନ ମାନପତ୍ର ପଦାବଦବୀର ତାଲିକା ପ୍ରଦତ୍ତ ।

ଏହି ପୁସ୍ତକଟି ଗୋପାଳ ଛୋଟରାୟଙ୍କର ଜୀବନୀ ହେଲେ ହେଁ ଭାରତର ସ୍ୱାଧୀନତାପ୍ରାପ୍ତି, ଓଡ଼ିଶାରେ କଂଗ୍ରେସ ଦଳ, ନିର୍ବାଚନ ପ୍ରଚାର ଇତ୍ୟାଦି ପ୍ରସଙ୍ଗର ଉତ୍‌ଥାପନ 'ପଥିକ'କୁ ତତ୍‌କାଳୀନ ସମାଜର ସ୍ୱଚ୍ଛଦର୍ପଣରେ ପରିଣତ କରିଛି । ଏଥିରେ କିନ୍ତୁ ଛୋଟରାୟ ମହାଶୟ ନିଜ ପରିବାର ସମ୍ପର୍କୀୟ କୌଣସି ତଥ୍ୟ ଦେଇନାହାନ୍ତି । କେବଳ ଉତ୍ସର୍ଗରେ ସେ ଲେଖିଛନ୍ତି- ''ସୌଭାଗ୍ୟବତୀ ବନଲତା ଦେବୀ, ପଥିକର ଯାତ୍ରାର ସମାପ୍ତି ସେଇଠି ଘଟେ, ଯେଉଁଠି ସେ ତା'ର ଛାୟାକୁ ହରାଇବସେ'' ଏହା ତାଙ୍କର ପତ୍ନୀଙ୍କ ଉଦ୍ଦେଶ୍ୟରେ ଲିଖିତ ଯିଏ କି ଛୋଟରାୟ ମହାଶୟଙ୍କର ଜୀବନକୁ ଛାୟାପ୍ରଦାନ କରି ଶୀତଳ କରି ରଖିପାରିଥିଲେ । 'ପଥିକ'କୁ ସେ ଖୁବ୍ ସଚେତନ ଭାବରେ ଲେଖି ପୂର୍ଣ୍ଣାଙ୍ଗ କରିଛନ୍ତି । ୧୯୯୫ରେ ପ୍ରକାଶିତ ଏହି ପୁସ୍ତକରେ ଲେଖକଙ୍କର ପରବର୍ତ୍ତୀ ଜୀବନ ସମ୍ପର୍କୀୟ ତଥ୍ୟ ନାହିଁ ବା ରହିବା ସମ୍ଭବ ମଧ୍ୟ ନୁହେଁ । ମାତ୍ର ଗୋପାଳ ଛୋଟରାୟଙ୍କ ଭିତରେ ଜଣେ ଦେଶଭକ୍ତ, ବିଦ୍ରୋହୀ, ସଂସ୍କାରକାମୀ, ପରମ୍ପରାପୁଷ୍ଟ ତଥା ନୂତନତାର ଆବାହକ ମଣିଷ ବଞ୍ଚିରହିଥିଲା ଏହା 'ପଥିକ'ର ଛତ୍ରେ ଛତ୍ରେ ପ୍ରତିପାଦିତ । ଭାଷା ଓ ଉପସ୍ଥାପନ କୌଶଳ ଏହି ଆତ୍ମଜୀବନୀକୁ ସୁଖପାଠ୍ୟ କରିପାରିଛି ।

# ଗାଳ୍ପିକ ଗୋପାଳ ଛୋଟରାୟ

ନାଟ୍ୟକାର ଗୋପାଳ ଛୋଟରାୟ ପରିଣତ ବୟସରେ ଗଳ୍ପ ଲେଖିବା ଆରମ୍ଭ କରିଛନ୍ତି । ଅଶୀ ଓ ନବେ ଦଶକରେ ତାଙ୍କର ଅନେକ ଗଳ୍ପ ଝଙ୍କାର, ସମାରୋହ, କଥା, ତରଣୀ, ମୌସୁମୀ, ସୂର୍ଯ୍ୟସ୍ନାତ, ନବଲିପି ଓ ଗୋଧୂଳିଲଗ୍ନ ଭଳି ପତ୍ରିକାରେ ପ୍ରକାଶିତ ହୋଇଛି । ସେଗୁଡ଼ିକ ଦୁଇଟି ସଂକଳନରେ ପ୍ରକାଶିତ ମଧ ହୋଇଛି । 'ସେଇଫୁଲ' ଗଳ୍ପ ସଂକଳନରେ ପନ୍ଦରଟି ଓ 'ଚନ୍ଦ୍ରମୁଖୀ ଓ ଅନ୍ୟାନ୍ୟ ଗଳ୍ପ' ସଂକଳନରେ ଏଗାରଟି ଗଳ୍ପ ରହିଛି । 'ସେଇଫୁଲ' ସଂକଳନର ନାକ ଓ ବ୍ଲାକ୍, କାମକଳା, ବାହୁ ଉପାଖ୍ୟାନ (ଚନ୍ଦ୍ରମୁଖୀ ଓ ଅନ୍ୟାନ୍ୟ ଗଳ୍ପ)ର କାହାଣୀ ନେଇ ସେ ପୂର୍ବରୁ ଅଥ ନାସିକା ସମ୍ବାଦ ଓ କାମକଳା ଭଳି ରେଡ଼ିଓ ନାଟକ ଲେଖିଥିଲେ । 'ନାସିକା'କୁ ନେଇ ପ୍ରବନ୍ଧ ରଚନା କରିଥିବା ତରୁଣ ଭଳି 'ବାହୁ ଉପଖ୍ୟାନ'ରେ ବାହୁର ବିଶେଷଣ ଭାବରେ ମୃଣାଳବାହୁର ବର୍ଣ୍ଣନା କରିଥିବା 'ନିଦାବିଷ୍ଟୁ' ନାୟକ ସୁଧାଂଶୁକୁ ଘାରିଛି । ସେଇଫୁଲ, ସୁନୀଳା, ଟି.ଭି ଓ ମାଧବୀ, ଚନ୍ଦ୍ରମୁଖୀ ଭଳି ଗଳ୍ପରେ ଦାମ୍ପତ୍ୟ ଜୀବନର ପାରସ୍ପରିକ ସ୍ନେହ, ଶ୍ରଦ୍ଧା ଓ ବଶମ୍ବଦତାର ଚିତ୍ର ପ୍ରତିଫଳିତ । ଯେଉଁ ଫୁଲ ମୁଣ୍ଡରେ ଲଗାଇ ସୁଭଦ୍ରା କଲେଜରେ ଅନେକ ବାନ୍ଧବୀଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଇଥିଲେ ସେହି ଫୁଲ ସ୍ୱାମୀ ତାଙ୍କ ମଥାରେ ଖୋସିଦେବା ପରେ ତାଙ୍କର ଉକ୍ତି- ''କି ବୋକା ! ବେଣୀରେ ଫୁଲ ଖୋସି ମୁଁ ଏକାଏକା ବାହାରକୁ ଗଲେ ସିନା ଲୋକେ ହସିବେ, ଥଟ୍ଟା କରିବେ- ସେଥିରେ ମୁଁ ମରି ଶୋଇବି । ଏବେ ତ ମୁଁ ତମ ସାଥିରେ ଯାଉଚି । ବେଣୀରେ ତମେ ଫୁଲ ଖୋସ କି ହାତୀଟାଏ ଝୁଲାଇ ଦିଅ ସେଥିରେ ମୋର କ'ଣ ଗଲା ? (ସେଇଫୁଲ- ପୃ: ୧୫) ଫୁଲଠାରୁ ଏଠାରେ ଚଉଦ ବର୍ଷ ବୈବାହିକ ଜୀବନ କଟାଇଥିବା ସୁଭଦ୍ରାର ସ୍ୱାମୀ ରମାକାନ୍ତ ପାଇଁ ସୋହାଗ ହିଁ ବଡ଼ ହୋଇ ଦିଶେ । 'ସୁନୀଳା' ଗଳ୍ପରେ ଏକଦା ନୀଳାକୁ ଭଲପାଉଥିବା କିଶୋର ଦୀର୍ଘ ଦିନ ପରେ ନୀଳାକୁ ଦେଖିଛନ୍ତି । ସିଏ ଚାରୋଟି ଅସୁନ୍ଦର ସନ୍ତାନଙ୍କର ଜନନୀ । ନୀଳାର ସ୍ୱାସ୍ଥ୍ୟରେ ଉନ୍ନତି ହୋଇଛି ଓ ଚିନ୍ତାଧାରା ହୋଇଛି ମାର୍ଜିତ । ପନ୍ଦର ବର୍ଷର ପିଲାଳିଆମିକୁ ମନେପକାଇ ନିଜକୁ ତଥା ନିଜ ପରିବେଶକୁ ନଷ୍ଟ କରିବାକୁ ଚାହେଁ ନାହିଁ । ତେଣୁ ସ୍ୱାମୀ ସଦାନନ୍ଦର 'ସୁନୀଳା' ଭାବରେ ସେ ବେଶ୍ ପରିତୃପ୍ତ ଜୀବନ କଟାଇ ଚାଲିଛି । 'ଟି.ଭି ଓ ମାଧବୀ' ଗଳ୍ପ ଅଶୀ ଦଶକର ରଚନା, ଯେତେବେଳେ ଓଡ଼ିଶାକୁ ଟି.ଭି ନୂଆ ନୂଆ ଆସୁଥାଏ ଓ ସେଥିରେ ମୁହଁ ଦେଖାଇବା ଏକ ମର୍ଯ୍ୟାଦାର ଘଟଣା ବୋଲି ମନେ କରାଯାଉଥାଏ । ମାଧବୀ ଟି.ଭି.ରେ ବାହାରିବ ବୋଲି ଝୁଲଣଯାତ୍ରାରୁ ହଜିଯିବା ଓ ପରିଣତିରେ ଟି.ଭିରେ ଘୋଷିକା ସାଜି ନିଜ ସ୍ୱାମୀ ରମାକାନ୍ତ ସହିତ ସାକ୍ଷାତକାର କରାଇବା ବ୍ୟାପାର ବର୍ଣ୍ଣିତ । 'ଚନ୍ଦ୍ରମୁଖୀ'ରେ ସୁଧା ଓ ଅନୁପମ ସମ୍ପନ୍ନ ପରିବାରର ପତିପତ୍ନୀ । ଛୋଟ ଛୋଟ ଘଟଣାରୁ ଘରେ ଆନନ୍ଦର ସୁଅ ଛୁଟାଇଥିବା ଏହି ଦମ୍ପତି କ୍ରମେ ପରସ୍ପର ପ୍ରତି ଅସହିଷ୍ଣୁ ହୋଇଛନ୍ତି ଓ ନବଜାତ କନ୍ୟା ଚନ୍ଦ୍ରମୁଖୀ ଯୋଗୁଁ ଉଭୟ ପରସ୍ପରକୁ ପୁନର୍ବାର ଶ୍ରଦ୍ଧା କରିଛନ୍ତି ।

'ଶ୍ୱେତ ବ୍ରିଟିଶ୍ ଓ ଅଶ୍ୱେତ ଆମେରିକାନ୍' ଦ୍ୱିତୀୟ ମହାଯୁଦ୍ଧର ପୃଷ୍ଠଭୂମିରେ ରଚିତ। ଏହି ଘଟଣା ଛୋଟରାୟ ମହାଶୟ ନିଜ ଆତ୍ମଜୀବନୀ 'ପଥିକ'ରେ ମଧ୍ୟ ବର୍ଣ୍ଣନା କରିଛନ୍ତି। କୁଜଙ୍ଗ ଉପକୂଳରେ ବୋମା ମାଡ଼ରେ ଆହତ ସୈନ୍ୟମାନଙ୍କୁ କଟକ ବଡ଼ ଡାକ୍ତରଖାନାରେ ରଖାଯାଇଛି। କଟକର କମିଶନର ସାହେବ ଓ ତାଙ୍କର ଶ୍ରୀମତୀ ଆହତ ସୈନ୍ୟମାନଙ୍କୁ ଦେଖିବାକୁ ଆସି ସେମାନଙ୍କୁ ସିଜର୍ସ ସିଗାରେଟ୍ ପ୍ୟାକେଟ୍ ପ୍ରଦାନ କରିଛନ୍ତି ମାତ୍ର ଶ୍ୱେତାଙ୍ଗ ସୈନ୍ୟମାନଙ୍କୁ ସିଗାରେଟ୍ ଦେବାବେଳେ କୃଷ୍ଣାଙ୍ଗ ଆମେରିକାନ୍ ସୈନ୍ୟଙ୍କୁ ଭାରତୀୟ ସୈନ୍ୟମାନଙ୍କ ସହିତ ବିଡ଼ି ବଣ୍ଡିଲ୍ ଦେଇଛନ୍ତି। ଆମେରିକାନ୍ ନିଗ୍ରୋ ଏହାର ଦୃଢ଼ପ୍ରତିବାଦ କରି ବିଡ଼ି ତାଙ୍କ ଉପରକୁ ଫିଙ୍ଗି ଦେଇଛନ୍ତି।

୧୯୯୦ ମସିହାରେ ରୋମ୍‌ରେ ଅନୁଷ୍ଠିତ ଜର୍ମାନୀ ଓ ଆର୍ଜେଣ୍ଟିନା ମଧ୍ୟରେ ବିଶ୍ୱକପ୍ ଫୁଟ୍‌ବଲ୍ ଫାଇନାଲ ଖେଳ ପୃଷ୍ଠଭୂମିରେ ରଚିତ 'ମଧ୍ୟରାତ୍ରର ପ୍ରହସନ'ରେ ଫୁଟବଲ ଖେଳରେ ଆତ୍ମବିସ୍ମୃତ ନବ ବିହାହିତ ବିଜନ ବାସର ରାତିରେ ନିଜର ପତ୍ନୀକୁ ଖୁସିରେ କଥା ପଦେ ମଧ୍ୟ କହିନାହିଁ। କିନ୍ତୁ ଆର୍ଜେଣ୍ଟିନା ହାରିବା ପରେ ମାରାଡ଼ୋନା କାନ୍ଦିବା ଦେଖି କାନ୍ଦି ମଶାରି ଖୁଣ୍ଟରେ ମୁଣ୍ଡ ବାଡ଼େଇ ଫୁଲାଇ ଦେଇଛି। 'ମାରାଥନ' ଶୀର୍ଷକ ଗଳ୍ପ ଏହି କ୍ରୀଡ଼ା ପ୍ରତିଯୋଗିତା ସମ୍ପର୍କରେ ରଚିତ ଏକ ଚମତ୍କାର ଗଳ୍ପ, ଯାହା ଛୋଟରାୟ ମହାଶୟଙ୍କର ଅନ୍ୟତମ ବଳିଷ୍ଠ ତଥା ଲୋକପ୍ରିୟ ଗଳ୍ପ। ଖ୍ରୀ.ପୂ. ଅଢ଼େଇ ହଜାର ବର୍ଷ ତଳେ କିଭଳି ମାରାଥନ୍ ରେସ୍ ଆରମ୍ଭ ହୋଇଥିଲା ତା'ର ବିବରଣୀ ସହିତ ଅଲିମ୍ପିକର ଇତିହାସ ସେ ସାଗର ଚରିତ୍ରର ଚିନ୍ତାରେ ଖଞ୍ଜିଛନ୍ତି। ସହପ୍ରତିଯୋଗୀ ନିଜର ପ୍ରେମିକାଠାରୁ ଉତ୍ସାହ ପାଇ ଧାଇଁବା ଆରମ୍ଭ କରିଛନ୍ତି। ମାତ୍ର ସାଗର ଦେଖୁଛି ଝିଅଟିଏ ତା' ସହିତ ଦୌଡ଼ି ତାକୁ ଉତ୍ସାହିତ କରିଛି। ସାଗର ଅବଶେଷରେ ମାରାଥନ ରେସ୍‌ରେ ପ୍ରଥମ ହୋଇଛି, ଅଥଚ ତାକୁ ଉତ୍ସାହିତ କରିଥିବା ଅଜଣା ଝିଅଟି ଷ୍ଟାଡ଼ିୟମ୍ ବାହାରେ ଅଚେତ ହୋଇ ଡାକ୍ତରଖାନା ଯାଇଛି। ଯେ କୌଣସି କାର୍ଯ୍ୟରେ ଦୃଢ଼ପ୍ରତିଜ୍ଞ ହୋଇ ଆଗେଇବାକୁ ପ୍ରେରଣା ଅବଶ୍ୟ ଲୋଡ଼ା, ଏହା ହିଁ 'ମାରାଥନ୍'ର ବକ୍ତବ୍ୟ। 'ମାଧବୀ' ଗଳ୍ପରେ ଅଭାବୀ ପରିବାରର ଝିଅ ମାଧବୀ ଫିଜିକ୍‌ସ୍‌ରେ ଉଚ୍ଚତର ଗବେଷଣା କରିବାକୁ ଫିଲାଡେଲଫିଆ ଯିବ। ତା'ର ମନପସନ୍ଦର ଯୁବକ ବିକାଶକୁ ବିବାହ କରିବା ପରେ ସେ ଧନୀ ପରିବାରର ବୋହୂ ହେବ ଓ ଦୁହେଁ ମିଶି ଗବେଷଣା କରିବେ। ମାତ୍ର ରୁଗ୍‌ଣ ପିତାଙ୍କ ପାଇଁ ମାଧବୀ ବିକାଶର ଏଭଳି ଆଗ୍ରହକୁ ଏଡ଼ାଇ ଯାଇଛି। ଠିକ୍ ଏହାର ବିପରୀତ ଘଟିଛି 'ନବଦମ୍ପତି' ଗଳ୍ପରେ। ଅଶୋକ ଶୀଘ୍ର ଧନୀ ହେବାର ସ୍ୱପ୍ନ ନେଇ ରୂପାକୁ ବାପଘରୁ ଅର୍ଥ ଆଣିବାକୁ ବାଧ୍ୟ କରେ। ରୂପା ଯଦି ତା କଥାରେ ରାଜି ନ ହୁଏ ସେ ରୂପାକୁ ହତ୍ୟା କରି ପୁନର୍ବାର ବିବାହ କରିବ ବୋଲି ମଧ୍ୟ ରୋକ୍‌ଠୋକ୍ ଜଣାଇଦିଏ। ରୂପା ମନ ସ୍ଥିର କରି ସେହି ବିଷାକ୍ତ ଇଞ୍ଜେକ୍‌ସନ୍ ଦେଇ ସ୍ୱାମୀକୁ ହତ୍ୟା କରେ।

'ବାସର' ଓ 'ଅନ୍ତିମବାଣୀ' ଗଳ୍ପଦ୍ୱୟ ରାଜପୁତ ପରିବାରକୁ କେନ୍ଦ୍ର କରି ରଚିତ। ରାଣୀ ଚୁଦାଓ୍ୱତର ସର୍ଦ୍ଦାରଙ୍କ ପତ୍ନୀ, ଯିଏ ବାସର ଘରୁ ସ୍ୱାମୀଙ୍କୁ ଯୁଦ୍ଧ ପାଇଁ ପଠାଇ ଦେଇଛି ଓ ପରେ

ନିଜର ଚିତ୍ରପଟକୁ ଅନ୍ତିମ ଭେଟି ରୂପେ ପଠାଇ ତରବାରୀରେ ନିଜର ଜୀବନଦୀପ ଲିଭାଇ ଦେଇଛି । ପ୍ରେମ ପାଇଁ ବଞ୍ଚିଥିବା ରାଣୀ ମାନରକ୍ଷା ପାଇଁ ମୃତ୍ୟୁବରଣ କରିଛି । 'ଅନ୍ତିମବାଣୀ'ରେ ବିକାନେରର ସର୍ଦ୍ଦାର କନ୍ୟା ମୃଦୁଲା ଅସ୍ତ୍ରଶସ୍ତ୍ର ଚାଳନାରେ ପାରଙ୍ଗମା । କୌଣସି ଦିନ ଭଗବତୀ ମନ୍ଦିରକୁ ଅଶ୍ୱଚଢ଼ି ଯିବା ସମୟରେ ଦୁର୍ଯୋଗକୁ ତା'ର ଅଶ୍ୱ ତାକୁ ଅନ୍ୟରାଜ୍ୟକୁ ନେଇଯାଇଛି । ସେ ମୋଗଲ ସେନପତିଙ୍କର ବନ୍ଦିନୀ ହୋଇରହିଛି । ସର୍ଦ୍ଦାରଙ୍କ ବନ୍ଧୁ ଜୟଚନ୍ଦ୍ର ମଲ୍ଲ ମୋଗଲ ସେନାପତିଙ୍କ ନିକଟରେ ମଧ୍ୟସ୍ଥତା କରି ମୃଦୁଳାକୁ ଫେରାଇ ନେବାକୁ ଚାହାନ୍ତି ମାତ୍ର ମୃଦୁଳା ଅପମାନିତା ହୋଇ ଖୁବ୍ ନାଟକୀୟ ଢଙ୍ଗରେ ମୋଗଲ ସେନାପତିଙ୍କ କଳଙ୍କିତ କାହାଣୀର ବର୍ଣ୍ଣନା କରିଛି । ଅନଓ୍ୱାର ହୁସେନ୍‌ଙ୍କୁ ହତ୍ୟା କରି ସେ ତା'ର ପତ୍ନୀକୁ ହାରେମକୁ ଆଣିବାକୁ ଚାହେଁ, ଯେଉଁଥିପାଇଁ ମୃଦୁଳା ଏକ ମାଧ୍ୟମ ହେବାକୁ ଯାଉଛି । ତେଣୁ ସେ ଜୟଚନ୍ଦ୍ରଙ୍କୁ ହତ୍ୟା କରି ନିଜେ ସେହି ତରବାରୀରେ ମୃତ୍ୟୁବରଣ କରିଛି । ତା'ର ଅନ୍ତିମ ବାଣୀ ହେଉଛି- ''ମୋର ଏଇ ସାମାନ୍ୟ ଜୀବନଦାନ ବିନିମୟରେ ଜଣେ ପତିପ୍ରାଣା ସତୀନାରୀ ପାଶବିକ ଅତ୍ୟାଚାରରୁ ମୁକ୍ତି ପାଇବା ସଙ୍ଗେ ସଙ୍ଗେ ତା ନିରୀହ ସ୍ୱାମୀ ସହିତ ଦୁହେଁ ଯେ ମୃତ୍ୟୁମୁଖରୁ ରକ୍ଷା ପାଇଲେ, ସେଥିପାଇଁ କେବଳ ବିକାନିର ନୁହେଁ, ସମସ୍ତ ରାଜସ୍ଥାନ, ଏପରି କି ସମସ୍ତ ଭାରତବର୍ଷ ଯେଉଁ ମାନସମ୍ମାନ ଓ ମର୍ଯ୍ୟାଦାବୋଧ ଲାଭ କଲା, ସେଇ ଆଶ୍ୱାସନାରେ ମୁଁ ହସି ହସି ମୋର ଏ ମୃତ୍ୟୁ ପଥକୁ ବାଛିନେଲି ।'' (ଚନ୍ଦ୍ରମୁଖୀ ଓ ଅନ୍ୟାନ୍ୟ ଗଳ୍ପ- ପୃ : ୧୦୪) ଉଭୟ ଗଳ୍ପରେ ରାଜପୁତ ରମଣୀର ଦେଶ ପାଇଁ ଆତ୍ମୋତ୍ସର୍ଗ ହିଁ ମୁଖ୍ୟ ହୋଇଛି ।

ସନ୍ତାନବତ୍ସଳା ଜନନୀ ଶିଶୁ ସନ୍ତାନକୁ ସ୍ତନ୍ୟପାନ କରାଉଥିବା ଚିତ୍ରପଟର ଶିଳ୍ପୀକୁ ଆଇନର ବିରୁଦ୍ଧାଚରଣ କରୁଥିବା ଅପରାଧରେ ଦଣ୍ଡିତ କରାଯିବାର ପ୍ରସ୍ତାବକୁ ବ୍ରିଟେନ୍‌ର ସାମ୍ରାଜ୍ଞୀ ଗ୍ରହଣ କରିପାରି ନାହାନ୍ତି । ଯେଉଁ ପତ୍ରିକାରେ ଏ ଚିତ୍ର ସ୍ଥାନିତ ହୋଇଥିଲା ତାହାକୁ ପ୍ରସାରିତ ହେବାର ଆଦେଶ ଦିଆଯାଇଛି । ୧୯୯୨ ଅଗଷ୍ଟ ପହିଲାରେ ବିଶ୍ୱ ସ୍ତନ୍ୟପାନ ଦିବସ ଉପଲକ୍ଷେ ନୂଆଦିଲ୍ଲୀରେ ଏକ ସମ୍ମିଳନୀରେ ଅନୁଷ୍ଠିତ ହୋଇଥିଲା ଯହିଁରେ ଶିଶୁ ସନ୍ତାନ ପାଇଁ ମା' କ୍ଷୀରର ଉପାଦେୟତା ଆଲୋଚିତ ହୋଇଥିଲା । ସେହି ସମ୍ବାଦ ଏଭଳି ଗଳ୍ପ ସୃଷ୍ଟିର ପ୍ରେରଣା ବୋଲି ଲେଖକ ନିଜେ ସୂଚନା ଦେଇଛନ୍ତି । 'ନାଁ ତୁମେ କିଛି କହିପାରିବ ନାହିଁ' ଏକ ଚରିତ୍ରର ସଂଳାପ ଯେଉଁ ଚରିତ୍ରରେ ଫାଷ୍ଟକ୍ଲାସ୍ ଡେପୁଟୀ ମାଜିଷ୍ଟ୍ରେଟଙ୍କୁ ଯଦୁନାଥ ମହାପାତ୍ର ଅଭିନୟ କରିଥିଲେ । ଚରିତ୍ରଟି ଥିଲା ଏକ ବିଚାରକଙ୍କର । ସେହି ଚରିତ୍ରରେ ସମ୍ପୂର୍ଣ୍ଣ ଆକୃଷ୍ଟ ହୋଇ ମାଜିଷ୍ଟ୍ରେଟ ନିଜର ସଂଳାପ ଭୁଲି ଏଭଳି ଉଚ୍ଚାରଣ କରିଥିଲେ ଓ 'ଯମୁନାର ବିଚାର' ଶୀର୍ଷକ ନାଟକର ପରିଣତି ଯମୁନା ନ୍ୟାୟ ପାଇଥିଲା ।

'ମାଟି କାନ୍ଥ-ପକ୍‌କା କାନ୍ଥ' ଗଳ୍ପରେ ଧନୀ ଓ ଦରିଦ୍ର ପରିବାରର ପାର୍ଥକ୍ୟ ରୂପାୟିତ । ଗରିବ ଘରର ବୋହୂ ମାଟି କାନ୍ଥ ଲିପିଲା ପରେ ମଧ ବଉଳି ଫାଟିଯାଏ । ଧନୀ ପରିବାରର ସନ୍ତାନ ବୁଲୁ ସେହି ଚିତ୍ରରେ ଖେଳେ ଓ ମାଟି ଛଡ଼ାଏ । ବୁଲୁ ବୋଉ ବୁଲୁକୁ ଛାଡ଼ନ୍ତି ନାହିଁ । ଗରିବ ଘରର ବୟସ୍କା ସୁରିଆ ମା' ମଧ କାନ୍ଥ ଖୋଳିବାରୁ ବୁଲୁକୁ ଗାଳିଦିଏ । କିନ୍ତୁ ପରିଣାମରେ

ପକ୍‌କା କାନ୍ଥ ଖୋଲିବାର ଚେଷ୍ଟାରେ ବୁଲୁର ନଖ ଫାଟି ରକ୍ତାକ୍ତ ହୁଏ। 'ପ୍ରତିଶ୍ରୁତି'ର ଅର୍ଥ କେମିତି ବଦଳିଯାଉଛି ଓ କ୍ରମେ ପ୍ରତିଶ୍ରୁତି ଦେଇ ପାଳନ ନ କରିବାର ମାନସିକତା ଆମକୁ କାବୁ କରୁଛି ତାହା 'ପ୍ରତିଶ୍ରୁତି' ଗଳ୍ପର ମୂଳ କଥା। 'କିଛି କୋହଳ କରାଯାଇପାରେ' ସଂରକ୍ଷଣ ବ୍ୟବସ୍ଥା ପ୍ରତି ଲେଖକଙ୍କର ଏକ ବିଦ୍ରୁପ।

ମଞ୍ଚ ଅଭିନେତ୍ରୀ ସରଳାର ଜୀବନଯାତ୍ରା ସରଳ ଅଥଚ ମର୍ଯ୍ୟାଦାବନ୍ତ। ସେ ସଫଳ ଅଭିନେତ୍ରୀ, ଅଭିନୟ ପାଇଁ ତାକୁ ବାରମ୍ବାର ଦିଲ୍ଲୀ କଲିକତା ଯିବାକୁ ହେଉଛି। ତେଣୁ ତା'ର ବୋଉ ତାକୁ ବିବାହ ଦେବାକୁ ଚାହାନ୍ତି। ସଂଜୟ ସରଳାକୁ ପସନ୍ଦ କରେ। ସେ ଆଉ କେଉଁ ଝିଅକୁ ବିବାହ କରିବ ନାହିଁ। ପ୍ରତିଭାବାନ ଉଚ୍ଚଶିକ୍ଷିତ ସଂଜୟ ସରଳାକୁ ବିବାହ କରିବ ବୋଲି ତା'ର ଘର ଲୋକଙ୍କୁ ମନାଇଛି। ସରଳାର ଚିନ୍ତାଧାରା ହେଉଛି ଯେ ''ନାରୀ ମୁକ୍ତା ନୁହେଁ ଯେ ତା' ଦେହରେ କଳଙ୍କ ଲାଗିବ ନାହିଁ। ସେହିପରି ନାରୀ ଲୁହା ନୁହେଁ ଯେ ତା' ଦେହରେ ନିଶ୍ଚୟ କଳଙ୍କ ଲାଗିବ-'' (ସେଇଫୁଲ- ପୃ: ୧୦୨) ସଂଜୟର ବାପା ସରଳାକୁ ହୀରାମୁଦି ପିନ୍ଧାଇ ଆଶୀର୍ବାଦ କରିଛନ୍ତି। 'ସଂଜୟ ସରଳାକୁ ଅଭିନେତ୍ରୀ ଜୀବନରୁ ମୁକ୍ତି କରିବ।' ଏ କଥା ସଂଜୟଠାରୁ ଶୁଣିବା ପରେ ସରଳା ଏହାକୁ ସଂଜୟର ଦୟା ବୋଲି ମନେ କରିଛି ଓ ତା'ର ଅହମିକାକୁ ଜବାବ ଦେବାକୁ ଯାଇ ପୁନର୍ବାର ରଙ୍ଗମଞ୍ଚର ଜୀବନକୁ ଆଦରି ନେଇଛି। 'ଆଉ ଏକ ନାରୀ: ରାଧିକା ମାନସିଂହ'ରେ ମଧ୍ୟ ରାଧିକା ଖୁବ୍ ବ୍ୟକ୍ତିତ୍ୱମୟୀ ନାରୀ। ଇଚ୍ଛା ବିରୁଦ୍ଧରେ ଯାଇ ବୋଉଙ୍କ ମନ ରଖିବାକୁ ସିଏ ପାଠ ପଢ଼ିଛି। ଚାକିରି ପାଇଁ ଇଣ୍ଟରଭ୍ୟୁ ଦେଇ ଚାକିରି ମଧ୍ୟ କରିଛି, କିନ୍ତୁ ତା' ମନରେ - ''ପାଠପଢ଼ି ଚାକିରି କରିବା କ'ଣ ନାରୀ ସ୍ୱାଧୀନତା ? ଗୋଟାଏ ପାରିବାରିକ ବନ୍ଧନରୁ ମୁକୁଳିଯାଇ ଗୋଟିଏ ଅଫିସ ଗୃହର ପଙ୍ଖା ତଳେ ଚୌକି ଉପରେ ବସି ଦାସୀତ୍ୱର ଜୀବନ କଟାଇବା କ'ଣ ନାରୀ ଜାଗରଣ ? ଭାରତୀୟ ଓଡ଼ିଆ ପରିବାରର ସେ ଗୋଟିଏ ଝିଅ, ଗୋଟିଏ ଭଉଣୀ, ଗୋଟିଏ ଝିଆରୀ ବା ଗୋଟିଏ ନାତୁଣୀ- ସମସ୍ତଙ୍କ ସ୍ନେହ ମମତାର ଅଧିକାରିଣୀ। ମାତ୍ର ପରିବାରର ସମସ୍ତେ ସ୍ୱାର୍ଥ ସର୍ବସ୍ୱ ହୋଇ ଅର୍ଥ ବିନିମୟରେ ତାକୁ ଦାସତ୍ୱ ବନ୍ଧନକୁ ଠେଲି ଦେବାର ଇକ୍ୟୁଏସନ୍ କ'ଣ ନାରୀର ଅର୍ଥନୈତିକ ମୁକ୍ତି ?'' (ସେଇଫୁଲ- ପୃ : ୫୫) ଏହା ସତେ ଯେପରି ପରମ୍ପରାପୁଷ୍ଟ ଛୋଟରାୟ ମାନସର ନାରୀ ସ୍ୱାଧୀନତା ସମ୍ପର୍କରେ ଚିନ୍ତାଧାରା ଯାହା ରାଧିକାର ଚିନ୍ତାରେ ପ୍ରତିଫଳିତ। ଶେଷରେ ବିବାହ ପୂର୍ବରୁ ତା'ର ନାରୀତ୍ୱ ଭୂଲୁଣ୍ଠିତ ବୋଲି ସେ ମାଆକୁ ଓ ସ୍ୱାମୀଙ୍କୁ ମଧ୍ୟ କହିଛି। ଭଲ ବୋହୂ ହେବାର ସାଧନା କରିବା ପରେ ମଧ୍ୟ ସେ ରମାକାନ୍ତଙ୍କର ସ୍ନେହରୁ ବଞ୍ଚିତ ହୋଇଛି। ଶେଷରେ ରମାକାନ୍ତ ନିଜ ମନକୁ ବୁଝାଇବା ଲଗ୍ନରେ ହିଁ ରାଧିକା ଆତ୍ମହତ୍ୟା କରିଛି। ଏକ ବିଡ଼ମ୍ବିତ ଜୀବନ ସେ କଟାଇଛି ଯେଉଁଥିପାଇଁ ସେ ଦାୟୀ ନୁହେଁ। ତେଣୁ ତା'ର ଆତ୍ମମର୍ଯ୍ୟାଦା ହିଁ ତାକୁ ଏଭଳି ନିଷ୍ପତ୍ତି ପାଇଁ ବାଧ କରିଛି। 'ବନ୍ଧୁ' ଗଳ୍ପରେ ଉର୍ମି ଓ କବିପ୍ରସାଦ ପରସ୍ପରକୁ ବନ୍ଧୁ ଭାବରେ ଗ୍ରହଣ କରିଛନ୍ତି। କବି ଗାୟକ ଓ ଉର୍ମି ତା'ର ଉତ୍ତମ ଶ୍ରୋତା। କବି ଆଇ.ଇ.ଏସ୍ ପାଇଛି। ମାତ୍ର ଡଃ ଦାସ ଉର୍ମିକୁ ଜଣେ ଡାକ୍ତର ସହିତ ବିବାହ ଦେବାକୁ ଚାହାନ୍ତି। ଓଡ଼ିଶାରେ

ଉର୍ମି ତାଙ୍କ ଆଖି ଆଗରେ ରହିବା ଦରକାର। ତେଣୁ ଆଇ.ଇ.ଏସ୍‌ର ମୋହରେ ଓଡ଼ିଶା ବାହାରକୁ ନ ଯାଇ କବି ପ୍ରସାଦ ଅଧ୍ୟାପକ ହେବ ଓ ଉର୍ମି ବାପାଙ୍କ ପାଖରେ ରହିବ ବୋଲି ନିଷ୍ପତ୍ତି ମଧ୍ୟ ହୋଇଛି। ଶେଷରେ ଡଃ ଦାସଙ୍କ ଭିତରକୁ ନିଃସ୍ୱାର୍ଥପର ବାପାଭାବଟି ପଶିଆସିଛି ଓ ସେ ଝିଅ ଜ୍ୱାଇଁଙ୍କର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ସେମାନଙ୍କୁ ଓଡ଼ିଶା ବାହାରକୁ ଯିବାର ଅନୁମତି ପ୍ରଦାନ କରିଛନ୍ତି।

'ଲାଲବାଗ କୋଠିରୁ ଏକ ନମ୍ବର ସଫଦରଜଙ୍ଗ' ଗଳ୍ପରେ କଟକର ଲାଲବାଗ କୋଠିରେ ଏକଦା ରାତ୍ରିଯାପନ କରିଥିବା ନେହେରୁଜୀଙ୍କ ପ୍ରସଙ୍ଗ ଉତ୍‌ଥାପିତ ହୋଇଛି। ସେଥିପାଇଁ ନିରାପତ୍ତା ରକ୍ଷୀମାନେ ଜାଗ୍ରତ। ତରୁଣ ସବ୍‌ଇନ୍‌ସପେକ୍ଟର ଆର୍. କେ. ଆନନ୍ଦରେ ନେହେରୁଜୀ ନିଦ୍ରା ଯାଇଥିବାର ଦୃଶ୍ୟ ଦେଖୁଛନ୍ତି। ପ୍ରଧାନମନ୍ତ୍ରୀ ଭାବେ ସେ ଦେଇଥିବା ବକ୍ତୃତାଠାରୁ ଦେଶ ବିଭାଜନର ଦଙ୍ଗା ଦୃଶ୍ୟ ମଧ୍ୟ ତାଙ୍କୁ ଦିଶିଯାଉଛି। ସେ କୈଶୋରରେ ଥରେ ପ୍ରାଦେଶିକ ନିର୍ବାଚନ ସମୟରେ ନେହେରୁଙ୍କୁ ଫୁଲମାଳ ଦେଇଥିଲେ। ଜବାହରଙ୍କ ଆତ୍ମଜୀବନୀ ପଢ଼ିବାର ଆଗ୍ରହ ନେଇ ସେ ବାଚସ୍ପତିଙ୍କ ପୁତ୍ର ସହିତ ବନ୍ଧୁତ୍ୱ କରିଛନ୍ତି। ରବୀନ୍ଦ୍ରନାଥଙ୍କର ହସ୍ତଲିଖିତ ମତାମତ ''ଜବାହର ଇଜ୍ ଦ ଇଟରନାଲ ସ୍ପ୍ରିଙ୍ଗ୍ ଅଫ୍ ଇଣ୍ଡିଆ'' ଅର୍ଥ ଜବାହର ହିଁ ଭାରତର ଚିରବସନ୍ତ, ଏକଥାଟି ଆର୍.କେ.ଙ୍କୁ ପ୍ରଭାବିତ କରିଛି। ଅବସର ନେବା ପରେ ଆର୍.କେ. ଦିନେ ହଠାତ୍ ରେଡ଼ିଓରୁ ଶୁଣିଛନ୍ତି ଇନ୍ଦିରା ଗାନ୍ଧି ତାଙ୍କ ନିରାପତ୍ତାରକ୍ଷୀଙ୍କ ହସ୍ତରେ ନିହତ। ଦିନେ ନିରାପତ୍ତା ରକ୍ଷୀ ଭାବରେ ସେ ନେହେରୁଙ୍କ ସୁଖନିଦ୍ରାର ଭାର ନେଇଥିଲେ ଓ ତାକୁ ଠିକ୍ ଭାବେ ତୁଲାଇଥିଲେ। ଇନ୍ଦିରା ଗାନ୍ଧିଙ୍କ ନିରାପତ୍ତାରକ୍ଷୀଙ୍କର ଏଭଳି କାର୍ଯ୍ୟରେ ସେ ମର୍ମାହତ ହୋଇ ମଥାରେ ଆଘାତ ପାଇ ଚେତାଶୂନ୍ୟ ହୋଇଛନ୍ତି।

'ଉପହାର'ରେ ମଧ୍ୟ ଦେଶାତ୍ମବୋଧର ସ୍ୱର ଅନୁରଣିତ। ଭାରତ ଓ ଇସ୍ରାଏଲ୍‌ର କୂଟନୀତିକ ସମ୍ପର୍କ ଛିନ୍ନ ହୋଇଯିବା ପରେ ଭାରତର ରାଷ୍ଟ୍ରଦୂତ ଶ୍ରୀ ଏମ୍.କେ. ବାଜପେୟୀ ଇସ୍ରାଏଲର ରାଷ୍ଟ୍ରଦୂତ ନାଥାନ ମାୟେରଙ୍କୁ ଏକ ଉତ୍ସବରେ ଭେଟିଛନ୍ତି। ମାୟେର ଅତି ଆନନ୍ଦରେ କହି ଚାଲିଥାଆନ୍ତି ଯେ ସେ ଅବସର ନେବା ପରେ କୋଣାର୍କ ରଥଚକ୍ର ଓ ସାଞ୍ଚିର ବୌଦ୍ଧତୋରଣ ଦେଖିବାକୁ ଭାରତ ଭ୍ରମଣ ପାଇଁ ଆସିବେ। ଶ୍ରୀମତୀ ମାୟେର ତାଙ୍କର ହାତବ୍ୟାଗ୍ ଖୋଲି ମେହେଗାନି କାଠରେ ତିଆରି ଏକ କାଠବାକ୍‌ସ ବାହାର କଲେ ଓ ମିଷ୍ଟର ବାଜପେୟୀଙ୍କୁ ଉପହାର ଦେଲେ। ନିଜ ଚାକିରିର ସମ୍ମାନ ଓ କୂଟନୈତିକ ଆଚରଣର ସ୍ୱଚ୍ଛତା ପାଇଁ ବାଜପେୟୀ ସେ ବାକ୍‌ସଟିକୁ ଖୋଲି ନ ଥିଲେ। ଡେଭିସ୍ କପ୍ ଟେନିସ୍ ଖେଳିବାକୁ ଭାରତୀୟ ଦଳ ଇସ୍ରାଏଲ ଯିବାର ଅନୁମତି ପାଇଲେ ନାହିଁ ଶୁଣି ସେ ଦୁଃଖିତ। ତେଣୁ ବିବ୍ରତ ହୋଇ ସେ ଦୀର୍ଘଦିନରୁ ଖୋଲି ନ ଥିବା ସେ ବାକ୍‌ସଟି ଖୋଲିଛନ୍ତି। ଖୋଲିବା ପରେ ସେମାନଙ୍କୁ ଚକିତ କରି ଖଦଡ଼ କନାରେ ତିଆରି ଏକ ତ୍ରିରଙ୍ଗା ପତାକା ବାକ୍‌ସ ଭିତରୁ ବାହାରିଛି। ସେମାନଙ୍କର ସକଳ ପ୍ରତ୍ୟାଶାରୁ ଊର୍ଦ୍ଧ୍ୱରେ ଏହି ପତାକା ସେମାନଙ୍କୁ ମାୟେରଙ୍କ ଅନାବିଳ ବନ୍ଧୁତ୍ୱକୁ ହିଁ ସୂଚାଇ ଦେଇଛି, ଯାହାକି ରାଷ୍ଟ୍ରଦୂତପଣ ଭିତରେ ସୀମିତ ନୁହେଁ।

'ଆଖି' ଏପରି ଏକ ଗଳ୍ପ ଯାହା ସଚେତନ ମଣିଷର ମୁହୂର୍ତ୍ତକର ସ୍ଖଳନ କଥା ସୂଚାଇଦିଏ। ଶିଶୁ ସାହିତ୍ୟିକ ସୀତାକାନ୍ତ ପଦସ୍ଥ କର୍ମଚାରୀ, ଦକ୍ଷ, ଶୃଙ୍ଖଳାପ୍ରିୟ ନିଷ୍କଳଙ୍କ ଗୃହସ୍ଥ। ପଡ଼ୋଶୀ ବୃନ୍ଦାବନ ବାବୁଙ୍କ ମ୍ୟୁନିସିପାଲଟିରେ ସାଧାରଣ କର୍ମଚାରୀ ମାତ୍ର ତାଙ୍କର ଉତ୍ତମ ପଡ଼ୋଶୀ। ବୃନ୍ଦାବନ ବାବୁଙ୍କର ପନ୍ଦର ବର୍ଷୀୟା ଭାଣିଜୀ କୌଣସି ଆବୃତ୍ତି ପ୍ରତିଯୋଗିତାରେ ଯୋଗ ଦେବାକୁ ଆସିଥିଲା। ସେ ସୀତାକାନ୍ତ ବାବୁଙ୍କଠାରୁ ଲେଖାଟିଏ ଚାହେଁ ଯାହା ତାଙ୍କ ସ୍କୁଲପତ୍ରିକାରେ ବାହାରିବ। ସେ ଝିଅଟି ମାମୁଘର ଓଳିତଳେ ଗାଧୋଉ ଥିବାର ଦେଖି ସୀତାକାନ୍ତ ବାବୁ ନ ଜାଣିଲା ଭଳି ତାକୁ ବାରମ୍ବାର ଚାହୁଁଛନ୍ତି। ଏ କଥା ସିଏ ନିଜ ପତ୍ନୀଙ୍କୁ ମଧ୍ୟ କହିନାହାନ୍ତି। ଏଥିପାଇଁ ସେ ମଧ୍ୟ ଖୁବ୍ ଅନୁତପ୍ତ। ମଣିଷ ଯେତେ ସଚେତନ ଭାବରେ ବଞ୍ଚିବା ଅଭ୍ୟାସ କଲେ ମଧ୍ୟ ତା'ର ଯେ ସାମୟିକ ସ୍ଖଳନ ଘଟିପାରେ, ଏହା ଲେଖକ ସୂଚାଇଛନ୍ତି। ନିଜେ ପ୍ରାପ୍ତବୟସ୍କ ଝିଅଟିର ବାପା ହୋଇ ମଧ୍ୟ ଅଜ୍ଞାତ କିଶୋରୀ କନ୍ୟାର ଶାରୀରିକ ଲାବଣ୍ୟ ତାଙ୍କୁ ମୁଗ୍ଧ କରିଛି।

ଏହି କେତୋଟି ଗଳ୍ପ ଭିତରେ ନାଟ୍ୟକାର ମହାଶୟ ଯଥେଷ୍ଟ ନାଟକୀୟ ପରିବେଶ ସୃଷ୍ଟି କରିଛନ୍ତି। ଅନେକ ଗଳ୍ପରେ ନାଟକର ସଂଳାପ ଭଳି ଚରିତ୍ରମାନଙ୍କର ସିଧାସଳଖ କଥୋପକଥନ ରହିଛି। ନାରୀର ମନସ୍ତତ୍ତ୍ୱ ଆକଳନ ଏହି ଗଳ୍ପଗୁଡ଼ିକର ବୈଶିଷ୍ଟ୍ୟ। କେବଳ ନାରୀ ନୁହେଁ ପାରିବାରିକ ଜୀବନର ଛୋଟ ଛୋଟ ଆନନ୍ଦ ତାଙ୍କ ଗଳ୍ପଗୁଡ଼ିକୁ ସୁଖପାଠ୍ୟ କରିଛି। ଯେଉଁଠି ସେ ଆନନ୍ଦ ନଷ୍ଟ ହୋଇଛି, ସେଠାରେ 'ନବଦମ୍ପତି' ଗଳ୍ପର ରୂପା ଭଳି ଚରିତ୍ର ସୃଷ୍ଟି ହୋଇଛନ୍ତି, ଯିଏ କି ସ୍ୱାମୀକୁ ବିଷ ଇଞ୍ଜେକ୍ସନ୍ ଦେବାର ମାନସିକତା ସଞ୍ଚୟ କରିଛନ୍ତି। ଦେଶାତ୍ମବୋଧର ଚିତ୍ର କେତୋଟି ଗଳ୍ପରେ ସହଜଲବ୍ଧ। ବିଦେଶୀ ରାଷ୍ଟ୍ରଦୂତ ମାୟେର ଭାରତୀୟ ରାଷ୍ଟ୍ରଦୂତଙ୍କୁ ଭାରତର ଜାତୀୟ ପତାକା ପ୍ରଦାନ କରିଛନ୍ତି (ଉପହାର)। ନେହେରୁଜୀଙ୍କୁ ସୁରକ୍ଷା ଦେଇଥିବା ପୋଲିସ ଅଫିସର ଇନ୍ଦିରା ଗାନ୍ଧିଙ୍କୁ ତାଙ୍କର ନିରାପତ୍ତାରକ୍ଷୀ ହତ୍ୟା କରିଥିବା ସମ୍ବାଦ ପାଇ ବିଚଳିତ ହୋଇଛନ୍ତି (ଲାଲବାଗ କୋଠିରୁ ଏକ ନମ୍ବର ସଫଂଦରଜଙ୍ଗ), ଶିଶୁ ମନସ୍ତତ୍ତ୍ୱକୁ ନେଇ 'ମାଟି କାହ୍ନୁ ଓ ପକ୍କା କାହ୍ନୁ' ରଚିତ ହେଲେ ହେଁ ସେଥିରେ ବୟସ୍କମାନଙ୍କର ଛନ୍ଦ କପଟ ଓ ଆର୍ଥନୀତିକ ପ୍ରଭେଦର କଥା ମୁଖ୍ୟ ହୋଇଛି। ମାରାଥନ, ଶ୍ୱେତ ବ୍ରିଟିଶ୍- ଅଶ୍ୱେତ ଆମେରିକାନ୍, କିଛି କୋହଳ କରାଯାଇପାରେ, ଚିତ୍ରପଟ୍ଟ, ମଧ୍ୟରାତ୍ରିର ପ୍ରହସନ ପ୍ରଭୃତିରେ ଅନେକ ତଥ୍ୟ ପ୍ରଦତ୍ତ। ଯେମିତି ମାରାଥନର ଆରମ୍ଭ, ଅଲମ୍ପିକ୍‌ର ସୃଷ୍ଟି, ଦ୍ୱିତୀୟ ବିଶ୍ୱଯୁଦ୍ଧକାଳୀନ ସ୍ଥିତି ଓ ବର୍ଣ୍ଣବୈଷମ୍ୟ, ଚାକିରି ବୃତ୍ତିରେ ସ୍ଥାନ ସଂରକ୍ଷଣ, ସ୍ତନ୍ୟପାନର ଉପଯୋଗିତା ଓ ଫୁଟବଲ୍ ଖେଳର ଆନନ୍ଦ ଭଳି ଘଟଣାକୁ ଗାଣ୍ଡିକ ସମୟ ତାରିଖ ବାର ପ୍ରଭୃତି ସହ ଉପସ୍ଥାପନ କରିଛନ୍ତି। 'ଟି.ଭି ଓ ମାଧବୀ'ରେ ତ ଓଡ଼ିଶାକୁ ଟେଲିଭିଜନ୍ ଆସିବା ଘଟଣା ଜଡ଼ିତ। ସେଇମିତି 'ମଧ୍ୟରାତ୍ରିର ପ୍ରହସନ'ରେ ସ୍ୱାମୀ ବିଜନ ବାବୁ ଟି.ଭି ଫୁଟବଲ ଖେଳ ଦେଖିବା ସମୟରେ ଜେମା ତାଙ୍କ ଘରୁ ଯୌତୁକରେ ଆସିଥିବା ଟି.ଭି ପାଇଁ ସନ୍ତୋଷ ମଧ୍ୟ ପ୍ରକାଶ କରିଛି।

ଏହି ଗଳ୍ପଗୁଡ଼ିକ ଗୋପାଳ ଛୋଟରାୟଙ୍କର ପରିଣତ ବୟସର ସୃଷ୍ଟି। ତେଣୁ ଏଗୁଡ଼ିକ ବେଶ୍ ସଫଳ। ଭାଷା, ରଚନାଶୈଳୀ, ସର୍ବୋପରି ବିଷୟ ନିର୍ବାଚନ ନେଇ ଏଗୁଡ଼ିକ ପ୍ରଭାବଶାଳୀ ହୋଇପାରିଛନ୍ତି।

ଘଟଣାଟିଏ ଘଟିଥାଏ। କେବେ ଦୈନନ୍ଦିନ ଜୀବନରୁ ଘଟଣାଟିଏ ସଂଗୃହୀତ ହୁଏ। ମାତ୍ର ତାକୁ ଗଳ୍ପରେ ରୂପାୟିତ କରିବା ସମୟରେ ତାହା ସମ୍ବାଦ ହୋଇ ନ ରହି ସାହିତ୍ୟ ପାଲଟିଯାଏ। ଗୋପାଳ ଛୋଟରାୟ ସମକାଳୀନ ଅନେକ ସମସ୍ୟାକୁ ସର୍ବକାଳୀନ କରି ଗଳ୍ପରେ ରୂପାୟିତ କରିଛନ୍ତି। ନାରୀ ମନସ୍ତତ୍ତ୍ୱ ଚିତ୍ରଣ, ସୈନିକର ଦେଶପ୍ରେମ, ପାରିବାରିକ ଜୀବନରେ ଛୋଟ ଛୋଟ ଖୁସି, ଧନୀଦରିଦ୍ର ଭେଦଭାବ, ଅର୍ଥନୀତିକ ବିସଙ୍ଗତି ପ୍ରଭୃତିକୁ ସେ ଖୁବ୍ ସହଜ ଭାବରେ ନିଜ ଗଳ୍ପରେ ଧରିରଖିପାରିଛନ୍ତି। ସତେ ଯେପରି ତାଙ୍କ ଗଳ୍ପଗୁଡ଼ିକ ସମୟର ଗୋଟିଏ ଗୋଟିଏ ସ୍ୱଚ୍ଛ ଦର୍ପଣ। ବର୍ଣ୍ଣନାରେ ସେ ଯେତିକି ଆବେଗ ଉଚ୍ଛଳ, ନାଟକୀୟତା ପ୍ରଦର୍ଶନରେ ସେତିକି ମିତବାକ୍। ତେଣୁ ଗୋଟିଏ କଥାରେ କହିଲେ ଦୀର୍ଘଦିନ ନାଟକ ଲେଖି ନିଜର ଦକ୍ଷତା ପ୍ରତିପାଦନ କରିଥିବା ସ୍ରଷ୍ଟା ପରିଣତ ବୟସରେ ଗଳ୍ପ ଲେଖି ତହିଁରେ ନିଜର ସମସ୍ତ ଦକ୍ଷତା ବିନିଯୋଗ କରିଛନ୍ତି। ଏହି ଦୁଇଟି ସଂକଳନରେ ସ୍ଥାନିତ ଛବିଶିଟି ଗଳ୍ପ ( ୧୧+୧୫) ବ୍ୟତୀତ ତାଙ୍କର ଆହୁରି କେତେକ ଗଳ୍ପ ଥିବାର ଅନୁମାନ କରାଯାଇପାରେ।

# ଓଡ଼ିଆ ସାହିତ୍ୟରେ ଗୋପାଳ ଛୋଟରାୟଙ୍କ ସ୍ଥାନ

ଗୋପାଳ ଛେରଟରାୟ ଏକ ନାମ ନୁହେଁ, ଏକ ଅନୁଷ୍ଠାନ। ଜୀବନ ଓ ଜୀବିକା ମଧ୍ୟରେ ସୁବର୍ଣ୍ଣ ସେତୁ ଭାବରେ ତାଙ୍କର ନାଟ୍ୟମାନସ ପୁଷ୍ପିତ ଓ ପଲ୍ଲବିତ। ଆକାଶବାଣୀ ତାଙ୍କର ଜୀବିକାର୍ଜନର ସ୍ଥାନ ନୁହେଁ, ବରଂ ଜୀବନ ଅନ୍ୱେଷଣର ମାର୍ଗ ପାଲଟିଛି। ଫଳରେ ଦୀର୍ଘ ତଥା ସଫଳ ନାଟ୍ୟକାର ଜୀବନ ତାଙ୍କର ହୋଇଛି ଅନେକ ପରବର୍ତ୍ତୀ ସାହିତ୍ୟ ସ୍ରଷ୍ଟାଙ୍କର ଆଦର୍ଶ। ନାଟ୍ୟକାର ପୁରାତନ ଗୀତିନାଟ୍ୟର ଯୁଗୋପଯୋଗୀ ପରିବର୍ତ୍ତନ ସହିତ ପ୍ରସାରଣ ତଥା ନୂତନ ଗୀତିନାଟକର ସୃଜନ ଦିଗରେ ସେ ନିଜର ଶ୍ରମ ଓ ଆଗ୍ରହର ବିନିଯୋଗ କରିଛନ୍ତି। ରୂପକ, ରୂପାନ୍ତର, ଆତ୍ମଜୀବନୀ ଲେଖନ, ସର୍ବୋପରି ଗଳ୍ପ ରଚନାରେ ମଧ୍ୟ ତାଙ୍କର ସିଦ୍ଧି ଅବିସମ୍ବାଦିତ।

ପ୍ରାଚୀନ ଗୀତିନାଟ୍ୟଗୁଡ଼ିକ ଦର୍ଶକଠାରୁ ବିଚ୍ୟୁତ ହୋଇ ବିସ୍ମୃତି ଗର୍ଭରେ ଲୀନ ହୋଇଯାଉଥିବା ସମୟରେ ଗୋପାଳ ଛୋଟରାୟ ନିଜର ଏକକ ପ୍ରଚେଷ୍ଟାରେ ତାହାକୁ ଲୋକଲୋଚନକୁ ଆଣିଛନ୍ତି। ଏହା ଫଳରେ ସେ ପରମ୍ପରା ସହିତ ନିଜେ ସମ୍ପୃକ୍ତ ହୋଇ ଶ୍ରୋତାମାନଙ୍କୁ ମଧ୍ୟ ସମ୍ପୃକ୍ତ କରାଇଛନ୍ତି। କଟକ  ଆକାଶବାଣୀ ମଧ୍ୟ ଏହାଦ୍ୱାରା ପରିପୁଷ୍ଟ ହୋଇଛି। ଗୀତିମୟତାର ଯେଉଁ ନୂତନ ପରିଚ୍ଛନ୍ନ ସ୍ୱରୂପ ସିଏ ପ୍ରଥମେ ଓଡ଼ିଆ ଦର୍ଶକକୁ ଦେଇଥିଲେ ତାହା ପରବର୍ତ୍ତୀ ସମୟରେ ତଥାକଥିତ ପରୀକ୍ଷାମୂଳକ ବା ପ୍ରୟୋଗବାଦୀ ନାଟକକୁ  ପ୍ରଭାବିତ କରିଛି। ଫଳରେ Third theatre ଧାରାରେ ଏହି ଗୀତିମୟତା ସମଗ୍ର ନାଟକକୁ ପ୍ଲାବିତ କରିଛି। ଜୀବନର ଗୁରୁତ୍ୱପୂର୍ଣ୍ଣ ସ୍ଥିତିରେ ମଣିଷ ସଙ୍ଗୀତ ମାଧ୍ୟମରେ ହିଁ ଭାବବ୍ୟକ୍ତ କରିପାରେ, ଏହା ପରବର୍ତ୍ତୀ ନାଟ୍ୟକାରମାନେ ପ୍ରମାଣିତ କରିଛନ୍ତି। ଗୋପାଳ ଛୋଟରାୟ ପାଲଟିଛନ୍ତି ଏ କ୍ଷେତ୍ରରେ ପଥପ୍ରଦର୍ଶକ। ନାଟକର ଅବବୋଧକୁ ଶାଣିତ ଓ ସଞ୍ଚରଣଶୀଳ କରିବା ପାଇଁ ପାରମ୍ପରିକ ଗୀତ ବାଦ୍ୟ ଓ ନୃତ୍ୟର ଉପସ୍ଥିତିକୁ ଆଧୁନିକ ନାଟ୍ୟକାରମାନେ ଗ୍ରହଣ କରିଛନ୍ତି। ଗୋପାଳ ଛୋଟରାୟ ପ୍ରଥମେ ପ୍ରାଚୀନ ଗୀତିନାଟ୍ୟର ସଂପାଦିତ ରୂପ ପ୍ରସାର କରିଥିଲେ ହେଁ ପରେ ନିଜର ସୃଷ୍ଟି ଭାବରେ ରାମାୟଣ, ଶ୍ରୀଗଣେଶ ପ୍ରଭୃତି ରଚନା କରି ଲୋକପ୍ରିୟ ହୋଇଥିଲେ। ପରେ ଶାରଦା ପ୍ରସନ୍ନ ନାୟକ, ଶରତଚନ୍ଦ୍ର ମୂଳିଆ, କୁଳମଣି ମହାପାତ୍ର, ବିଷ୍ଣୁଚରଣ ସାହୁ ଓ ବିଚିତ୍ରାନନ୍ଦ ମହାନ୍ତି ପ୍ରଭୃତି ସମ୍ପୂର୍ଣ୍ଣ ଗୀତିଧର୍ମୀ ନାଟକ ମଧ୍ୟ ରଚନା କରରିଛନ୍ତି। ଏ କ୍ଷେତ୍ରରେ ଛୋଟରାୟ ମହାଶୟ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଦିଗକୁ  ଦୃଷ୍ଟି ଦେଇଛନ୍ତି। ଦର୍ଶକ / ଶ୍ରୋତାଙ୍କ ଆଗ୍ରହ ଓ ନାଟ୍ୟକାରମାନଙ୍କର ଅଭିରୁଚି। ଯୁଗାନୁସାରୀ ସଙ୍ଗୀତ ସୃଷ୍ଟି ମାଧ୍ୟମରେ ସେ ସମସ୍ତ ଦିଗକୁ ମର୍ଯ୍ୟାଦା ମଧ୍ୟ ଦେଇଛନ୍ତି।

ମଞ୍ଚନାଟକ ସ୍ରଷ୍ଟା ଭାବରେ ସେ ଲୋକପ୍ରିୟ ତଥା ସଫଳ। 'ପରକଲମ' ଓଡ଼ିଶାର ତତ୍‌କାଳୀନ ରାଜନୀତିକୁ ନେଇ ରଚିତ ନାଟକ, ଯାହା ଗୋପାଳ ଛୋଟରାୟଙ୍କ ସହିତ ଓଡ଼ିଆ ନାଟକକୁ

ଏକ ଭିନ୍ନ ମର୍ଯ୍ୟାଦା ଦେଇଥିଲା । ତାଙ୍କର ଭରସା, ଶଙ୍ଖା ସିନ୍ଦୂର, ନଷ୍ଟ ଉର୍ବଶୀ, ପଥିକ ବନ୍ଧୁ, ସାଧନା ପ୍ରଭୃତି ନାଟକରେ ସାମାଜିକ ସମସ୍ୟାର ଚମତ୍କାର ଚିତ୍ରଣ ଦୃଷ୍ଟିଗୋଚର ହୁଏ । ଓଡ଼ିଶାର ଦାରିଦ୍ର୍ୟ, ଶିକ୍ଷା ପାଇଁ ଆଗ୍ରହ, ନାରୀ ପ୍ରତି ସ୍ୱତନ୍ତ୍ର ସମ୍ମାନ, ନାରୀର ଜୀବନ ସଂଗ୍ରାମ, ଗ୍ରାମ୍ୟ ରାଜନୀତି ଓ ତା'ର ସହରୀ ସଂସ୍କରଣ, ଓଡ଼ିଆମାନଙ୍କର ପରସ୍ପର ପ୍ରତି ଅସହିଷ୍ଣୁତା ଇତ୍ୟାଦିକୁ ସେ ଖୁବ୍ କଳାତ୍ମକ ଭାବରେ ଚିତ୍ରଣ କରିଛନ୍ତି । ଚୀନ୍ ଭାରତ ଯୁଦ୍ଧ, ଶିଳ୍ପାୟନର ପ୍ରଭାବ ପ୍ରଭୃତିର ସିଧାସଳଖ ପ୍ରଭାବ ଏଥିରେ ସ୍ପଷ୍ଟ ।

ବେତାର ନାଟକ, ଧାରାବାହିକ ଓ ରୂପକ ରଚନାରେ ସେ ଅଦ୍ୱିତୀୟ । ସାଧାରଣ ଜନତାଙ୍କର ଛୋଟ ବଡ଼ ସମସ୍ୟାର ଚିତ୍ର ତଥା ସେଥିପାଇଁ ସମ୍ଭାବ୍ୟ ସମାଧାନର ସୂତ୍ର ହିଁ ତାଙ୍କୁ ପରିମାଣାତ୍ମକ ଭାବରେ ଅଧିକ ନାଟକ ଲେଖିବାର ସୁଯୋଗ ଦେଇଛି, ଯାହାର ଗୁଣାତ୍ମକ ଆବେଦନ କ୍ଷୁର୍ଣ୍ଣ ହୋଇ ନାହିଁ । ମୁଖ୍ୟତଃ କଟକ ସହରର ନିମ୍ନ ମଧ୍ୟବିତ୍ତ ଚାକିରିଜୀବୀ ମଣିଷମାନଙ୍କର ସମସ୍ୟା, ଯାହାକୁ ସେ ଅଙ୍ଗେ ଲିଭାଇଥିଲେ, ତାଙ୍କ ନାଟକ ତଥା ଧାରାବାହିକରେ ଜୀବନ୍ତ ଭାବରେ ପରିବେଷିତ ହୋଇଛି । ନାରୀ ଚରିତ୍ରଭିତ୍ତିକ ନାଟକଗୁଡ଼ିକ ତାଙ୍କର ସମ୍ବେଦନସିକ୍ତ ହୋଇ ରସୋତ୍ତୀର୍ଣ୍ଣ ହୋଇଛି । ଏହି ପର୍ଯ୍ୟାୟରେ ତାଙ୍କର ହାସ୍ୟରସ ସମ୍ବଳିତ ନାଟକକୁ ମଧ୍ୟ ଆଲୋଚନାର ପରିସରକୁ ଆସନ୍ତି । ତାଙ୍କ ଐତିହାସିକ ନାଟକଗୁଡ଼ିକ ସଂଖ୍ୟାରେ ଅଧିକ ନ ହେଲେ ମଧ୍ୟ ଭାଷା ଓ ପରିବେଷଣ କୌଶଳ ନେଇ ସ୍ୱତନ୍ତ୍ର । ନିଷ୍ଠୁର ଇତିହାସ ଭିତରେ ଛଟପଟ ହେଉଥିବା ମଣିଷର ବିଡ଼ମ୍ବିତ ଭାଗ୍ୟ ପ୍ରତି ନାଟ୍ୟକାର ସହାନୁଭୂତିଶୀଳ ହୋଇଛନ୍ତି । ସେ ମଣି ବେଗମ୍, ଜାହାନ୍ନାରା ବା ନନ୍ଦିକା ହୁଅନ୍ତୁ, ସେମାନଙ୍କ ପାଇଁ ଗୋପାଳ ଛୋଟରାୟଙ୍କ ଲେଖନୀ ତତ୍ପର ହୋଇଉଠିଛି । ରୂପକ ରଚନା ପାଇଁ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ସମ୍ପର୍କରେ ସବିଶେଷ ଧାରଣା ଥିବା ଆବଶ୍ୟକ । ଛୋଟରାୟ ମହାଶୟ ସଂଖ୍ୟାରେ ଅଧିକ ରୂପକ ଲେଖିନାହାନ୍ତି ମାତ୍ର ସାଧାରଣ ଘଟଣା / ବିଷୟକୁ ଅସାଧାରଣ ଭାବରେ ପରିବେଷଣ କରିବାର ଦକ୍ଷତା ରଖିଛନ୍ତି । ଉଦାହରଣ ସ୍ୱରୂପ 'ତାଳଗୁଡ଼' ସମ୍ପର୍କିତ ତାଙ୍କର ରୂପକ 'ବିଷରୁ ଅମୃତ' ନାମଧାରଣ କରି ଲୋକପ୍ରିୟ ହୋଇଥିଲା ଓ ସେଥିପାଇଁ ତାଙ୍କୁ ସ୍ୱତନ୍ତ୍ର ମର୍ଯ୍ୟାଦା ମିଳିଥିଲା ।

ବିଶିଷ୍ଟ ଔପନ୍ୟାସିକ ଓ ଗାଳ୍ପିକମାନଙ୍କର ଚିରାୟତ ସୃଷ୍ଟି ସବୁର ନାଟ୍ୟରୂପ ପ୍ରଦାନ ତାଙ୍କର ସୃଜନଶୀଳତାର ଅନ୍ୟ ଏକ ଦିଗନ୍ତ । ସର୍ବକାଳୀନ ସୃଷ୍ଟିମାନଙ୍କର ବକ୍ତବ୍ୟକୁ ଅକ୍ଷୁର୍ଣ୍ଣ ରଖି କାଣ୍ଟଛାଣ୍ଟ କରିବା ସେହି ଭଳି ପ୍ରତିଭାର ଅପେକ୍ଷା ରଖେ । ଅକ୍ଷର ଚିହ୍ନି ନ ଥିବା ବା ଏତାଦୃଶ ବିପୁଳକାୟ ଉପନ୍ୟାସ ପାଠ କରିବାର ସୁଯୋଗ ପାଇ ନ ଥିବା ଓଡ଼ିଶାର ସାଧାରଣ ଜନତା ଉପନ୍ୟାସର ନାଟ୍ୟରୂପର ଅଭିନୟ ଦେଖି ବା ଶୁଣି ଆନନ୍ଦିତ ହୁଅନ୍ତି । ସେହି ଚରିତ୍ରମାନଙ୍କ ସହିତ ପରିଚିତ ହୁଅନ୍ତି । ନିର୍ଦ୍ଦିଷ୍ଟ ସମୟର ସ୍ୱର ବହନ କରିଥିବା ଏହି ସୃଷ୍ଟିଗୁଡ଼ିକ ନାଟ୍ୟରୂପ ପ୍ରଦାନ କାଳରେ ଆହୁରି ଘଷିମାଜି ପରିଷ୍କାର ହୋଇଯାଆନ୍ତି । ନାଟକର କ୍ଷୁଦ୍ର ଅବୟବରେ ସେମାନଙ୍କର ବକ୍ତବ୍ୟ ମଧ୍ୟ ଶାଣିତ ହୁଏ । 'ଝଞ୍ଜା', 'ଅମଡ଼ାବାଟ', 'ବଧୂ ନିରୂପମା' ଭଳି ଉପନ୍ୟାସର ନାଟ୍ୟକାର ତାଙ୍କ ପ୍ରତିଭାର ଅନ୍ୟ ଏକ ଦିଗନ୍ତ ଉନ୍ମୋଚନ କରିଥାଏ ।

ଗଳ୍ପ ରଚନାରେ ପ୍ରବୀଣ ଗୋପାଳ ଛୋଟରାୟ କୃତିତ୍ୱର ପରିଚୟ ଦେଇଛନ୍ତି । ପରିଣତ ବୟସରେ ଏହି କାର୍ଯ୍ୟରେ ହାତଦେଇ ସେ ସମକାଳୀନ ସମ୍ବାଦମାନଙ୍କୁ ସର୍ବକାଳୀନ ସାହିତ୍ୟକୃତିରେ ପରିଣତ କରିପାରିଛନ୍ତି । ଫୁଟବଲ ଖେଳଠାରୁ ଇନ୍ଦିରା ଗାନ୍ଧିଙ୍କ ହତ୍ୟା ପୁଣି ଓଡ଼ିଶାରେ କ୍ରିକେଟ୍ ଖେଳ ଟେଲିଭିଜନ୍‌ର ଲୋକପ୍ରିୟତା ବଢ଼ାଇବା ବେଳେ ବ୍ୟକ୍ତି ଜୀବନରେ ତା'ର ପ୍ରଭାବ ସର୍ବୋପରି ପାରିବାରିକ ଜୀବନର ଘାତକ ଭାବରେ ସନ୍ଦେହ ଓ ଅସହିଷ୍ଣୁତାକୁ ସେ ନିଜର ଗଳ୍ପରେ ପ୍ରକାଶ କରିଛନ୍ତି । ଏଗୁଡ଼ିକରେ ନାଟକୀୟତା ଅଧିକ । ସର୍ବଦା ପାରିବାରିକ ଜୀବନର ଭୁଲ୍ ବୁଝାମଣା ଓ ପରିଣତିରେ ସମାଧାନର ମନୋଭାବ ତାଙ୍କ ଲେଖନୀକୁ ରୁଚିଶୀଳ ତଥା ସଂସ୍କୃତି ସମ୍ପନ୍ନ କରିରଖିଛି । ତେଣୁ ନିଜର କେତେକ ଲୋକପ୍ରିୟ ନାଟକକୁ ସେ ଗଳ୍ପରେ ରୂପାନ୍ତରିତ ମଧ୍ୟ କରିଛନ୍ତି ।

ଆତ୍ମଜୀବନୀ 'ପଥିକ'ର ଲେଖକ ଭାବରେ ଛୋଟରାୟ ମହାଶୟ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛନ୍ତି । ତାଙ୍କର ଆତ୍ମଜୀବନୀରେ ସମକାଳୀନ ରାଜନୀତି, ସମାଜ ବ୍ୟବସ୍ଥା ତଥା ସାଂସ୍କୃତିକ ବିଧି ବ୍ୟବସ୍ଥାର ରୂପ ଦେଖିବାକୁ ମିଳେ । ଏଥି ସହିତ ସେ ଖୁବ୍ ନମ୍ର ଭାବରେ ନିଜର ଦାରିଦ୍ର୍ୟ, ନିଜର ପ୍ରଚେଷ୍ଟା ଓ ସେଥିପାଇଁ ଆବଶ୍ୟକ ପ୍ରେରଣାଗୁଡ଼ିକର ତଥ୍ୟ ପ୍ରଦାନ କରିଛନ୍ତି । ସଚେତନ ଭାବେ ସନ୍ତର୍ପଣତା ତଥା ସମ୍ବେଦନଶୀଳତା ନେଇ ରଚିତ ଏହି ଆତ୍ମଜୀବନୀରୁ ତତ୍କାଳୀନ ମଞ୍ଚ ପରିବେଶର ସ୍ୱରୂପ ମଧ୍ୟ ଉଦ୍‌ଘାଟିତ ହୋଇପାରେ । ଜଣେ ସଚେତନ ଓ ଦୃଢ଼ମନା ବ୍ୟକ୍ତି ହିଁ ଆତ୍ମଜୀବନୀ ଲେଖିବାର ସାହସ ସଞ୍ଚୟ କରିପାରେ, ଯାହା ନାଟ୍ୟକାର ଛୋଟରାୟ ପ୍ରମାଣ କରିଛନ୍ତି । ଶ୍ରୁତିମଧୁର ସଂଳାପ ସ୍ରଷ୍ଟା ଗୋପାଳ ଛୋଟରାୟ ଆକାଶବାଣୀକୁ ହିଁ ତାଙ୍କର ନାଟକ ପରିବେଷଣର ମାଧ୍ୟମ ବୋଲି ଗ୍ରହଣ କରି ନେଇଛନ୍ତି । ତାଙ୍କର ମଞ୍ଚସଫଳ ନାଟକଗୁଡ଼ିକ ମଧ୍ୟ ଆକାଶବାଣୀରୁ ପ୍ରଚାରିତ ହୋଇଛି । ତେଣୁ ନାଟକର ଦୃଶ୍ୟମାନତା ନଷ୍ଟ ହୋଇଛି । ସଂଳାପ ହିଁ ପାଲଟିଛି ବକ୍ତବ୍ୟ ପ୍ରକାଶର ମାଧ୍ୟମ ଓ କଣ୍ଠସ୍ୱର ହିଁ ହୋଇଛି ଅଭିନେତା ଅଭିନେତ୍ରୀଙ୍କର ପରିଚୟ । ତେଣୁ ସଂଳାପ ଉପରେ ସେ ସବୁଠାରୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ହାସ୍ୟରସାତ୍ମକ ସଂଳାପ ସହିତ କରୁଣ ରସାତ୍ମକ ସଂଳାପ, ବ୍ୟଙ୍ଗ ସହିତ ରୋମାଣ୍ଟିକ୍ ସଂଳାପ ସର୍ବୋପରି ଗୀତିମୟ ସଂଳାପ ସୃଷ୍ଟି କରିବାରେ ତାଙ୍କର କୃତିତ୍ୱ ଅବିସମ୍ବାଦିତ । ଦୈନନ୍ଦିନ ବ୍ୟବହୃତ ଭାଷା ମାଧ୍ୟମରେ ସେ ଖୁବ୍ ଜଟିଳ ତଥା ଗୁରୁତ୍ୱପୂର୍ଣ୍ଣ ବିଷୟ ଉପସ୍ଥାପନ କରିପାରନ୍ତି ।

ଗୋପାଳ ଛୋଟରାୟ ଓଡ଼ିଆ ଚଳଚ୍ଚିତ୍ରର ସଂଳାପ ଓ ଚିତ୍ରନାଟ୍ୟ ରଚନା କରିଛନ୍ତି । ତାଙ୍କର ଚିତ୍ରନାଟ୍ୟଗୁଡ଼ିକରେ ଓଡ଼ିଆ ଗ୍ରାମ୍ୟଜୀବନର ବାସ୍ନା ଅନୁଭବ କରିହୁଏ । ସେହିପରି, ସେ ଏକାଧିକ କ୍ୟାସେଟ୍ କରି ସଙ୍ଗୀତର ବ୍ୟବସାୟୀକରଣ କରିଛନ୍ତି ସତ ମାତ୍ର ସଙ୍ଗୀତର ଶ୍ରୁତିମଧୁରତା ଓ ଚରିତ୍ର ଉପଯୋଗୀ ସଙ୍ଗୀତ ସହିତ କେଉଁଠି ବୁଝାମଣା କରି ନାହାନ୍ତି । ସେ ନିଜ କଣ୍ଠ ସ୍ୱରରେ ବି.ବି.ସି ପାଇଁ (Reading) କେତେକ ଉତ୍କୃଷ୍ଟ ଉଦ୍ଧୃତାଂଶ ରେକର୍ଡିଂ ମଧ୍ୟ କରିଛନ୍ତି । ସେ ଶିଶୁନାଟକ ଲେଖିଛନ୍ତି । ତେଣୁ ଏତିକି କହିଲେ ଯଥେଷ୍ଟ ହେବ ଯେ ନାଟ୍ୟସ୍ରଷ୍ଟା ଗୋପାଳ

ଛୋଟରାୟ ଏକକ ଉଦ୍ୟମରେ ଏକାଧିକ ଶୈଳୀର ନାଟକରେ ପରୀକ୍ଷା କରିଛନ୍ତି ଅର୍ଥାତ୍ କେବେ ସେ ଗୀତିନାଟ୍ୟ ଲେଖି ସମକାଳୀନ ଅନ୍ୟ ସାହିତ୍ୟସ୍ରଷ୍ଟାଙ୍କର ନାସିକ କୁଞ୍ଚନର କାରଣ ହୋଇଛନ୍ତି ତ କେବେ ଉପନ୍ୟାସର ନାଟ୍ୟରୂପ ଦେବା ତାଙ୍କ ପାଇଁ ଉପଯୁକ୍ତ ନୁହେଁ ବୋଲି ପରିହାସ ମଧ୍ୟ ଶୁଣିଛନ୍ତି। କ୍ୟାସେଟ୍ କରି ସଙ୍ଗୀତର ବ୍ୟବସାୟୀକରଣ ପାଇଁ ସେ ପ୍ରଥମେ ଉଦ୍ୟମ କରିଛନ୍ତି। 'ପେଟେଣ୍ଟ ମେଡିସିନ୍' କ୍ୟାସେଟ୍ ହେବା ପରେ ହିଁ ଓଡ଼ିଶାର ଅଗମ୍ୟ ଅଞ୍ଚଳମାନଙ୍କରେ ଲୋକପ୍ରିୟ ହୋଇପାରିଛି। ତେଣୁ ଅନେକ କ୍ଷେତ୍ରରେ ନାଟ୍ୟକାର ଗୋପାଳ ଛୋଟରାୟ ନୂତନ ଧାରା ନିର୍ମାଣ କରିଛନ୍ତି। 'ପୂରାପୂରି ପାରିବାରିକ' ଓ 'ଶ୍ରୀହରିଙ୍କ ସଂସାର' ଭଳି ଲୋକପ୍ରିୟ ତଥା ଆବେଗପୂର୍ଣ୍ଣ କ୍ରମିକ କାହାଣୀ (Serials) ପାଇଁ ସେ ଖରାବର୍ଷାରେ କଟକର ଗଳି କନ୍ଦିରେ ବୁଲୁଥିବା ଅନେକ ଦେଖିଛନ୍ତି।

ଗୋପାଳ ଛୋଟରାୟ ପାଠ୍ୟପୁସ୍ତକ ଲେଖିନାହାନ୍ତି ମାତ୍ର ତାଙ୍କର ଅନେକ ନାଟକ ପାଠ୍ୟ ଭାବରେ ବିଦ୍ୟାଳୟଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସ୍ୱୀକୃତି ପାଇଛି। ଏହା ଜଣେ ପ୍ରକୃତ ସାହିତ୍ୟ ସାଧକ ପାଇଁ ଗୌରବର ବିଷୟ।

କିନ୍ତୁ ଦୁଃଖର କଥା ଯେ ତାଙ୍କର କୌଣସି ପୁସ୍ତକ ବର୍ତ୍ତମାନ ବଜାରରେ ସହଜଲବ୍ଧ ନୁହେଁ। ତେଣୁ ତାଙ୍କ ସମ୍ପର୍କରେ ଯେତିକି ଆଲୋଚନା ହେବା ଦରକାର ତାହା ସମ୍ଭବ ହୋଇପାରୁ ନାହିଁ। ଆଜୀବନ ନାଟକ ରଚନାକୁ ନିଜର ଜୀବନ ଓ ସ୍ୱାଭିମାନ ମଣି ସାଧନା ଜାରି ରଖିଥିବା ବ୍ୟକ୍ତିଟି ମୃତ୍ୟୁ ପରେ ତା'ର ସାଧନା ସ୍ୱୀକୃତି ପାଇପାରୁନାହିଁ। ଏସବୁ ସତ୍ତ୍ୱେ ଗୋପାଳ ଛୋଟରାୟ ହିଁ ଆଧୁନିକ ଓଡ଼ିଆ ନାଟ୍ୟଜଗତର କିମ୍ବଦନ୍ତୀ ପୁରୁଷ ଯିଏ ଦମ୍ଭରେ କହିପାରନ୍ତି ''ମୁଁ ଯାହା ଲେଖିଛି ସମାଜକୁ ଦିଗ୍‌ଦର୍ଶନ ଦେବାକୁ ଲେଖିଛି। ତହିଁରେ ଅଶ୍ଳୀଳତା ନାହିଁ। ଗୋପାଳ ଛୋଟରାୟ ଓଡ଼ିଆ ନାଟକ ଲେଖକ ଭାବରେ ସହର ଗ୍ରାମ ବୁଢ଼ା ପିଲା ସମସ୍ତଙ୍କ ପାଖରେ ଚିରଦିନ ବଞ୍ଚିରହିବେ। ତାଙ୍କର ସମକାଳୀନ ଓ ପର ପିଢ଼ି ତାଙ୍କ ସାଧନା ଦ୍ୱାରା ବହୁ ଭାବରେ ପରିପୁଷ୍ଟ ହେଉଥିବେ।

## ପରିଶିଷ୍ଟ:

# ଗୋପାଳ ଛୋଟରାୟଙ୍କ ସହିତ ସାକ୍ଷାତକାର

### ସମୟ: ଅଗଷ୍ଟ, ୧୯୯୧

ପ୍ର- ଆପଣ ରେଡିଓ ଷ୍ଟେସନ୍‌ରେ ଚାକିରି କରିବା ପରେ ରେଡିଓ ନାଟକ ଲେଖିବାରେ ମନ ଦେଲେ ନାଁ ତା' ପୂର୍ବରୁ ଆପଣ ରେଡିଓ ପାଇଁ ନାଟକ ଲେଖିଥିଲେ ?

ଉ- ୧୯୫୬ ମସିହା ଡିସେମ୍ବର ମାସ ୨୧ ତାରିଖରେ ସ୍ଥାୟୀ ନାଟ୍ୟକାର ଭାବେ ବେତାରରେ ନିଯୁକ୍ତି ପାଇଲି ସତ ମାତ୍ର ଏହା ପୂର୍ବରୁ ବେତାର ପାଇଁ ବହୁ ସଂଖ୍ୟକ ନାଟକ ଲେଖିଛି ଏବଂ ସେଗୁଡ଼ିକ ପ୍ରଚାରିତ ମଧ୍ୟ ହୋଇଛି ।

ପ୍ର- ସଂଖ୍ୟା ଦୃଷ୍ଟିରୁ ଆପଣ ବୋଧହୁଏ ଓଡ଼ିଶାରେ ସର୍ବାଧିକ ବେତାର ନାଟକ ଲେଖିଛନ୍ତି । ଏହାର କାରଣ କ'ଣ ? ଏଥିପାଇଁ କିଏ ଆପଣଙ୍କୁ ପ୍ରେରଣା ଦେଲା ?

ଉ- ପ୍ରଥମେ ମଞ୍ଚ ପାଇଁ ନାଟକ ଲେଖୁଥିଲି । ବେତାରରୁ ନାଟକଟିଏ ଶୁଣିବା ପରେ ବେତାର ପାଇଁ ନାଟକ ଲେଖିବାକୁ ଆଗ୍ରହ ପ୍ରକାଶ କଲି ଏବଂ ମୋ' ଲିଖିତ ବେତାର ନାଟକ ପ୍ରଶଂସିତ ମଧ୍ୟ ହେଲା । ସେତେବେଳେ ଖୁବ୍ କମ୍ ବେତାର ନାଟ୍ୟକାର ଥିଲେ । ବେତାର କର୍ତ୍ତୃପକ୍ଷ ମୋର ଆଗ୍ରହ ଦେଖି ମୋତେ ଦୁଇଖଣ୍ଡ ବହି ପଢ଼ିବାକୁ ଦେଇଥିଲେ । (୧) B.B.C. Radio Plays (୨) How to write a Radio Play. ସେମାନେ କହିଲେ, ''ନିରବଚ୍ଛିନ୍ନ ଭାବେ ନାଟକ ଲେଖନ୍ତୁ । ଆମର ନାଟକ ଦରକାର ।'' ସଙ୍ଗେ ସଙ୍ଗେ ମୁଁ ବିଭିନ୍ନ ଭାଷାରୁ ଯଥା ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଭାଷାରୁ କେତେକ ନାଟକ ଅନୁବାଦ କରି ବେତାର କର୍ତ୍ତୃପକ୍ଷଙ୍କୁ ଦେଇଥିଲି । ପରେ ନିଜସ୍ୱ ରଚନାରେ ନାଟକ, ଏକାଙ୍କିକା, ଧାରାବାହିକ, ରୂପକ, ରୂପାନ୍ତର ଇତ୍ୟାଦି ଲେଖିବା ଫଳରେ ମୋର ନାଟକର ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ତା'ପରେ ମୁଁ ଆଉ ପଛକୁ ଫେରି ଚାହିଁନି ।

ପ୍ର- କୁହାଯାଏ ଯେ ସାହିତ୍ୟିକର ବ୍ୟକ୍ତିଗତ ଜୀବନ ତା'ର ସାହିତ୍ୟ ସାଧନାକୁ ପରିପୁଷ୍ଟ କରେ । ବେଳେବେଳେ ଆଚ୍ଛନ୍ନ ମଧ୍ୟ କରେ, ଏଭଳି କିଛି ଅନୁଭୂତି ଓ ଅଭିଜ୍ଞତା କୁହନ୍ତୁ ।

ଉ- ବହୁ ଅନୁଭୂତି ରହିଛି । ସେଥିରୁ ଗୋଟିଏ ଦୁଇଟି ସଂକ୍ଷେପରେ କହୁଛି ।

କ. ୧୯୪୧ ମସିହାର ଏକ ସନ୍ଧ୍ୟା । ନାଜିବାଦ ଓ ଫାସିବାଦ ବିରୁଦ୍ଧରେ ଏକାଙ୍କିକା-ନାଟକ ପ୍ରତିଯୋଗିତା ପାଇଁ ବିଜ୍ଞାପନ ପ୍ରଚାର ହେଉଥାଏ । ଏହାର ପୁରସ୍କାର ପରିମାଣ ଟ୩୫.୦୦ ଥିଲା, ଯାହାକି ମୋତେ ନାଟକ ଲେଖିବାକୁ ଉତ୍ସାହିତ କରିଥିଲା । ପ୍ରଚାରପତ୍ରରେ ଥିବା ନିୟମ ଅନୁସାରେ ମୁଁ 'ସାଗରକନ୍ୟା' ନାମକ ନାଟକ ଲେଖି ତା'ର ପାଣ୍ଡୁଲିପିଟି ନେଇ ମୁକୁର ସଂପାଦକ ବ୍ରଜସୁନ୍ଦର ଦାସଙ୍କୁ ଦେଖାକରିବାକୁ ଗଲି । ତାଙ୍କ ନିର୍ଦ୍ଦେଶରେ ତାଙ୍କୁ ସେଠାରେ ନାଟକଟି ପଢ଼ି ଶୁଣାଇଲି । ଶୁଣି ସାରିବାପରେ ସେ ଗଦ୍‌ଗଦ୍ ହୋଇ କହିଲେ- ''ତୁ ଲେଖିଯା,

ଲେଖିଯା... ଶୁଣ- ତୁ କେବେ ବି ଲେଖା ବନ୍ଦ କରିବୁନି।'' ଅଳ୍ପଦିନ ଭିତରେ ବହି ଛପା ହେଲା। ଏହାର ଇଂରାଜୀ ଅନୁବାଦ ହୋଇ ଦିଲ୍ଲୀ ପଠାଗଲା ଏବଂ ଅନ୍ନପୂର୍ଣ୍ଣା ଏ'ଗ୍ରୁପ୍ ଏହାକୁ ମଞ୍ଚସ୍ଥ ମଧ୍ୟ କଲେ।

ଖ. ଅନ୍ୟ ଏକ ଘଟଣା ହେଉଛି, ମୋର ପ୍ରଥମ ମଞ୍ଚନାଟକ 'ଫେରିଆ' ଆଶାତୀତ ଭାବରେ ସଫଳତା ଲାଭ କରିଥିଲା। ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଅଭିନୟ ଦେଖିସାରି ତାଙ୍କ ବାସଭବନକୁ ମୋତେ ଡକାଇପଠାଇଲେ ଏବଂ ମୋ' ସହିତ ନାଟକ ସମ୍ପର୍କରେ ପ୍ରାୟ ଏକ ଘଣ୍ଟା ଧରି ଆଲୋଚନା କଲେ। ଏହା ମୋ'ପାଇଁ ଖୁବ୍ ପ୍ରେରଣାପ୍ରଦ ଥିଲା। ଏହା ପରେ ମୁଁ ମୋର ନିଷ୍ଠା ବା Sense of dedication ନେଇ ନାଟକ ରଚନା କ୍ଷେତ୍ରରେ ଅଗ୍ରସର ହେଲି।

ଆଉ ବ୍ୟକ୍ତିଗତ ଜୀବନର ଅନୁଭୂତି କହିଲେ କଟକୀ ଜୀବନର ଅନେକ ସାନ ବଡ଼ ଅନୁଭୂତି ମୋର ଧାରାବାହିକଗୁଡ଼ିକରେ ପ୍ରତିଫଳିତ, 'ପୂରାପୂରି ପାରିବାରିକ' ତ ପ୍ରାୟ ମୋ' ପରିବାରର ଘଟଣା ଉପରେ ପର୍ଯ୍ୟବସିତ।

ପ୍ର- ଧାରାବାହିକଗୁଡ଼ିକ ଦୀର୍ଘ ଦିନ ଧରି ଆକାଶବାଣୀରୁ ପ୍ରଚାରିତ ହେବା ସମୟରେ କେହି ସମାଲୋଚନା କରିଛନ୍ତି କି ?

ଉ - ଆଦୌ ସମାଲୋଚନା ହୋଇନାହିଁ ବରଂ ପୁନଃପ୍ରସାରଣ ପାଇଁ ଅନୁରୋଧ ହୋଇଛି। ବିଭିନ୍ନ ପରିବାର ଉପରେ ପର୍ଯ୍ୟବସିତ ଧାରାବାହିକଗୁଡ଼ିକର ଶେଷ ହୋଇଛି ସେମାନଙ୍କର ବଦଳି ଅର୍ଡର ଆସିବା ପରେ। ଶ୍ରୋତାମାନେ ସେହି ବଦଳି ଅର୍ଡର କ୍ୟାନ୍‌ସେଲ୍ କରିଦେବାକୁ ମଧ୍ୟ ଚିଠି ଲେଖିଛନ୍ତି।

ପ୍ର- ସାଧାରଣତଃ 'ରୂପକ'ର ଶ୍ରୋତା ସଂଖ୍ୟା କମ୍। ରୂପକ ପ୍ରସ୍ତୁତ ବେଳେ ଆପଣଙ୍କର କେବେ ମନେ ହୋଇଛି କି ଆପଣ ଯାହା କହିବାକୁ ଚାହିଁଥିଲେ କହିପାରି ନାହାନ୍ତି ?

ଉ- ଜଣେ ବେତାର ନାଟ୍ୟକାରର ନାଟକ ରଚନା କରିବାର କ୍ଷମତା ସୀମିତ। କେବଳ ନାଟକ, ଗୀତିନାଟକ ଓ ଧାରାବାହିକ ଆଦି ଏତେ ପରିମାଣର ଲେଖିବାକୁ ପଡୁଥିଲା ଯେ ରୂପକ ଲେଖିବା ପାଇଁ ମୋର ସମୟ ପ୍ରାୟ ରହୁ ନ ଥିଲା। ସେଥିପାଇଁ କେତୋଟି ଅତି ବିଶେଷ ବା ଉଲ୍ଲେଖନୀୟ ଘଟଣାକୁ ନେଇ ରୂପକ ରଚନା ବ୍ୟତୀତ ଅନ୍ୟ ସାଧାରଣ ରୂପକ ମୁଁ ଲେଖିବା ପାଇଁ ଅବସର ପାଇନାହିଁ।

ପ୍ର- ଉପନ୍ୟାସର ନାଟ୍ୟରୂପ ପ୍ରସ୍ତୁତି ସମ୍ପର୍କରେ ଆପଣଙ୍କର ଅଭିଜ୍ଞତା କୁହନ୍ତୁ। ଔପନ୍ୟାସିକମାନେ କିଭଳି ଆପଣଙ୍କ ନାଟ୍ୟରୂପକୁ ଗ୍ରହଣ କରିଛନ୍ତି ?

ଉ- ମୋର ସମସ୍ତ ନାଟ୍ୟରୂପ ଶ୍ରୋତା, ଦର୍ଶକ ତଥା ସମାଲୋଚକମାନଙ୍କ ଦ୍ୱାରା ଉଚ୍ଚପ୍ରଶଂସିତ ହୋଇଛି। ଅଧିକା କିଛି କହିବାର ପ୍ରୟୋଜନ ନାହିଁ। ଉପନ୍ୟାସ ଗଳ୍ପର ନାଟ୍ୟରୂପ ଦେବାବେଳେ ଅଭିଜ୍ଞତା ସମ୍ପର୍କରେ ଏତିକି କହିବି ଯେ, ଉପନ୍ୟାସର ବିଷୟବସ୍ତୁ ଓ ତା'ର ନାଟ୍ୟରୂପ ଉଭୟ ସମାନ୍ତରାଳ ଗତିରେ ଥିବେ। ଔପନ୍ୟାସିକ ତାଙ୍କ ଉପନ୍ୟାସରେ ଯାହା କହିବାକୁ ଚାହିଁଛନ୍ତି,

ଜଣେ ନାଟ୍ୟରୂପ ପ୍ରଦାନକାରୀ ସେହି ସୀମା ମଧ୍ୟରେ ଆବଦ୍ଧ ରହି ନାଟ୍ୟରୂପର କୃତିତ୍ୱ ପ୍ରଦାନ କରିବେ, ତାହାକୁ ଅତିକ୍ରମ କରିବା ଉଚିତ ନୁହେଁ।

ପ୍ର- ଉପନ୍ୟାସର ନାଟ୍ୟରୂପ ଓ ଚଳଚ୍ଚିତ୍ର ରୂପ ମଧ୍ୟରେ କି ପାର୍ଥକ୍ୟ ଆପଣ ଅନୁଭବ କରୁଛନ୍ତି ?

ଉ- ଉପନ୍ୟାସର ନାଟ୍ୟରୂପ ମଞ୍ଚ ବା ବେତାର ପାଇଁ ଉଦ୍ଦିଷ୍ଟ। ପୁଣି ଚଳଚ୍ଚିତ୍ର ପାଇଁ ଚିତ୍ରନାଟ୍ୟ ଲୋଡ଼ା। Technique ଦୃଷ୍ଟିରୁ ଏହି ତିନୋଟି Media ପରସ୍ପରଠାରୁ ଭିନ୍ନ। ସେହି ଦୃଷ୍ଟିରୁ ପାର୍ଥକ୍ୟ ରହିବ ହିଁ ରହିବ।

ପ୍ର- ଐତିହାସିକ ବେତାର ନାଟକ ଆପଣ ଅଧିକ ଲେଖିନାହାନ୍ତି କାହିଁକି ? ଏହାର ଲୋକପ୍ରିୟତା ସମ୍ପର୍କରେ ଆପଣଙ୍କର ଧାରଣା କ'ଣ ?

ଉ- ଓଡ଼ିଶାରେ ଐତିହାସିକ ଘଟଣା ଖୁବ୍ କମ୍ (ଯାହାକୁ ନେଇ ନାଟକ କରାଯାଇପାରେ) ବୋଲି ମୋର ଧାରଣା। ସାଧାରଣ ଶ୍ରୋତାମାନେ ଯେକୌଣସି ପୌରାଣିକ କଥାବସ୍ତୁ ବା ସାମ୍ପ୍ରତିକ ସାମାଜିକ ଘଟଣାବଳୀ ସହିତ ସହଜରେ ପରିଚିତ ହୋଇଯାଆନ୍ତି। ଐତିହାସିକ ନାଟକ ପାଇଁ ଅନୁରୂପ ଆଗ୍ରହ ନ ଥାଏ। ଓଡ଼ିଶାରେ ଅଧିକାଂଶ ଐତିହାସିକ ନାଟକ ବୋଧେ ସେଇଥିପାଇଁ କିମ୍ବଦନ୍ତୀ ଆଶ୍ରିତ। ଲୋକପ୍ରିୟତା ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଲୋକପ୍ରିୟତାର ଅର୍ଥ ଶସ୍ତା ବା ଅରୁଚିକର ନୁହେଁ। ରୁଚିଶୀଳ, ସମ୍ଭ୍ରାନ୍ତ ତଥା ସମାଜର ପ୍ରତ୍ୟେକ ଶ୍ରେଣୀର ଦର୍ଶକ ବା ଶ୍ରୋତାଙ୍କୁ ଆକୃଷ୍ଟ କଲାଭଳି ନାଟକକୁ ଲୋକପ୍ରିୟ କୁହାଯାଏ।

ପ୍ର- ଗୀତିନାଟ୍ୟ ସାମାଜିକ କଥାବସ୍ତୁକୁ ନେଇ ରଚିତ ହେଲେ ତା'ର ଆବେଦନ ହ୍ରାସ ପାଏ ବୋଲି କୁହାଯାଏ। 'ପେଟେଣ୍ଟ ମେଡିସିନ୍' ଏ ଦୃଷ୍ଟିରୁ ବ୍ୟତିକ୍ରମ କହିଁକି ?

ଉ- ଏହାର ଶ୍ରେୟ ମୂଳଗଳ୍ପ ଲେଖକ ଫକୀରମୋହନ ସେନାପତିଙ୍କର। ତା'ପରେ ଏହା ଏକ ପାରମ୍ପରିକ ଗୀତିନାଟ୍ୟ ନୁହେଁ। ଏଥିରେ ପାରମ୍ପରିକ ଗୀତିନାଟ୍ୟର ଶୈଳୀ, ଭାଷା ଓ ସ୍ୱର ସଂଯୋଜନା ପ୍ରାୟ କରାଯାଇ ନାହିଁ। ମୋ' ଦୃଷ୍ଟିରେ ଏହା ଏକ Musical Play. ଏହାର ଆବେଦନ ସ୍ୱତନ୍ତ୍ର।

ପ୍ର- ଆପଣ ଗୋଟିଏ ଗୋଟିଏ ଗଳ୍ପ / ନାଟକକୁ ବାରମ୍ବାର ବିଭିନ୍ନ ନାମରେ ଏପଟ ସେପଟ କରି ପ୍ରସାରିତ କରାଇଛନ୍ତି। ଏଥିରୁ ଆମେ କ'ଣ ଭାବିନେବୁ ଯେ ଆପଣଙ୍କର ରଚନା ସୀମିତ। ଶ୍ରୋତାମାନଙ୍କର ଆଗ୍ରହ ଅଧିକ ବା ପୂର୍ବବର୍ତ୍ତୀ ଅନ୍ୟ କୌଣସି ନାଟକର ପ୍ରଭାବରେ ଏଭଳି କରାଯାଇଛି ?

ଉ- ଶ୍ରୋତାର ଆଗ୍ରହ। ତା'ପରେ ଲେଖକର ସମ୍ପୂର୍ଣ୍ଣ ଅଧିକାର ଅଛି, ତାକୁ ସେ ବିଭିନ୍ନ ପ୍ରକାରରେ ପ୍ରଚାର କରାଇପାରେ। ମୋ' ମତରେ ଏହା ଲେଖକର କୃତିତ୍ୱ।

ପ୍ର- ନାରୀଭିତ୍ତିକ ନାଟକ ରଚନା ପାଇଁ ଆପଣଙ୍କର ପ୍ରେରଣା / ଅନୁଭୂତି / ଭାବନା ସମ୍ପର୍କରେ କିଛି କୁହନ୍ତୁ-

ଉ- 'ଲକ୍ଷ୍ମୀ' ନାଟକଟି ମୁଁ ମୋର ନିଜ ଆଗ୍ରହରେ ଲେଖିଛି। ମୋର ନାରୀଚରିତ୍ରମାନେ

ଭାରତୀୟ ପାରିବାରିକ ମୂଲ୍ୟବୋଧର ପ୍ରତିନିଧି । ପଙ୍କ ଭିତରୁ ପଙ୍କଜ ଭଳି ସେମାନେ ଜନ୍ମ ନେଇଛନ୍ତି । ଯେଉଁଠି ସେମାନେ ସଂସ୍କୃତି ପଥରୁ ବିଚ୍ୟୁତ ହୋଇଛନ୍ତି, ସେଠାରେ ମୁଁ ସେମାନଙ୍କୁ ଅନୁତାପ କରିବାକୁ ସୁଯୋଗ ଦେଇଛି । ଯେଉଁଠି ମୋର ନାୟିକା ପରିସ୍ଥିତିକୁ ଆୟତ୍ତ କରି ନ ପାରିଛି ମୁଁ ତା'ପାଇଁ ନିଷ୍ଠୁର ମଧ୍ୟ ହୋଇଛି । ମୋର ସବୁ ନାଟକ / ଏକାଙ୍କିକାରେ ଏକଥା ସ୍ପଷ୍ଟ । ସାଧାରଣ ନାରୀଟିଏ ମଧ୍ୟ ମୋ'ପାଇଁ ଅସାଧାରଣ ହୃଦୟବତ୍ତା ଥିବା ନାୟିକାରେ ରୂପାୟିତ ହୋଇଯାଇଛି ।

ପ୍ର- ସଂଳାପ ସୃଷ୍ଟିରେ ଆପଣଙ୍କର ଅପୂର୍ବ ଦକ୍ଷତା ରହିଛି । ଆପଣଙ୍କର ଦୀର୍ଘ ନାଟ୍ୟକାର ଜୀବନରେ କୌଣସି ସଂଳାପ ବାରମ୍ବାର ବ୍ୟବହୃତ ହୋଇଥିବା ଆପଣ ଲକ୍ଷ୍ୟ କରିଛନ୍ତି କି ?

ଉ- ହଜାର ହଜାର ପୃଷ୍ଠା ଲେଖିବା ପରେ ନାଟକ ଭିନ୍ନ ଥାଇ ଘଟଣା ବା Situation ସମାନ ହୋଇଥାଇପାରେ । କିନ୍ତୁ ମୁଁ ଖୁବ୍ ସଜାଗ ଭାବରେ ଗୋଟିଏ ଘଟଣା ବା Situation ସମାନ ଥିଲେ ମଧ୍ୟ ତାହାର ବର୍ଣ୍ଣନା ଓ ସଂଳାପ ଭିନ୍ନ କରିବାକୁ ଚେଷ୍ଟା କରିଛି ।

ପ୍ର- ଗୀତିନାଟକରେ ପାତ୍ରୋପଯୋଗୀ ସଙ୍ଗୀତ ରଚନା ପାଇଁ ଆପଣଙ୍କର ଅସୁବିଧା ହୋଇଛି କି ? ଏ କ୍ଷେତ୍ରରେ କିଏ ଆପଣଙ୍କୁ ସାହାଯ୍ୟ କରିଥିବେ ନିଶ୍ଚୟ ସେ ବିଷୟରେ କୁହନ୍ତୁ ।

ଉ- ପ୍ରଚଳିତ କେତେକ ଗୀତିନାଟ୍ୟର ବେତାର ଗୀତିନାଟ୍ୟରୂପ ମୁଁ ଖୁବ୍ ସଫଳତାର ସହିତ ପ୍ରଚାର କରାଇଥିଲି । ବୈଷ୍ଣବ ପାଣି ମହାଶୟ ଆମର ଯେଉଁ ମହାନ ପରମ୍ପରା ଗୀତିନାଟ୍ୟରେ ସୃଷ୍ଟି କରିଛନ୍ତି, ମୁଁ ସେହି ଧାରାରେ ଗୀତିନାଟ୍ୟ ଲେଖିଛି । କେବଳ ମୋଟାମୋଟି ଭାବରେ ଗୀତିନାଟ୍ୟକୁ ଏକ ସ୍ୱଚ୍ଛ, ସମ୍ଭ୍ରାନ୍ତ ତଥା ଶ୍ରୋତାମାନଙ୍କର ହୃଦୟଗ୍ରାହୀ କରିବା ପାଇଁ ଯେତିକି ଆଧୁନିକତାର ସ୍ପର୍ଶ ଦରକାର ସେତିକି କରିଛି ମାତ୍ର । ମୋ' ନିଜ ଲିଖିତ ଗୀତିନାଟ୍ୟରେ ମୁଁ ଯଥାସମ୍ଭବ ପାରମ୍ପରିକ ସ୍ୱରର ପାତ୍ରୋପଯୋଗୀ ସଙ୍ଗୀତ ଦେବାର ଚେଷ୍ଟା କରିଛି ।

ପ୍ର- ଆକାଶବାଣୀରେ ପ୍ରସାରିତ ଆପଣଙ୍କର ଅଧିକାଂଶ ନାଟକ ଜନପ୍ରିୟ । ଏହାର କାରଣ କ'ଣ ?

ଉ- ବେତାର ନାଟକ ହେଉଛି ସାର୍ବଜନୀନ ନାଟକ, ଯାହା କୁଟୀରଠାରୁ ପ୍ରାସାଦ ଅଧିକାରୀ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ । ଏହାଛଡ଼ା ବେତାରରେ ଗଳ୍ପ, ସଂଳାପ ଓ ଚରିତ୍ରସବୁ ଏପରି ଭାବରେ ସ୍ଥାନ ପାଇବ, ଯେଉଁଥିରେ ଶ୍ରୋତାମାନଙ୍କର କୌଣସି ଭ୍ରମ ବା Confusion ରହିବ ନାହିଁ । ଏ ଦୃଷ୍ଟିରୁ ମୁଁ ଯଥାସାଧ୍ୟ ଚେଷ୍ଟା କରିଛି ।

ପ୍ର- ଆକାଶବାଣୀରେ ପରିବେଷିତ ହେଉଥିବା ନାଟକ, ଜଣେ ନିର୍ଦ୍ଦେଶକ, ପ୍ରଯୋଜକ ନିଜ ବ୍ୟକ୍ତିତ୍ୱ, ଅନୁଭୂତି ବା ଅଭିଜ୍ଞତାର ପ୍ରୟୋଗରେ ସୁପରିବେଷିତ କରାଇପାରେ କି ? ଏ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉ- ନିଶ୍ଚୟ କରାଇପାରେ । କିନ୍ତୁ ଯିଏ ପ୍ରଯୋଜକ ସିଏ ଜଣେ ସାର୍ଥକ ପରିଚାଳକ ହୋଇପାରିଲେ ଭଲ କଥା । କିନ୍ତୁ ସବୁ କ୍ଷେତ୍ରରେ ସେ ସୁଯୋଗ ମିଳେ ନାହିଁ । ମୋ' ମତରେ ନିହାତି ଦରକାର ପଡ଼ିଲେ ପ୍ରଯୋଜକ ଓ ନିର୍ଦ୍ଦେଶକ ଭିନ୍ନ ଭିନ୍ନ ବ୍ୟକ୍ତି ହେବା ଉଚିତ ।

ପ୍ର- ଆକାଶବାଣୀକୁ ନେଇ ଆନେକ ଭଲ ମନ୍ଦ ଅନୁଭୂତି ଆପଣଙ୍କ ଜୀବନରେ ଘଟିଥିବା ଗୋଟିଏ ସ୍ମରଣୀୟ ଅନୁଭୂତି କହନ୍ତୁ ।

ଉ- ଅନେକ ଘଟଣା ତ ରହିଛି ; ତେବେ ଗୋଟିଏ ଘଟଣା କହୁଛି । ଯେଉଁଦିନ ମୁଁ ପ୍ରଥମେ ଆକାଶବାଣୀରେ ଯୋଗ ଦେଲି, ସେ ଦିନ ଜଣେ ପ୍ରଯୋଜକ ତା'ପରଦିନ ପ୍ରଚାର ପାଇଁ ୫ ମିନିଟ୍‌ର ଏକ ରୂପକ ଲେଖି ଦେବାକୁ ମୋତେ ଅନୁରୋଧ କଲେ । ବିଷୟ ଥିଲା 'ତାଳଗୁଡ଼' ସମ୍ପର୍କୀୟ । ମୁଁ ୫ ମିନିଟ୍ ପରିବର୍ତ୍ତେ ୧୫ ମିନିଟ୍‌ର ରୂପକ ଲେଖିବାକୁ ପ୍ରତିଶ୍ରୁତି ଦେଲି । 'ତାଳଗୁଡ଼' ରୂପକର ଅର୍ଥ ଖଜୁରୀ ରସରୁ ମଦ ପ୍ରସ୍ତୁତ ନ ହୋଇ ଗୁଡ଼ ପ୍ରସ୍ତୁତି । ଏହା ଏକ ପ୍ରଚାରମୂଳକ ରୂପକ । ଯାହାର ନାମ ରହିଲା 'ବିଷରୁ ଅମୃତ' । ରୂପକଟିର ଏହି ନାମକୁ ସମସ୍ତେ ସହୃଦୟତାର ସହିତ ପ୍ରଶଂସା କଲେ । ଠିକ୍ ସମୟରେ ରୂପକଟି ପ୍ରଚାରିତ ହେଲା । ସଙ୍ଗେ ସଙ୍ଗେ ତାଳଗୁଡ଼ ସମିତି ତରଫରୁ ପ୍ରଶଂସାସୂଚକ ଟେଲିଫୋନ୍ ଆସିଲା ଓ ସେମାନେ ତାଙ୍କର ଏକ ସ୍ମରଣିକାରେ ପ୍ରକାଶ କରାଇବାକୁ ଲେଖାଟି ମୋ'ଠାରୁ ନେଲେ । ଆକାଶବାଣୀ Log Bookରେ ଏହା ଏକ ପ୍ରଥମଶ୍ରେଣୀର କାର୍ଯ୍ୟକ୍ରମ ବୋଲି ମନ୍ତବ୍ୟ ରଖାଗଲା ।

ପ୍ର- ଟି.ଭିର ଲୋକପ୍ରିୟତା ଆକାଶବାଣୀର ଲୋକପ୍ରିୟତାର ବାଧକ ବୋଲି ଆପଣ ମନେ କରୁଛନ୍ତି କି ?

ଉ- ନା, ଉଭୟ ପରସ୍ପରର ପରିପୂରକ, କିନ୍ତୁ ଦୁଇଟି ପ୍ରତିଷ୍ଠାନର ସମୟ ନିର୍ଘଣ୍ଟ ଯୋଗୁଁ ଦର୍ଶକ / ଶ୍ରୋତାଙ୍କର ସମୟ ନିର୍ଦ୍ଧାରଣ ପାଇଁ କେତେକ ଅସୁବିଧା ହେଉଛି ।

ପ୍ର- ଓଡ଼ିଆ ବେତାର ନାଟକର ଭବିଷ୍ୟତ ସମ୍ପର୍କରେ ଅପଣଙ୍କର ମତାମତ କ'ଣ ?

ଉ- ଓଡ଼ିଆ ବେତାର ନାଟକ ଚାଳିଶି ବର୍ଷରୁ ଉର୍ଦ୍ଧ୍ୱକାଳ (ଏ ସାକ୍ଷାତକାରର ସମୟ ୧୯୯୧) ଧରି ପ୍ରସାରିତ ହୋଇ ନିଜର ଦୃଢ଼ତା ପ୍ରତିପାଦିତ କରିସାରିଛି । ଏହାର ଭବିଷ୍ୟତ ମଧ ନିର୍ଦ୍ଧାରିତ ହୋଇ ସାରିଛି । ଭବିଷ୍ୟତରେ ଯଦି କିଛି ପରିବର୍ତ୍ତନ ଆସିବ ତାହା Technology ର ପରିଣାମ ବୋଲି ମୋର ବିଶ୍ୱାସ ।

ପ୍ର- କେତୋଟି ସିନେମାର ସଂଳାପ ଆପଣ ଲେଖିଛନ୍ତି । ଆପଣ କେଉଁଥିରେ ବେଶି ସନ୍ତୁଷ୍ଟ ? ସିନେମା ନା ରଙ୍ଗମଞ୍ଚ ?

ଉ- ସିନେମାରେ ସଂଳାପ ଲେଖି ସନ୍ତୁଷ୍ଟ ହେବାର ଅବସର କମ୍ । ଚିତ୍ରଟି ପ୍ରେକ୍ଷାଳୟରେ ପ୍ରଦର୍ଶିତ ହେବା ବେଳକୁ ମୋ' ସଂଳାପକୁ ଯେଉଳି ଭାବରେ ହତ୍ୟା କରାଯାଇଥାଏ ସେଥିରେ ସନ୍ତୋଷ ବା ଅସନ୍ତୋଷର ପ୍ରଶ୍ନ କାହିଁ ଯେ ? ତେଣୁ ସିନେମାର ସଂଳାପ ବା ଚିତ୍ରନାଟ୍ୟ ଲେଖି ସନ୍ତୁଷ୍ଟ ହେବାର ସୁଯୋଗ କମ୍ । ସେ ଦୃଷ୍ଟିରୁ ରଙ୍ଗମଞ୍ଚ ଉତ୍ତମ ।

ପ୍ର- ଆପଣଙ୍କର ସହସ୍ରାଧିକ ଅପ୍ରକାଶିତ ପାଣ୍ଡୁଲିପି ରହିଛି । ସେଗୁଡ଼ିକର ପ୍ରକାଶନ ପାଇଁ କେବେ ଯୋଜନା କରୁଛନ୍ତି ?

ଉ- ମୋ' ପାଣ୍ଡୁଲିପିଗୁଡ଼ିକର ପ୍ରକାଶନ କାର୍ଯ୍ୟ ଯଥାରୀତି ଚାଲିଛି । ଆସନ୍ତା ଦୁଇବର୍ଷରୁ କମ୍ ସମୟ ଭିତରେ ଏ କାର୍ଯ୍ୟ ସମ୍ପୂର୍ଣ୍ଣ ହେବ ବୋଲି ମୋର ଆଶା । (ହାୟ ୨୦୦୯ରେ ମଧ

ଏ ଆଶା ସମ୍ପୂର୍ଣ୍ଣ ହୋଇପାରିନାହିଁ)

ପ୍ର- ଆପଣଙ୍କର କୌଣସି ନାଟକ ବଙ୍ଗଳାରେ ଅନୂଦିତ ହୋଇଛି କି ?

ଉ- ମୋର 'ପୂରାପୂରି ପାରିବାରିକ' ଧାରାବାହିକଟି ବଙ୍ଗଳାରେ ଅନୂଦିତ ହୋଇଛି । ଏହାର ପ୍ରଯୋଜକ ସତ୍ୟେନ୍ଦ୍ର ମହାନ୍ତି । ଏହି ଧାରାବାହିକର ନାମ ରଖାଯାଇଛି 'ମାୟାର ସଂସାର' । ଏହି ଧାରାବାହିକଟି ୧୦ଟି ଚିତ୍ରରେ ପ୍ରଚାରିତ ହେବ। ଏଥିରୁ ଚାରୋଟିର ଚିତ୍ରଗ୍ରହଣ ସମ୍ପୂର୍ଣ୍ଣ ହୋଇସାରିଲାଣି ।

ଏହା ଆସନ୍ତା ବର୍ଷ ବେଳକୁ କଲିକତା ବେତାର କେନ୍ଦ୍ରରୁ ପ୍ରଚାରିତ ହେବ। ମୋର 'ପରକଲମ' ନାଟକଟି ମଧ୍ୟ ବଙ୍ଗଳା ଭାଷାରେ ଅନୁବାଦ କରାଯାଇଛି ।

ପ୍ର- ଆପଣଙ୍କର ଲେଖକ ଜୀବନର ଶ୍ରେୟ କାହାକୁ ଦେବେ ?

ଉ- ଦେଖ, ମୁଁ ଜଣେ ପେସାଦାର ଲେଖକ । ସାଧାରଣ ମଣିଷର ଦୁଃଖସୁଖକୁ ନେଇ ମୁଁ ନାଟକ ଲେଖିଥାଏ। ନାଟକ ଲେଖି ହିଁ ମୁଁ ମୋର ଜୀବିକାର୍ଜନ କରି ପାରିଛି। ମୁଁ ଆଗ୍ରହର ସହିତ ମୋର ଦାୟ ନେଇ ସାଧାରଣ ଦର୍ଶକ/ଶ୍ରୋତା ପାଇଁ ନାଟକ ଲେଖିଥାଏ । ପାଠ୍ୟପୁସ୍ତକ ନ ଲେଖି ମଧ୍ୟ ମୋର ଅନେକ ନାଟକ। ଏକାଙ୍କିକା ସ୍କୁଲଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ପାଠ୍ୟପୁସ୍ତକ ଭାବରେ ପ୍ରଚଳିତ ହୋଇଛି। ମୋର ଲେଖକ ଜୀବନର ଶ୍ରେୟ ମୁଁ ଓଡ଼ିଶାର ସାଧାରଣ ଜନତା ଓ ସେମାନଙ୍କର ଶୁଭେଚ୍ଛାକୁ ପ୍ରଦାନ କରିବାକୁ ଚାହେଁ, ଯେଉଁମାନଙ୍କ ଆଗ୍ରହ, ମୋତେ ବାରମ୍ବାର କଲମ ଧରାଇଛି ।

ପ୍ର- ପର ପିଢ଼ି ପାଇଁ କିଛି ବାର୍ତ୍ତା ?

ଉ-ବାର୍ତ୍ତା ନୁହେଁ ଅନୁରୋଧ ବୋଲି କୁହ। ଯାହା ଲେଖୁଛ ମନ ଲଗାଇ ଶ୍ରଦ୍ଧାର ସହିତ ଲେଖିଚାଲ। ସମୟ ତୁମର ସ୍ଥାନ ଓ ମାନ ଉଭୟ ନିର୍ଦ୍ଧାରଣ କରିବ। କେଉଁଠି ହେଲେ ଆଗ୍ରହୀ ପାଠକଟିଏ / ଶ୍ରୋତାଟିଏ ଥିବ ଯିଏ ତୁମକୁ ଅନାଇ ରହିଥିବ। ଏହି ବିଶ୍ୱାସ ହିଁ ପ୍ରତ୍ୟେକ ସ୍ରଷ୍ଟାକୁ ଲେଖନୀ ଚାଳନା ପାଇଁ ପ୍ରେରଣା ଦେଇଥାଏ।

[ ସ୍ନେହଲତା ମିଶ୍ରଙ୍କ ଗବେଷଣା ନିବନ୍ଧ 'ବେତାର ନାଟ୍ୟସ୍ରଷ୍ଟା ଗୋପାଳ ଛୋଟରାୟ ପୁସ୍ତକରେ ପ୍ରଦତ୍ତ ସାକ୍ଷାତକାରର ସମ୍ପାଦିତ ଓ ପରିବର୍ତ୍ତିତ ରୂପ ]

# ସ୍ମରଣୀୟ ଘଟଣାବଳୀ

୧୯୧୬ ଏପ୍ରିଲ୍ ୨୦- ଜନ୍ମ
୧୯୩୬- ମ୍ୟାଟ୍ରିକ ପାସ୍
୧୯୩୮- ବିବାହ
୧୯୪୧- 'ସାଗରକନ୍ୟା' ନାଟକ ପାଇଁ ପୁରସ୍କାର
୧୯୪୯- ଆକାଶବାଣୀ କଟକରେ ଯୋଗଦାନ
୧୯୫୪- 'ପରକଲମ' ପାଇଁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପ୍ରତିଯୋଗିତା, ଦିଲ୍ଲୀରେ ସର୍ବଭାରତୀୟ ସ୍ତରରେ ପ୍ରଶଂସା
୧୯୫୬- ଆକାଶବାଣୀର ସ୍ଥାୟୀ ନାଟ୍ୟକାର
୧୯୫୬- ଓଡ଼ିଶା ସଙ୍ଗୀତନାଟକ ଏକାଡ଼େମୀର ଶ୍ରେଷ୍ଠନାଟକ 'ଅର୍ଦ୍ଧାଙ୍ଗିନୀ'
୧୯୭୪- 'ଶ୍ରୀମତୀ ସମାର୍ଜନୀ' ବେତାର ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ
୧୯୭୫- ଅବସର ଗ୍ରହଣ
୧୯୭୬- 'ତିନୋଟି ଅପେରା ଏକତ୍ର' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଓ ଓ ରାଜ୍ୟ ସଙ୍ଗୀତ ନାଟକ ଏକାଡ଼େମୀ ପୁରସ୍କାର
୧୯୭୯- ପତ୍ନୀ ବନଲତାଙ୍କ ବିୟୋଗ
୧୯୮୨- 'ହାସ୍ୟରସର ନାଟକ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର
୧୯୮୬- ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓଡ଼ିଆ ଭାଷାରେ ପ୍ରବୀଣତା ପାଇଁ ସମ୍ମାନ
୧୯୮୭- କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀ ସମ୍ମାନ ଓ ପୁରସ୍କାର
୧୯୮୮- ଶାରଳା ସମ୍ମାନ
୧୯୯୩- କାନ୍ତକବି ପୁରସ୍କାର
୧୯୯୩- ପ୍ରଜାତନ୍ତ୍ର ବିଷୁବ ସମ୍ମାନ ଓ ପୁରସ୍କାର
୨୦୦୦- ଶାରଳା ପୁରସ୍କାର
୨୦୦୨- ପଦ୍ମଶ୍ରୀ ସମ୍ମାନ
୨୦୦୩ ଜାନୁଆରୀ ୨୨- ତିରୋଧାନ

(ଆତ୍ମଜୀବନୀ 'ପଥିକ'ରୁ ସଂଗୃହୀତ)

# ମୁଦ୍ରିତ ପୁସ୍ତକର ତାଲିକା

ସହଧର୍ମିଣୀ- ୧୯୪୨
ଫେରିଆ-୧୯୪୬
ଭରସା-୧୯୫୪
ପରକଲମ-୧୯୫୫
ନଷ୍ଟ ଉର୍ବଶୀ- ୧୯୫୫
ପଥିକ ବନ୍ଧୁ-୧୯୫୮
ଜନଶତ୍ରୁ- ୧୯୫୮
ଅମଡ଼ାବାଟ- ୧୯୫୯
ଘଟକ- ୧୯୬୦
ମଲାଜହ୍ନ- ୧୯୬୧
ଅଭାଗିନୀର ସ୍ୱର୍ଗ- ୧୯୬୧
ସାଧନା -୧୯୬୨
ପୂରାପୂରି ପାରିବାରିକ- ୧୯୬୪
ଦଳବେହେରା-୧୯୬୬
ପଦ୍ମାଳୟା- ୧୯୭୨
ଶାଖା ପ୍ରଶାଖା- ୧୯୭୭
ନୂଆବୋଉ- ୧୯୮୦
ଶ୍ରୀହରିଙ୍କ ସଂସାର- ୧୯୮୧
ହାସ୍ୟରସର ନାଟକ- ୧୯୮୧
ବାବାଜୀ ନାଟ୍ୟରୂପ- ୧୯୮୪
ଶୋଭା- ୧୯୮୭
ଏମିତି ହୁଏ ନାହିଁ- ୧୯୯୦
ନଟଖଟ ନାଟକ- ୧୯୯୧
ଶ୍ରେଷ୍ଠ ଏକାଙ୍କିକା -୧୯୯୧
ପାହାଚ ଓ ଅନ୍ୟାନ୍ୟ ନାଟକ- ୧୯୯୧
ଗଜପତି ହୀରା ଓ ଅନ୍ୟାନ୍ୟ ନାଟକ -୧୯୯୧
ବାବୁ ଚନ୍ଦ୍ରମଣି-୧୯୯୨
ପଞ୍ଚନାଟିକା- ୧୯୯୩

## ଗଳ୍ପ ସଂକଳନ

ସେଇ ଫୁଲ- ୧୯୮୯
ଚନ୍ଦ୍ରମୁଖୀ ଓ ଅନ୍ୟାନ୍ୟ ଗଳ୍ପ- ୧୯୯୩

## ଗୀତିନାଟ୍ୟ

ଶ୍ରୀ ଗଣେଶ-୧୯୭୨
ନ ପାହୁ ରାତି ନ ମରୁ ପତି- ୧୯୭୨
ତିନୋଟି ଅପେରା ଏକତ୍ର- ୧୯୭୨
ମହିଷାମର୍ଦ୍ଦିନୀ- ୧୯୭୨
ଶ୍ରୀମତୀ ସମାର୍ଜ୍ଜନୀ- ୧୯୭୪
ଘର ବର ଦେଖା- ୧୯୭୭
ବିନ୍ଦୁସାଗର-୧୯୭୯
ସମ୍ପୂର୍ଣ୍ଣ ରାମାୟଣ- ୧୯୮୦
ସୀତା ଲବକୁଶ- ୧୯୮୦
ପଞ୍ଚବଟୀ- ୧୯୮୧
ଜନ୍ମାଷ୍ଟମୀ- ୧୯୮୨
ଶ୍ରୀଜଗନ୍ନାଥ- ୧୯୮୩
ବୋଲେ ହୁଁଟି- ୧୯୮୩
ଚମ୍ପୂବିନୋଦ- ୧୯୮୮
ମୀରାବାଈ- ୧୯୮୮
ଅଯୋଧ୍ୟା କାଣ୍ଡ- ୧୯୮୮
କପଟପାଶା-୧୯୮୮
(ଆତ୍ମଜୀବନୀ 'ପଥିକ' ଅନୁସରଣରେ)

## ଓଡ଼ିଆ ଚଳଚ୍ଚିତ୍ରର ଚିତ୍ରନାଟ୍ୟ ଓ ସଂଳାପ ରଚନା

ଶ୍ରୀ ଜଗନ୍ନାଥ, ଅମଡ଼ାବାଟ, ଅଭିନେତ୍ରୀ, ଅଦିନମେଘ, ମାଟିର ମଣିଷ, ବଧୂନିରୁପମା, ସ୍କୁଲ ମାଷ୍ଟର

## ଦୂରଦର୍ଶନ ପାଇଁ ଲିଖିତ ନାଟକ

'ଚିତ୍ରବିଚିତ୍ର' ଓ 'ଏମିତି ହୁଏ ନାହିଁ' ଧାରାବାହିକର ପ୍ରାୟ ୮୫ଟି ଚିତ୍ର ଦୂରଦର୍ଶନରେ ପ୍ରସାରିତ।

## ଗୋପାଳ ଛୋଟରାୟ କରିଥିବା ଅନୁବାଦ

ବଙ୍ଗୀୟ ଲେଖକ ଶରତ ଚନ୍ଦ୍ର ଚାଟାର୍ଜୀଙ୍କର 'ରାମେର ସୁମତି'
ବଙ୍ଗୀୟ ଲେଖକ ଶିବରାମ ଚକ୍ରବର୍ତ୍ତୀଙ୍କର 'ହନୁମାନେର ସ୍ୱପ୍ନ'
ଇଂରାଜୀ ଭାଷାର Heneric Ibsen ଙ୍କର - Enemy of the people (ଜନଶତ୍ରୁ)
- Mock Doctor

## ଗୋପାଳ ଛୋଟରାୟଙ୍କ ନାଟକ ଯାହା ଅନ୍ୟଭାଷାରେ ଅନୂଦିତ

ନାଟକ 'ପରକଲମ', 'ସହଧର୍ମିଣୀ' ଓ 'ସମୁଦ୍ର ମନ୍ଥନ'- ହିନ୍ଦୀ ଭାଷାରେ ଅନୂଦିତ
ନାଟକ 'ସୀମା'- ଇଂରାଜୀ ଭାଷାରେ ଅନୂଦିତ
ନାଟକ 'ଆଉ ଏକ ନାରୀ' ଓ 'ଚିତ୍ର ବିଚିତ୍ର'- ତେଲୁଗୁ ଭାଷାରେ ଅନୂଦିତ
ଗଳ୍ପ 'ମଧ୍ୟରାତ୍ରିର ପ୍ରହସନ' ଓ 'ନବଦମ୍ପତି'- ଇଂରାଜୀ ଭାଷାରେ ଅନୂଦିତ

ଗୋପାଳ ଛୋଟରାୟ ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ଗୀତିକାର। ପ୍ରଥମେ ୧୯୭୭ରେ ତାଙ୍କର ଶ୍ରୀମତୀ ସମାର୍ଜନୀ L.P. Record ରେ ୬୦ ମିନିଟ୍‌ର ରେକର୍ଡିଂ ହୋଇଥିଲା। ଏହା କରାଇଥିଲେ କଣ୍ଠଶିଳ୍ପୀ ଅକ୍ଷୟ ମହାନ୍ତି। ପରେ ପ୍ରାୟ କୋଡ଼ିଏରୁ ଊର୍ଦ୍ଧ୍ୱ ଗୀତିନାଟ୍ୟ ବାସୁଦେବ ରଥଙ୍କ ନିର୍ଦ୍ଦେଶନା ଓ କଣ୍ଠସ୍ୱରରେ L.P. ରେକର୍ଡ଼ ହୋଇ କ୍ୟାସେଟ୍‌ରେ ଉପଲବ୍ଧ।

## ବିଭିନ୍ନ ଅନୁଷ୍ଠାନ ଦ୍ୱାରା ପ୍ରଦତ୍ତ ସମ୍ମାନ

୧୯୫୬- ଡଗର ରଜତ ଜୟନ୍ତୀ ଉତ୍ସବ ସମ୍ମାନ
୧୯୭୦- କଳାବିକାଶ କେନ୍ଦ୍ର ରଜତ ଜୟନ୍ତୀ ଉତ୍ସବ ସମ୍ମାନ
୧୯୭୧- ଉତ୍କଳ ପାଠକ ସଂସଦ ସମ୍ମାନ
୧୯୭୫- ଖାନ୍ ନଗର ବିଦ୍ୟାପୀଠ ସମ୍ମାନ
୧୯୭୬- ଜଗତସିଂହପୁର ସାହିତ୍ୟ ସଂସଦ ସମ୍ମାନ
୧୯୭୭- ଓଡ଼ିଆ ନାଟକ ଶତବାର୍ଷିକୀ ଉତ୍ସବ ସମ୍ମାନ
୧୯୮୨- ଆରୋହୀ, ଭୁବନେଶ୍ୱର ପ୍ରଦତ୍ତ ସମ୍ମାନ
୧୯୮୩- ରାଜଧାନୀ ନୀଳଶୈଳ ସମ୍ମାନ
୧୯୯୨- ଚାଚା ନେହେରୁ ସମ୍ମାନ

## ବିଭିନ୍ନ ପଦପଦବୀରେ ନାଟ୍ୟକାର ଗୋପାଳ ଛୋଟରାୟ

ଆଞ୍ଚଳିକ ଚଳଚ୍ଚିତ୍ର ସେନ୍‌ସର ବୋର୍ଡର ସଭ୍ୟ
ଓଡ଼ିଶା ସାହିତ୍ୟ ଏକାଡ଼େମୀ  ସାଧାରଣ ପରିଷଦର ସଭ୍ୟ
ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ସାଧାରଣ ପରିଷଦର ସଭ୍ୟ
ଓଡ଼ିଆ ଚଳଚ୍ଚିତ୍ର ପୁରସ୍କାର ପ୍ରଦାନ ବିଚାରକ ମଣ୍ଡଳୀର ସଭ୍ୟ
କଟକ ଦୂରଦର୍ଶନ କେନ୍ଦ୍ର ପରାମର୍ଶଦାତା ମଣ୍ଡଳୀର ସଭ୍ୟ

## ଗୋପାଳ ଛୋଟରାୟଙ୍କ ନାଟ୍ୟସୃଷ୍ଟି ସମ୍ପର୍କରେ ଉଚ୍ଚତର ଗବେଷଣା

ଅଧ୍ୟାପକ ସର୍ବେଶ୍ୱର ମିଶ୍ର- ଗୋପାଳ ଛୋଟରାୟଙ୍କ ନାଟକ ସାମଗ୍ରିକ ଆକଳନ
ଅଧ୍ୟାପକ ଶରତ ମିଶ୍ର- ଗୋପାଳ ଛୋଟରାୟ ସାମଗ୍ରିକ ନାଟ୍ୟ ଚେତନା
ଅଧ୍ୟାପିକା ସ୍ନେହଲତା ମିଶ୍ର- ବେତାର ନାଟ୍ୟସ୍ରଷ୍ଟା ଗୋପାଳ ଛୋଟରାୟ

## ସହାୟକ ଗ୍ରନ୍ଥସୂଚୀ

ଦାସ ହେମନ୍ତ କୁମାର- ଓଡ଼ିଆ ନାଟକର ବିକାଶଧାରା
ଦାସ ଜୟନ୍ତ କୁମାର- ଓଡ଼ିଆ ବେତାର ନାଟକ- ବୁକ୍‌ସ ଆଣ୍ଡ ବୁକ୍‌ସ, କଟକ ୧୯୮୭
ଦାସ ସର୍ବେଶ୍ୱର- ଓଡ଼ିଆ ନାଟ୍ୟ ସାହିତ୍ୟ -ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା- ୧୯୮୧
ମିଶ୍ର ଗିରିଶଚନ୍ଦ୍ର- ଓଡ଼ିଆ ଏକାଙ୍କିକା ଧରା ଓ ଧାରା- ୧୯୮୧
ମିଶ୍ର ସ୍ନେହଲତା- ବେତାର ନାଟ୍ୟସ୍ରଷ୍ଟା ଗୋପାଳ ଛୋଟରାୟ- ବିଶ୍ୱ ବୁକ୍‌ସ- ୨୦୦୩
ସାହୁ ନାରାୟଣ (ସଂ) -ଗୋପାଳ ଛୋଟରାୟ ମାନସ- ଗ୍ରନ୍ଥମନ୍ଦିର- ୧୯୮୬
ଗୋପାଳ ଛୋଟରାୟଙ୍କ ପ୍ରକାଶିତ ସମସ୍ତ ସୃଷ୍ଟି

## ପତ୍ରପତ୍ରିକା

କୋଣାର୍କ- ଓଡ଼ିଶା ସାହିତ୍ୟ ଏକାଡ଼େମୀ ମୁଖପତ୍ର- ୪୯ତମ ସଂଖ୍ୟା -୧୯୮୭
ଉତ୍କଳ ପ୍ରସଙ୍ଗ- (ପ୍ର. ଓଡ଼ିଆ ବେତାର ନାଟକର ଜନ୍ମ ଓ ତା'ର ଗୃହପ୍ରବେଶ- ଯତୀନ୍ ଦାସ) ୩୪ ସଂଖ୍ୟା ୧୯୭୮
ପ୍ରଜାତନ୍ତ୍ର ସାପ୍ତାହିକୀ - ଗୋପାଳ ଛୋଟରାୟଙ୍କ ସହିତ ସାକ୍ଷାତକାର - ଡିସେମ୍ବର ୧୯୭୮ (୨ୟ ବର୍ଷ ୧୨ଶ ସଂଖ୍ୟା)



# ସାହିତ୍ୟ ଅକାଦେମି ପୁରସ୍କାର ଉତ୍ସବରେ ପ୍ରଦତ୍ତ ଇଂରାଜୀ ଭାଷଣ

While accepting this Award with all humility and with my heartful thanks to the Kendra Sahitya Akademi, I strongly feel that the honour conferred on me is equally shared by other dramatists of my language. No, it is not an expression of formal courtesy. The hundred years old dramatic movement of Orissa that has reached its pinnacle, is certainly not the achievement of any individual nor of any particular period, though there were inevitable ups and downs in between. And thus flows the even, and may be at time competitive, yet all the while congenial relationship between the predecessors and the successors.

If I am a dramatist of divergent outlets, I have never been a forsaker. I am always at ease with serious plays, operas and absolute humour plays. Thematically in my serious plays, I have been constantly in agreement with the basic human values and subtle human qualities. Technically all otherwise, I have thankfully accepted anything new that has come in my way, but never failed to have a nostalgic look at our rich past. Speaking of these plays, I owe a lot to the glorious days of our theatres in the fifties and sixties. My association with them was as professional as endearingly personal, but for which I might not have been able to produce about twenty major stage plays in about fifteen years.

Our traditional and folk operas, the master-creations of our giant poet-dramatist Baishnab Pani, Jagannath Pani, Gopal Das etc., and who were the legitimate precursors of our present day plays, has their golden era till about 1940, when surprisingly they were eclipsed from the scene, leaving behind their rich heritage hidden under the surface. Then as if sent by providence, I found myself in the field and it by my solo efforts that the traditional opera had its glorious revival in 1960. I was then working in all India Radio, Cuttack, I picked up 'Ranga Sabla' an opera by Baisnab Pani, adapted it for Radio, personally made it sure that the original and traditional spirits are perfectly retained. And when I got it produced in the radio, like a phenomenon, it look the entire listening world by storm. Overnight the operas came back to their rightful place. It was there but natural for me that I look to writing of new operas, with a solemn and

careful blend of tradition with modernity. Out of my ten original operas, one, ' Srimati Samarjani' was adjudged best in the All India Radio play-production competition in the national level and for another opera 'Tinoti Opera Ekatra' I have received the State Sahitya Akademi Award. I am now proud to say that a host of talented writers have taken up writing operas which play a distinctive role of a parallel drama in Orissa.

Like serious plays and operas, humorous play was not my natural choice. Humorous writers in my language, as also elsewhere, are few and far between. But what they have dished out are rich and vibrant. By the Time I wrote my first play in the forties, I was an ardent and no less excited reader of humorous writings. In my youthful estimation, the humorous writers were a class by themselves and they tread in a dramaland of their own putting a fence around them. I do not exactly know when moments came and when the inspiration quietly flew from the other side of the fence and seeped into my imagination that resulted in about thirty absolute humorous plays and a larger number of comedies. I am aware of the fact that humour, satire and farce are not truly identical in their expressions. Each has its own role to play. And here is this book 'Hasyarasar Natak', a collection of ten pure, clean innocent humorous plays, for which I am the privileged recepient of 1982 Sahitya Akademi Award.

# ଏକବିଂଶତମ ଶାରଳା ପୁରସ୍କାର ଉତ୍ସବରେ ପ୍ରଦତ୍ତ ଭାଷଣ

ମୋ' ପରି ଜଣେ ପରିଣତ ବୟସର ଲେଖକକୁ ଯେଉଁଭଳି ଏକ ନବୀନ ଶତାବ୍ଦୀର ପ୍ରଥମ ଶାରଳା ପୁରସ୍କାର ଦିଆଯାଇଛି, ସେଥିରେ ଯଦି ମୋ' ପାଇଁ ଉଲ୍ଲେଖନୀୟ କିଛି ଥାଏ ତାହା ହେଲା ମୋର ଅପ୍ରତ୍ୟାଶିତ ଆନନ୍ଦ। ମୋର ଲେଖକ ଜୀବନ ଆରମ୍ଭ ହୁଏ ଗତ ଶତାବ୍ଦୀର ଚତୁର୍ଥ ଦଶକରେ। ଏତେ ଲମ୍ବା ସମୟର ବ୍ୟବଧାନ ସତ୍ତ୍ୱେ, ମୋର ସମଗ୍ର ସାହିତ୍ୟ କୃତିକୁ ସ୍ମରଣ କରି (ଯାହାର ପରିମାଣ କିଛି କମ୍ ନୁହେଁ ଓ ସବୁ ଯେ ଉତ୍କୃଷ୍ଟ ତାହା ମଧ୍ୟ କହି ହେବନାହିଁ) ଯେଉଁ ବିଜ୍ଞ ବିଚାରକମାନେ ମତେ ପୁରସ୍କାରଯୋଗ୍ୟ ସାବ୍ୟସ୍ତ କରିଛନ୍ତି, ମୁଁ ସେମାନଙ୍କୁ ମୋର ବିନମ୍ର ଶ୍ରଦ୍ଧା ନିବେଦନ କରୁଛି। ତା' ସହିତ କ୍ଷମା ଚାହୁଁଚି ମୋ'ଠାରୁ ଅଳ୍ପ ବୟସ୍କ, କିନ୍ତୁ ମୋ' ଠାରୁ ଅଧିକ ସକ୍ଷମ ଅନେକ ଲେଖକଙ୍କ ପାଖରୁ, ଯେଉଁମାନଙ୍କର ଏ ପୁରସ୍କାର ଉପରେ ଦାବୀ, ମୋ' ଅପେକ୍ଷା କୌଣସି ଗୁଣରେ କମ୍ ନୁହେଁ।

କିଛି ଲେଖକ କୁହନ୍ତି ଯେ, ସେମାନେ ନିଜ ପାଇଁ ଲେଖନ୍ତି, ଅଥବା ସେମାନଙ୍କର ସଂଖ୍ୟାଲଘୁ ବୌଦ୍ଧିକ ପାଠକଙ୍କ ଲାଗି, ଅଥବା ସମୟ ବିତାଇବାର କ୍ଲେଶ ଲାଘବ ପାଇଁ। ମୁଁ କିନ୍ତୁ ମୋର ଜୀବନସାରା ଲେଖିଛି ଅଗଣିତ ସାଧାରଣ ମଣିଷଙ୍କ ସାଧାରଣ ଜୀବନଯାତ୍ରାର ସୁଖଦୁଃଖକୁ କେନ୍ଦ୍ର କରି, ସେମାନଙ୍କର ମନୋରଞ୍ଜନ ପାଇଁ। ମୁଁ ସୌଖୀନ ନୁହେଁ, ଜଣେ ପେସାଦାର ଲେଖକ। ମୋର ଏ କଥା ମାନିବାରେ କୌଣସି ସଙ୍କୋଚ ନାହିଁ ଯେ ମୋର ଲେଖା ହିଁ ମୋ' ଜୀବିକା ଅର୍ଜନର ଏକମାତ୍ର ମାଧ୍ୟମ। ବରଂ ଏହା ମୋର ଗର୍ବ ଯେ, ଓଡ଼ିଆ ଭାଷାରେ ପାଠ୍ୟ ପୁସ୍ତକ ନ ଲେଖି, କେବଳ ସୃଜନାତ୍ମକ ଲେଖା ଲେଖି ମୁଁ ଆଜି ପର୍ଯ୍ୟନ୍ତ ମୋ' ପରିବାରର ଭରଣପୋଷଣ କରି ପାରିଛି। ସେଥିରୁ ଯଦି କିଛି ଲେଖା ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ମୌଳିକ କୃତି ବୋଲି ପରିଗଣିତ ହେଉଛି, ତା' ହେଲେ ସେଥିଲାଗି ଦାୟୀ ସେଇ ଅପରିଚିତ ସାଧାରଣ ମଣିଷଙ୍କ ଶେଷ ହୋଇ ନ ଥିବା ଶୁଭେଚ୍ଛା, ଆଉ ବାକ୍‌ଦେବୀ ଶାରଳାଙ୍କ ଅସୀମ କୃପା।

ଗୋପାଳ ଛୋଟରାୟ (୧୯୧୬ - ୨୦୦୩) ଓଡ଼ିଆ ସାହିତ୍ୟ ଜଗତର ଏକ ବିରଳ ପ୍ରତିଭା । ମଞ୍ଚ ନାଟକ, ବେତାର ନାଟକ, ରୂପକ, ଧାରାବାହିକ ତଥା ବିଭିନ୍ନ କାଳଜୟୀ ଗଳ୍ପ ଉପନ୍ୟାସର ନାଟ୍ୟରୂପ ପ୍ରସ୍ତୁତ କରିବାରେ ସେ ନିଜର ସିଦ୍ଧିର ସ୍ୱାକ୍ଷର ଅଙ୍କନ କରିଛନ୍ତି । ଓଡ଼ିଶାର ଲୁପ୍ତପ୍ରାୟ ଗୀତିନାଟକର ସେ ପୁନରୁଦ୍ଧାର କରିଛନ୍ତି ଓ ସେଗୁଡ଼ିକର ଲୋକପ୍ରିୟତାରେ ଉତ୍ସାହିତ ହୋଇ ନିଜେ ଅନେକ ଗୀତିନାଟକ ରଚନା କରିଛନ୍ତି । ଆକାଶବାଣୀ କଟକ ତାଙ୍କର ପ୍ରତିଭାକୁ ପରିପୁଷ୍ଟ କରିଛି । ସେ ସମଗ୍ର ଜୀବନ ଦାୟବଦ୍ଧ ହୋଇ ଆକାଶବାଣୀ ପାଇଁ ଶତାଧିକ ନାଟକ ରଚନା କରି ଓଡ଼ିଶାର କୋଣ ଅନୁକୋଣରେ ଥିବା ଶ୍ରୋତାମାନଙ୍କ ମନରେ ନିଜ ପାଇଁ ସମ୍ମାନଜନକ ସ୍ଥାନ ସୃଷ୍ଟି କରି ପାରିଛନ୍ତି । ସ୍ୱାଧୀନତାର ପରବର୍ତ୍ତୀ କାଳରେ ଓଡ଼ିଶାର ସମାଜ ଜୀବନରେ ସଂଘଟିତ ବିବିଧ ପରିବର୍ତ୍ତନକୁ ସେ ସ୍ୱାଭାବିକ ଭାବେ ନିଜ ନାଟକଗୁଡ଼ିକରେ ଧରି ରଖିଛନ୍ତି । ଗଳ୍ପ ରଚନା ଓ ଆତ୍ମଜୀବନୀ ରଚନାରେ ମଧ୍ୟ ତାଙ୍କର ସାଂସ୍କୃତିକ ଜୀବନଦୃଷ୍ଟି ପ୍ରତିଫଳିତ । ସାହିତ୍ୟ ଅକାଦେମିର ଭାରତୀୟ ସାହିତ୍ୟସ୍ରଷ୍ଟା ଗ୍ରନ୍ଥମାଳା ଶୃଙ୍ଖଳାରେ ଏହିଭଳି ଜଣେ ପ୍ରଥିତଯଶା ଲେଖକ ସାମିଲ ହେବା ଓଡ଼ିଆ ସାହିତ୍ୟକୁ ଶ୍ରଦ୍ଧା କରୁଥିବା ପ୍ରତ୍ୟେକ ବ୍ୟକ୍ତିପାଇଁ ଆନନ୍ଦର ବିଷୟ ।

ସଂଘମିତ୍ରା ମିଶ୍ର ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରଫେସର । ନାଟକ ସଂପର୍କରେ ଉଚ୍ଚତର ଗବେଷଣା ଓ ଅନେକ ନାଟ୍ୟ ସମାଲୋଚନା ପୁସ୍ତକ ରଚନା ସହିତ କବିତା, ଫିଚର, ଶିଶୁ ସାହିତ୍ୟ, ନାଟକ, ଜୀବନୀ ଓ ଅନୁବାଦ ସାହିତ୍ୟରେ ସେ ନିଜ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ଏହି ପୁସ୍ତକଟି ଗୋପାଳ ଛୋଟରାୟଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱକୁ ଜାଣିବାର ଅବଶ୍ୟ ସହାୟକ ହେବ ।

ମୂଲ୍ୟ : ୪୦ ଟଙ୍କା

ISBN : 978-81-260-2722-4

